# ଉତ୍କଳ ପ୍ରସଙ୍ଗ

## The Utkal Prasanga


୬୧ ଭାଗ | ୬ଷ୍ଠ ସଂଖ୍ୟା | ପୌଷ-ମାଘ | ଜାନୁଆରୀ - ୨୦୦୫





***ବାର୍ଷିକ ଦେୟ : ଟ.୫୦.୦୦***

***ପ୍ରତିଖଣ୍ଡ : ଟ.୫.୦୦***





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@rediffmail.com / iprsec@ori.nic.in, ଫୋନ : ୨୪୦୪୫୧୩

# ସୂଚୀ

## ସଂପାଦକୀୟ




# ସଂକଳ୍ପ ଦିବସ

**ଜା**ନୁଆରୀ ୨୬ ତାରିଖ ଭାରତୀୟ ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ । ଆଜକୁ ୫୫ ବର୍ଷ ତଳେ ଏହି ଦିନ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରବର୍ତ୍ତିତ ହୋଇଥିଲା । ଏହି ସମ୍ବିଧାନରେ ଭାରତକୁ ଏକ ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଗଠନ କରିବା ସଂଗେସଂଗେ ପ୍ରତ୍ୟେକ ନାଗରିକଙ୍କୁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ସମାନ ସୁବିଧା ସୁଯୋଗ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

ଦୀର୍ଘ ୨୦୦ ବର୍ଷର ପରାଧୀନତା ପରେ ଭାରତ ବ୍ରିଟିଶ ସାମ୍ରାଜ୍ୟ ଅଧୀନରୁ ମୁକ୍ତ ହେଲା । ଏଥିପାଇଁ ୧୮୧୭ ଓଡ଼ିଶା ପାଇକ ବିଦ୍ରୋହ ଓ ୧୮୫୭ର ସିପାହୀ ବିଦ୍ରୋହଠାରୁ ୧୯୪୨ ଭାରତଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ଅନେକ ପର୍ଯ୍ୟାୟରେ ଦେଶବାସୀଙ୍କୁ ସ୍ୱାଧୀନତା ସଂଗ୍ରାମରେ ବହୁମୂଲ୍ୟ ଦେବାକୁ ପଡ଼ିଛି । ସେମାନଙ୍କୁ ଚରମ ଲାଞ୍ଛନା, ନିର୍ଯ୍ୟାତନା ଓ ଯନ୍ତ୍ରଣା ସହିବାକୁ ପଡ଼ିଛି । ଅସୁମାରୀ ଦେଶଭକ୍ତ ନାରୀ, ପୁରୁଷ ପ୍ରାଣବଳି ଦେଇଛନ୍ତି, ଫାଶୀ ଖୁଣ୍ଟରେ ହସି ହସି ଶହୀଦ ହୋଇଛନ୍ତି । ଏ ଦେଶ, ଏ ଜାତି ପାଇଁ ସେମାନଙ୍କ ତ୍ୟାଗ ଓ ବୀରତ୍ୱର ପଟାନ୍ତର ନାହିଁ । ଆଜିର ପବିତ୍ର ଦିବସରେ ସେହି ବରପୁତ୍ରମାନଙ୍କର ଅପୂର୍ବ ଦେଶପ୍ରୀତିକୁ ସ୍ମରଣ କରି ସେମାନଙ୍କ ପ୍ରତି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଅନୈକ୍ୟ ମଧ୍ୟରେ ଐକ୍ୟ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ନାନା ଭାଷା, ନାନା ଧର୍ମର ଲୋକେ ସେମାନଙ୍କର ଚଳଣି ଓ ଆଚାର ବ୍ୟବହାରର ଭିନ୍ନତା ସତ୍ତ୍ୱେ ମହାନ୍ ଭାରତୀୟ ପରମ୍ପରାକୁ କାଳକାଳ ଧରି ଅକ୍ଷୁଣ୍ଣ ରଖି ଆସିଛନ୍ତି । ମତଭେଦ ସତ୍ତ୍ୱେ ଦେଶର ଐକ୍ୟ ଓ ସଂହତିକୁ ମଜଭୂତ କରି ଏହାକୁ ସମୃଦ୍ଧି ପଥରେ ଆଗେଇ ନେବାକୁ ଆଜିର ଏହି ଦିବସରେ ଆମେ ସଂକଳ୍ପ ଗ୍ରହଣ କରିବା ଉଚିତ ।

ବିପୁଳ ପ୍ରାକୃତିକ ସମ୍ପଦ ସତ୍ତ୍ୱେ ଓଡ଼ିଶା ଭାରତର ଏକ ଦରିଦ୍ରତମ ରାଜ୍ୟ ରୂପେ ପରିଗଣିତ ହେଉଛି । ଆମକୁ ଏ ପରିସ୍ଥିତି ବଦଳାଇ ଓଡ଼ିଶାକୁ ଏକ ଶ୍ରେଷ୍ଠ ଓ ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରିବାକୁ ହେବ । ବର୍ତ୍ତମାନ ଆମ ଦ୍ୱାରଦେଶରେ ସମୟ ଓ ସୁଯୋଗ ଉପଗତ । ଓଡ଼ିଶାର ମାଟି ତଳେ ଭରି ରହିଥିବା ବିପୁଳ ପ୍ରାକୃତିକ ସମ୍ପଦକୁ ବିନିଯୋଗ କରି ଭାରତର ଶିଳ୍ପ ମାନଚିତ୍ରରେ ଓଡ଼ିଶାକୁ ଏକ ଶିଳ୍ପୋନ୍ନତ ରାଜ୍ୟ ରୂପେ ଗଢ଼ି ତୋଳିବା ସଂଗେସଂଗେ କ୍ଷୁଧା, ଦାରିଦ୍ର୍ୟ, ବେକାରୀ ବିରୁଦ୍ଧରେ ଲଢ଼େଇ କରିବାକୁ ଆମେ ସମସ୍ତେ ମିଳିମିଶି ଆଜିର ଏହି ପବିତ୍ର ଦିବସରେ ସଂକଳ୍ପ ନେବା ।

'ଉତ୍କଳ ପ୍ରସଙ୍ଗ'ର ପାଠକ ପାଠିକା ଓ ଓଡ଼ିଶାର ଭାଇଭଉଣୀମାନଙ୍କୁ ନବବର୍ଷ ଅବସରରେ ଶୁଭେଚ୍ଛା ଜଣାଉଛୁ -

''ଆସ ନବବର୍ଷ ନବୀନ ବରଷ
ନବ ଦିନେ ଘେନି ଅଶେଷ ହରଷ ।।
ବିଭୁ ସ୍ୱର୍ଗଧାମୁ ସୁଧା ସମାଚାର
ଆଣି ଏ ଭୁବନେ କରହେ ପ୍ରଚାର ।।
ଉତ୍କଳ ତନୟେ ଦିଅ ନବବଳ
ଉତ୍କଳ ପାଦପେ ରସମୟ ଫଳ ।।
ଉତ୍କଳ ଆକାଶେ ନବଯଶ ରବି
ଉତ୍କଳ ପ୍ରକୃତି ଧରୁ ନବଛବି ।।''

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

**୨୦୦୪ ମସିହା ଡିସେମ୍ବର ମାସ ୨୬ ତାରିଖରେ ପ୍ରଳୟଙ୍କରୀ ସାମୁଦ୍ରିକ ଭୂକମ୍ପ 'ସୁନାମି'ର କବଳିତ ହୋଇ ଦକ୍ଷିଣ-ପୂର୍ବ ଏସିଆର ଯେଉଁ ଅମୂଲ୍ୟ ଜୀବନ ଅକାଳରେ ନିର୍ବାପିତ ହୋଇଗଲା, ସେମାନଙ୍କ ଆତ୍ମାର ସଦ୍‌ଗତି ନିମିତ୍ତ ଆମେ ପ୍ରାର୍ଥନା କରୁଛୁ ।**

**ସୁନାମି ପ୍ରପୀଡ଼ିତ ଅସୁମାରୀ ଜୀବନକୁ ପୁଣି ସ୍ୱାଭାବିକ ଜୀବନ ସ୍ରୋତକୁ ଫେରାଇ ଆଣିବା ଦିଗରେ ଐଶ୍ୱରୀୟ ସଦିଚ୍ଛା କାମନା କରୁଛୁ ।**

**ଏଭଳି ଅନେକ ପ୍ରାକୃତିକ ବିପତ୍ତି ଓ ବିପର୍ଯ୍ୟୟକୁ ଅତିକ୍ରମ କରି ଏ ମାନବ ସଭ୍ୟତା ଯୁଗେ ଯୁଗେ ଅଗ୍ରଗତି କରି ଆସିଛି । ଆମର ଉତ୍ସର୍ଗ ଐକ୍ୟବୋଧ ଓ ଧୈର୍ଯ୍ୟ ହିଁ ଏହି ଅଗ୍ରଗତି ଓ ପ୍ରାଣବତ୍ତାର ମୂଳସୂତ୍ର ହେଉ ।**

ମୁରଲୀ ଚନ୍ଦ୍ର ସାମନ୍ତରାୟ

# ଆମ ତ୍ରିରଙ୍ଗାର କ୍ରମବିକାଶ

ନିର୍ମଳା କୁମାରୀ ମହାପାତ୍ର

'ବିଜୟୀ ବିଶ୍ୱ ତ୍ରିରଙ୍ଗା ପ୍ୟାରା
ଝଣ୍ଡା ଉଁଚା ରହେ ହମାରା
ସଦାଶକ୍ତି ବରସାନେ ୱାଲା । ପ୍ରେମ ସୁଧା ସାନେ ୱାଲା ।
ବୀରୌଁ କୋ ହରଷାନେ ୱାଲା । ମାତୃଭୂମିକୋ ତନମନ ସାରା ।
ଝଣ୍ଡା ଉଁଚା ରହେ ହମାରା .... ଇତ୍ୟାଦି ।'

ଉପରୋକ୍ତ ଗୀତାଂଶଟି ଧ୍ୱଜ ବନ୍ଦନା ନାମରେ ଖ୍ୟାତ । ଉତ୍ତରପ୍ରଦେଶର ଶ୍ୟାମଲାଲ ଗୁପ୍ତା ନାମକ ଜଣେ ଜାତୀୟବାଦୀ କବିଙ୍କର ଏହି ରଚନା ୧୯୨୪ ମସିହାରେ ବେଲଗାଁଓଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଆବୃତ୍ତି କରାଯାଇଥିଲା । ଏଥିସହ ତତ୍କାଳୀନ ଯୁଗର ଜାତୀୟ ପତାକା ଉତ୍ତୋଳିତ ହୋଇଥିଲା । ତେବେ ୧୯୨୪ ମସିହାର ଜାତୀୟ ପତାକା ୧୯୪୭ ଅଗଷ୍ଟ, ୧୫ ତାରିଖର ଜାତୀୟ ପତାକାଠାରୁ ଭିନ୍ନ ଥିଲା ନିଶ୍ଚିତ । ଏଇ ପରିପ୍ରେକ୍ଷୀରେ ଏବେ ଆସନ୍ତୁ ଆମେ ତ୍ରିରଙ୍ଗାର କ୍ରମବିକାଶ କଥା ପ୍ରତି ଦୃଷ୍ଟି ଦେବା ।

ବର୍ତ୍ତମାନର ତ୍ରିରଙ୍ଗାର ଉପର ଅଂଶରେ ରହିଛି କେଶରୀ ବର୍ଣ୍ଣ ବା ଜାଫ୍‌ରନ୍ ରଙ୍ଗ, ମଝିରେ ଧଳା ରଙ୍ଗ ଓ ସବାତଳେ ଅଛି ଗାଢ଼ ସବୁଜ ରଙ୍ଗ । ଧଳା ରଙ୍ଗର ମଝିରେ ଖାପ ଖାଇଲା ଭଳି ଅଶୋକଙ୍କ ଧର୍ମଚକ୍ର ରହିଅଛି । ଏହି ଚକ୍ରର ବ୍ୟାସ ଧଳା ପଟିର ଚଉଡ଼ା ସହ ସମାନ । ଏଥିରେ ୨୪ଟି ଅର ଅଛି ।

ଭାରତର ପ୍ରଥମ ଜାତୀୟ ପତାକା ୧୯୦୬ ମସିହା ଅଗଷ୍ଟ ୭ ତାରିଖ ଦିନ କଲିକତାର ପାର୍ସି ବାଗାନ୍ (Green Park) ଚୌକଠାରେ ଉତ୍ତୋଳିତ ହୋଇଥିବାର କୁହାଯାଏ । ଏହି ପତାକାରେ ଲାଲ, ହଳଦିଆ ଓ ସବୁଜ ରଙ୍ଗର ପଟିମାନ କ୍ଷିତି ସମାନ୍ତର ଭାବରେ ରହିଥିଲା । ଏହି ପତାକାର ଉପର ଲାଲ ଅଂଶରେ ଆଠଗୋଟି ପଦ୍ମଫୁଲ ବୁଟା ଦ୍ୱାରା ଅଙ୍କିତ ହୋଇଥିଲା । ମଝିର ହଳଦିଆ ପଟି ଦେହରେ ଦେବନାଗରୀ ଅକ୍ଷରରେ ଗାଢ଼ ନୀଳରଙ୍ଗରେ ବନ୍ଦେ ମାତରମ୍ ଲେଖା ଯାଇଥିଲା । ସବାତଳର ସବୁଜ ରଙ୍ଗର ପଟି ଉପରେ ବାମ ପାଖରେ ଶୁଭ୍ରବର୍ଣ୍ଣର ସୂର୍ଯ୍ୟ ଓ ଡାହାଣ ପାଖରେ ସେହି ଶୁଭ୍ରବର୍ଣ୍ଣର ଏକ ଅର୍ଦ୍ଧଚନ୍ଦ୍ର ଓ ତାରକା ଚିହ୍ନ ଅଙ୍କିତ ହୋଇଥିଲା । କେତେକଙ୍କ ମତରେ ଏହି ପତାକା କେବଳ ପ୍ୟାରିସ୍ ଓ ବର୍ଲିନ୍‌ଠାରେ ଉତ୍ତୋଳିତ ହୋଇଥିଲା ।



୧୯୦୭ ମସିହାରେ ପ୍ୟାରିସ୍‌ଠାରେ ଏକ ସମାଜବାଦୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେଥିରେ ଭାଗ ନେଇଥିଲେ ଭାରତର ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମା ବିପ୍ଳବିନୀ ମ୍ୟାଡାମ୍ କାମା ଓ ତାଙ୍କର ସହଯୋଗୀ ଦଳ । ସେମାନେ ସମସ୍ତେ ଏକପ୍ରକାର ନିର୍ବାସିତ ଜୀବନଯାପନ କରୁଥିଲେ । ସେମାନେ ପ୍ୟାରିସ୍‌ଠାରେ ଯେଉଁ ଜାତୀୟ ପତାକା ଉତ୍ତୋଳନ କରିଥିଲେ, ତାହା ଥିଲା ପ୍ରୋକ୍ତ ପ୍ରଥମ ପତାକାଠାରୁ କିଞ୍ଚିତ ଭିନ୍ନ । ସେଥିରେ ଉପରର ଲାଲପଟିରେ ଗୋଟିଏ ପଦ୍ମ ଫୁଲ ସହ ସାତଗୋଟି ତାରା ଚିହ୍ନ ଥିଲା । ଏହି ତାରାମାନେ ଥିଲେ ସପ୍ତର୍ଷି (The Great Bear)ର ଚିହ୍ନ । ମଝିରେ ହଳଦିଆ ରଙ୍ଗ ପଟିରେ ବନ୍ଦେ ମାତରମ୍ ଓ ନିମ୍ନର ସବୁଜ ରଙ୍ଗରେ ପ୍ରଥମ ପତାକା ପରି ଶୁଭ୍ର ରଙ୍ଗରେ ବାମରେ ସୂର୍ଯ୍ୟ ଓ ଡାହାଣରେ ଅର୍ଦ୍ଧଚନ୍ଦ୍ର ତାରାର ଚିହ୍ନ ଥିଲା । କେତେକଙ୍କ ମତରେ ଏହା ବର୍ଲିନ୍‌ଠାରେ ୧୯୦୫ରେ ଉଡ଼ା ଯାଇଥିଲା ଓ ସେଥିରେ ଏକ ପଦ୍ମଫୁଲ ନଥିଲା । ତେବେ ପଦ୍ମଫୁଲ ଥିବା ନଥିବା ଏକ ବିତର୍କର ବିଷୟ ।

୧୯୧୭ ମସିହାର ଜାତୀୟ ପତାକାରେ ଉପର ତଳ ହୋଇ ଯଥାକ୍ରମେ ୫ଟି ଲାଲପଟି ଓ ୪ଟି ସବୁଜ ପଟି ଭୂମିର ସମାନ୍ତର ଭାବରେ ରହିଥିଲା ଏବଂ ଏହି ପଟିଗୁଡ଼ିକ ଉପରେ ସପ୍ତର୍ଷି ଚିହ୍ନ ଅଧାରୋପିତ ହୋଇଥିଲା । ଉପରର ବାମପାର୍ଶ୍ୱ କୋଣରେ ଖୁଣ୍ଟିର ଶେଷ ଭାଗ ନିକଟରେ ୟୁନିଅନ୍ ଜ୍ୟାକ୍ (The Union Jack)ର ଅଙ୍କନ ରହିଥିଲା । ଆଉ ଗୋଟିଏ କୋଣରେ ଶୁଭ୍ରବର୍ଣ୍ଣର ଅର୍ଦ୍ଧଚନ୍ଦ୍ର ଓ ତାରକାର ଚିହ୍ନ ରହିଥିଲା । ଏଥିରେ ୟୁନିଅନ୍ ଜ୍ୟାକ୍‌ର ଚିହ୍ନ ଥିବାରୁ





ଏହାକୁ ନେତୃବୃନ୍ଦ ଗ୍ରହଣ କଲେ ନାହିଁ । ଅତଏବ ଅନ୍ୟ ଏକ ପତାକାର ପରିକଳ୍ପନା କରାଯାଇଥିଲା ।

୧୯୨୧ ମସିହାରେ ଆନ୍ଧ୍ରପ୍ରଦେଶର ବିଜୟୱାଡ଼ାଠାରେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେ ସମୟରେ ଜଣେ ଯୁବକ ଲାଲ ଓ ସବୁଜ ରଙ୍ଗର ପତାକା ପ୍ରସ୍ତୁତ କରି ଗାନ୍ଧିଜୀଙ୍କ ପାଖରେ ଉପସ୍ଥାପନ କରିଥିଲେ । ଗାନ୍ଧିଜୀ ତହିଁରେ ଧଳାପଟି ରଖି ତା' ଭିତରେ ଅରଟ ଚିହ୍ନର ଅଙ୍କନ ରଖିବାର ପ୍ରସ୍ତାବ ଦେଲେ । ଅତଏବ ୧୯୨୧ ମସିହାରେ ପତାକାରେ ତିନି ରଙ୍ଗ ଓ ଚରଖା ରଖାଯିବା କଥା ଗୃହୀତ ହେଲା ଓ ଏହା ଯଥେଷ୍ଟ ଲୋକ ପ୍ରିୟତା ହାସଲ କରିଥିଲା ।

୧୯୩୧ ମସିହା ଆମର ଜାତୀୟ ପତାକା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ୧୯୩୧ ମସିହା ଏପ୍ରିଲ୍ ୧ ତାରିଖରେ କରାଚିଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଏକ ସାତଜଣିଆ ପତାକା କମିଟି ଗଠିତ ହେଲା । କମିଟିର ପରାମର୍ଶ ଅନୁସାରେ ଏକ ସାଦା କେଶରୀ ବର୍ଣ୍ଣର ପତାକା ଦେହରେ ରକ୍ତିମ ପିଙ୍ଗଳ ବର୍ଣ୍ଣର ଏକ ଚରଖା ପତାକାର ବାମପାର୍ଶ୍ୱ କୋଣରେ ଅଙ୍କିତ ହେବା କଥା । ନିଖିଳ ଭାରତ କଂଗ୍ରେସ କମିଟି ଏହି ପତାକା ପ୍ରସ୍ତାବକୁ ଗ୍ରହଣ ନକରିବାରୁ ଏକ ଭିନ୍ନ ଝଣ୍ଡା ପ୍ରସ୍ତୁତି କରାଯାଇଥିଲା । ସେହି ବର୍ଷ ଅର୍ଥାତ୍ ୧୯୩୧ରେ ଉପରେ କେଶରୀ ବର୍ଣ୍ଣ, ମଝିରେ ଶ୍ୱେତବର୍ଣ୍ଣ ଓ ନିମ୍ନରେ ସବୁଜ ବର୍ଣ୍ଣ ସହ ମଝିରେ ଧଳା ରଙ୍ଗ ଭିତରେ ଗାଢ଼ ନୀଳରଙ୍ଗର ଚରଖା ଚିହ୍ନ ରଖାଯାଇ ପତାକା ପ୍ରସ୍ତୁତ ହୋଇଥିଲା । ପତାକାର ଆକାର ଥିଲା - ଲମ୍ବ ତିନିଗୁଣ ହେଲେ ପ୍ରସ୍ଥ ଦୁଇଗୁଣ । ଏହା ବହୁଳ ଭାବେ ବ୍ୟବହୃତ ହୋଇଥିଲା ।

୧୯୪୭ ମସିହା ଜୁଲାଇ ୨୨ ତାରିଖ ଦିନ ଭାରତର ସମ୍ବିଧାନ ସଭା ଆମର ପ୍ରିୟ ତ୍ରିରଙ୍ଗାକୁ ଗ୍ରହଣ କରି ନେଲେ ଯହିଁରେ ୧୯୩୧ ମସିହାରେ ସ୍ଥିର କରାଯାଇଥିବା ପତାକାର ଆକାର ଓ ରଙ୍ଗ ସ୍ଥିର ରହିବା ସ୍ଥଳେ କେବଳ ଚରଖା ସ୍ଥାନରେ ସମ୍ରାଟ ଅଶୋକଙ୍କର ଧର୍ମଚକ୍ରକୁ ପ୍ରତୀକ ଭାବେ ରଖାଗଲା । ତ୍ରିରଙ୍ଗାର କେଶରୀ ବର୍ଣ୍ଣ ହେଉଛି ସାହସ ଓ ତ୍ୟାଗର ଚିହ୍ନ । ଶୁଭ୍ରରଙ୍ଗ ହେଉଛି ସତ୍ୟ ଓ ଶାନ୍ତିର ପ୍ରତୀକ । ସବୁଜ ରଙ୍ଗ, ବିଶ୍ୱାସ, ପ୍ରାଚୁର୍ଯ୍ୟ ଓ ବୀରତ୍ୱର ଚିହ୍ନ । ନୀଳରଙ୍ଗର ଧର୍ମଚକ୍ର ପ୍ରଗତିର ସୂଚନା ଦିଏ । ଏହି ଧର୍ମଚକ୍ର ଉପନିଷଦର 'ଚରୈବେତି' (ଆଗେଇ ଚାଲ) ମନ୍ତ୍ରକୁ ସ୍ମରଣ କରାଉଅଛି । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖଠାରୁ ଏହି ଜାତୀୟ ପତାକା ସର୍ବତ୍ର ଯଥାବିଧି ମାନ୍ୟତା ପାଇ ଆସୁଅଛି । ଏହା ଆମର ସ୍ୱାଧୀନତାର ପ୍ରତୀକ ।

ଟିଚର ଏଡୁକେଟର
ଡି.ଆଇ.ଇ.ଟି., ଟିକାବାଲି
କନ୍ଧମାଳ

---

# ସ୍ୱଜଳଧାରା ଯୋଜନାରେ ଓଡ଼ିଶାର ୨୭ଟି ଜିଲ୍ଲା ଅନ୍ତର୍ଭୁକ୍ତ

ସ୍ୱଜଳଧାରା ଓ ସଂପୂର୍ଣ୍ଣ ପରିମଳ ଯୋଜନାରେ କେନ୍ଦ୍ର ସରକାର ରାଜ୍ୟକୁ ୬ କୋଟି ୫୦ ଲକ୍ଷ ଟଙ୍କା ପ୍ରଦାନ କରିଛନ୍ତି । ଜାତୀୟ ଯୋଜନା ମଂଜୁରୀ କମିଟି ବୈଠକରେ ୨୦୦୪-୦୫ ଆର୍ଥିକ ବର୍ଷ ପାଇଁ ସ୍ୱଜଳଧାରା ପ୍ରଥମ କିସ୍ତିବାବଦ ଉକ୍ତ ଅର୍ଥ ଘୋଷଣା କରାଯାଇଛି । ରାଜ୍ୟର ୨୭ଟି ଜିଲ୍ଲାରେ ଏହା ବିନିଯୋଗ କରାଯିବ । ୯ଟି ଜିଲ୍ଲାରେ ସଂପୂର୍ଣ୍ଣ ପରିମଳ ଅଭିଯାନ କାର୍ଯ୍ୟକାରୀ ହେବ । ଜିଲ୍ଲା ଜଳ ଓ ପରିମଳ ମିଶନ ଜରିଆରେ ଏହା ରୂପାୟନ ହେବ । ପ୍ରଥମେ ଉକ୍ତ ୯ଟି ଜିଲ୍ଲା ପ୍ରକଳ୍ପ ପାଇଁ କେନ୍ଦ୍ରୀୟ ସହାୟତାର ପ୍ରଥମ କିସ୍ତି ୩୦ ଭାଗ ଅର୍ଥ ଖୁବ୍‌ଶୀଘ୍ର ଯୋଗାଇ ଦିଆଯିବ । ସଂପୃକ୍ତ ଜିଲ୍ଲାର ନିର୍ଦ୍ଦିଷ୍ଟ ବ୍ୟାଙ୍କ ଶାଖାରେ ନିରୂପିତ ରାଶିକୁ କେନ୍ଦ୍ର ସରକାର ଜମା କରିବେ ଏବଂ କାମ ଅନୁଯାୟୀ ବ୍ୟାଙ୍କରୁ ଏହି ଅର୍ଥ ଉଠାଇ ଖର୍ଚ୍ଚ କରାଯିବ ।

ଗତ ଅକ୍ଟୋବର ମାସ ୨୫ ତାରିଖରେ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଦିଲ୍ଲୀ ଗସ୍ତରେ ଯାଇ କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀଙ୍କ ସହ ସାକ୍ଷାତ ଆଲୋଚନା କରିଥିଲେ । ସ୍ୱଜଳଧାରା ଓ ସଂପୂର୍ଣ୍ଣ ପରିମଳ ଯୋଜନାରେ ଅଧିକ କେନ୍ଦ୍ରୀୟ ସହାୟତା ପ୍ରଦାନ କରିବା ପାଇଁ ଅନୁରୋଧ କରିଥିଲେ । ଓଡ଼ିଶା ଭଳି ଅନଗ୍ରସର ରାଜ୍ୟର ଗ୍ରାମୀଣ ଉନ୍ନତିକୁ ସର୍ବାଧିକ ଅଗ୍ରାଧିକାର ଦିଆଯିବ ବୋଲି କେନ୍ଦ୍ର ମନ୍ତ୍ରୀ ପ୍ରତିଶ୍ରୁତି ଦେଇଥିଲେ । ଫଳସ୍ୱରୂପ ରାଜ୍ୟକୁ ଉକ୍ତ ଅର୍ଥ ମଂଜୁର କରାଯାଇଛି ।

ସଂକଳନ : ଗବେଷଣା ଓ ତଥ୍ୟ ସୂଚନା ଶାଖା





# ଭାରତୀୟ ଗଣତନ୍ତ୍ର ଓ ମାନବିକ ଅଧିକାର

କୁଳମଣି ନାଥଶର୍ମା

**ସ**ମଗ୍ର ବିଶ୍ୱରେ ଭାରତବର୍ଷ ଏକ ବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ପରିଗଣିତ । ବିଶେଷକରି ଏହି ଦେଶ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ ଗଣତାନ୍ତ୍ରିକ ଓ ସାଧାରଣତନ୍ତ୍ର ରାଷ୍ଟ୍ର ହୋଇଥିବାରୁ ବିଶ୍ୱଦରବାରରେ ଏହାର ମାନ୍ୟତା ଓ ପରିଚୟ ସ୍ୱତନ୍ତ୍ର । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସ୍ୱାଧୀନ ଭାରତବର୍ଷର ଐକ୍ୟ, ସଂହତି ଓ ଅଖଣ୍ଡତା ଏବଂ ପଞ୍ଚଶୀଳ ନୀତି ଏହାର ଆତ୍ମିକ ମର୍ଯ୍ୟାଦା ବୃଦ୍ଧି କରିପାରିଛି । ଶହ ଶହ ବର୍ଷ ଧରି ଶୋଷଣ, ଅତ୍ୟାଚାର, ଲାଞ୍ଛନାର କୁତ୍ସିତ ବଳୟରୁ ଗୋଟିଏ ରାଷ୍ଟ୍ର ସଂଗ୍ରାମ କରି ଯେତେବେଳେ ମୁକ୍ତି ପାଏ, ସେତେବେଳେ ନିଜକୁ ପୁଣି ନୂଆକରି ଗଢ଼ିବାକୁ ଆରମ୍ଭ କରେ । ନିଜ ମାଲିକାନାରେ ପ୍ରୟାସ କରେ ରାଷ୍ଟ୍ର ପୁନର୍ଗଠନ ପ୍ରକ୍ରିୟା ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ । ଜର୍ଜରିତ ଯନ୍ତ୍ରଣା ଭିତରୁ ଜନ୍ମ ନେଲା ନୂତନ ଭାରତବର୍ଷ । ଏହାପରେ ଆରମ୍ଭ ହୋଇଗଲା ଏହାର ଭବ୍ୟ ଅଭିବୃଦ୍ଧି ଫର୍ଦ୍ଦର ଅସୁମାରୀ ଗଣନା । ଏହି ଦିବସଟି ଆମ ପାଇଁ, ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଯେତିକି ପୁଲକମୟ ଓ ମହାର୍ଘ, ତତୋଽଧିକ ଆବେଗମୟ ଓ ସ୍ମୃତି ବିଜଡ଼ିତ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଏହି ନବଜାତ ଶିଶୁ 'ସ୍ୱାଧୀନ ଭାରତ'ର ନାଭିଚ୍ଛେଦନ ପର୍ବ । ଏହି ଦିନ ଏତେ ବଡ଼ ରାଷ୍ଟ୍ରରେ ଦେଶଶାସନ ଖସଡ଼ା ବା ସମ୍ବିଧାନ ମାନ୍ୟତା ସହ କାର୍ଯ୍ୟକାରୀ ହେଲା । ବୃହତ୍ ସମ୍ବିଧାନର ବ୍ୟବସ୍ଥା, ନିୟମ, ଆଇନ କାନୁନ୍ ପ୍ରଣୟନ ଭାରତ ଇତିହାସରେ କେବଳ ଯେ ଏକ ଐତିହାସିକ କାର୍ଯ୍ୟ ତାହା ନୁହେଁ, ବରଂ ଏହି ଶାସନ-ସଂହିତା ସଦୃଶ ସମ୍ବିଧାନର ପ୍ରଣେତା ମାର୍ଗଦର୍ଶକ ଡକ୍ଟର ବି.ଆର୍. ଆମ୍ବେଦକର ଓ ଜବାହରଲାଲ ନେହେରୁଙ୍କ ପରି ଅଗ୍ରଜ ସୂରୀମାନଙ୍କ ଅବଦାନ ଅବିସ୍ମରଣୀୟ ।



THE CONSTITUTION OF INDIA

WE, THE PEOPLE OF INDIA, having solemnly resolved to constitute India into a SOVEREIGN DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

ଭାରତର ମୂଳ ସଂବିଧାନର କପି

ସେହିଦିନଠାରୁ ଆମ ରାଷ୍ଟ୍ର କେବେ ପଛକୁ ଚାହିଁ ନାହିଁ । ନାଗରିକମାନଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ ତଥା ଅଧିକାର ସଂପର୍କରେ ସାମ୍ବିଧାନିକ ସଚେତନତା ସୃଷ୍ଟି କରି ଏକ ଶକ୍ତିଶାଳୀ ଗଣତାନ୍ତ୍ରିକ ରାଷ୍ଟ୍ରର ଯୋଗ୍ୟତା ଅର୍ଜନ କରିପାରିଛି ଆମର ସ୍ୱାଧୀନ ଭାରତ । ଶିଳ୍ପ, କୃଷି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା, ବୈଷୟିକ ଜ୍ଞାନକୌଶଳ, ପରମାଣୁ ଶକ୍ତି, ମହାକାଶ ଗବେଷଣା, ଚିକିତ୍ସା ବିଜ୍ଞାନ, କମ୍ପ୍ୟୁଟର ଓ ଯୋଗାଯୋଗ କ୍ଷେତ୍ରରେ ଆମ ଦେଶର ଅଭୁତପୂର୍ବ ପ୍ରଗତି ସମଗ୍ର ବିଶ୍ୱକୁ ବିସ୍ମିତ କରିପାରିଛି । ପରମାଣୁ ଶକ୍ତି ସଂପନ୍ନ ରାଷ୍ଟ୍ର ରୂପେ ପ୍ରସିଦ୍ଧିଲାଭ କରିବା ସାଂଗକୁ ଚନ୍ଦ୍ର ଅଭିଯାନ ପାଇଁ ବ୍ୟାପକ ଉଦ୍ୟମ ଆରମ୍ଭ କରିଦେଇଥିବା ଆମ ଦେଶ ମଧ୍ୟ ସଦ୍ୟତମ ବ୍ରହ୍ମୋସ କ୍ଷେପଣାସ୍ତ୍ର ନିର୍ମାଣ କରିବା ପରେ କେତେକ ରାଷ୍ଟ୍ରଙ୍କର ଏହାକୁ କ୍ରୟ କରିବା ପାଇଁ ଆଗ୍ରହ ଆମର ଉନ୍ନତ ତଥା କୁଶଳୀ ସାମରିକ ଶକ୍ତିର ପରିଚୟ ଦେଇଛି । ଏପରିକି ଡିସେମ୍ବର ୧୬ ତାରିଖ ଦିନ ଆମେରିକାର ସଦ୍ୟ ଗଣନାନୁଯାୟୀ (Accoring to US Census released on 16th December, 2004, "We the People : Asian Americans in the United States.") ଆମେରିକାରେ ବସବାସ କରୁଥିବା ଅଧିବାସୀମାନଙ୍କ ମଧ୍ୟରୁ ସର୍ବାପେକ୍ଷା ଶିକ୍ଷିତ ଓ ରୋଜଗାରୀଙ୍କ ମଧ୍ୟରେ ଭାରତୀୟମାନଙ୍କ ସଂଖ୍ୟା ଅଧିକ ।





ସ୍ୱାଧୀନତା ପରେ ସାମ୍ବିଧାନିକ ବ୍ୟବସ୍ଥା ମଧ୍ୟରେ ଏକ ବିଶାଳ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତ ୧୨୦ କୋଟି ଜନସମୁଦ୍ରକୁ ନେଇ ଜାତି, ଧର୍ମ, ବର୍ଣ୍ଣ ଭିତ୍ତିରେ ବହୁଧା ବିଭକ୍ତ ଜନଚେତନାକୁ ସଂଗଠିତ କରି ପ୍ରଗତି ପଥରେ ଦ୍ରୁତ ଗତିରେ ଆଗକୁ ମାଡ଼ି ଚାଲିବା ଅନ୍ୟ ରାଷ୍ଟ୍ରମାନଙ୍କ ପାଇଁ ନିଶ୍ଚିତ ଈର୍ଷଣୀୟ । ଲାଞ୍ଛନାରେ ଲାଜେଇ ପଡ଼ିଥିବା, ଦହନରେ ଦୁହିଁ ହୋଇଯାଇଥିବା, ଶୋଷଣରେ ଶୁଷ୍କ ହୋଇ ପଡ଼ିଥିବା, ଭ୍ରଷ୍ଟାଚାରରେ ଭିଜି ଯାଇଥିବା, ଅତ୍ୟାଚାରରେ ଅଶ୍ରୁ ନିଗାଡୁଥିବା ଗୋଟିଏ ସଂସ୍କୃତି ସଂପନ୍ନ ଚେତନଶୀଳ ଜାତିକୁ କୌଣସି ବାହ୍ୟଶକ୍ତି ସବୁଦିନ ପାଇଁ ଦମନ କରି ମଥାନତ କରି ଅଧୀନରେ ରଖିବା ସମ୍ଭବପର ନୁହେଁ । ପରିଶେଷରେ ଉର୍ଜ୍ଜସ୍ୱଳ ଭାରତ ମାଟି ମୁକୁଳି ଆସିଲା ମାଟିଲୋଭୀ ଶକ୍ତିର ମାଂସଳ ହାତର ମାୟାରୁ ।

ଆଜି ସମଗ୍ର ବିଶ୍ୱ ବକ୍ଷରେ ଭାରତ କେବଳ ଏକ ବିକାଶୋନ୍ମୁଖୀ ରାଷ୍ଟ୍ର ନୁହେଁ, 'ସର୍ବବୃହତ୍ ଶକ୍ତିଶାଳୀ ଓ ଫଳପ୍ରଦ ଗଣତନ୍ତ୍ର' ରୂପକ ବିଶେଷଣ ଧାରଣ କରି ବିକଶିତ ରାଷ୍ଟ୍ରରେ ପରିଣତ ହେବାର ପଥରେ ଅଗ୍ରସର । ଆମ ଦେଶର ସର୍ବୋଚ୍ଚ ମୁଖ୍ୟ ମାନ୍ୟବର ରାଷ୍ଟ୍ରପତି ଶ୍ରୀଯୁକ୍ତ ଏ.ପି.ଜେ. ଅବଦୁଲ କାଲାମ୍‌ଙ୍କର ୨୦୨୦ ମସିହା ସୁଦ୍ଧା ଭାରତବର୍ଷକୁ ଏକ ବିକଶିତ ରାଷ୍ଟ୍ରରେ ପରିଣତ କରିବାର ଦୃପ୍ତ ଆହ୍ୱାନ ଆମର ଯାତ୍ରାକୁ ଅଧିକ ବେଗଶାଳୀ କରି ଦେଇଛି । ଆମ ରାଷ୍ଟ୍ରପତିଙ୍କ ଆହ୍ୱାନ ହେଉଛି -

I will work and sweat
For a great vision
The vision of transforming India
Into a developed nation
Powered by economic strength
With value system.

ରାଷ୍ଟ୍ରପତିଙ୍କ ସ୍ୱପ୍ନରେ ବିକଶିତ ଭାରତ ପାଇଁ ମୁଖ୍ୟତଃ ରହିଛି - ଦୁଇଟି ଆଧାର । ତାହା ହେଉଛି - ମୂଲ୍ୟବୋଧ ସହ ଅର୍ଥନୈତିକ ଶକ୍ତି ଏବଂ ବୃହତ୍ ସ୍ୱପ୍ନର ଆଧାର (Small aim is a crime) । ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଆମ ଦେଶ ସଂବିଧାନରେ ରାଜନୈତିକ ସ୍ୱାଧୀନତା ବ୍ୟତୀତ ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ବିଭବକୁ ଗୁରୁତ୍ୱ ଦିଏ ସେଥିମଧ୍ୟରୁ ଅର୍ଥନୈତିକ ସ୍ୱାଧୀନତା ଓ ମାନବୀୟ ମୂଲ୍ୟବୋଧର ବିକାଶ ପ୍ରମୁଖ ଅଟେ ।

ସ୍ୱାଧୀନତା ପାଇବାର ୫୭ ବର୍ଷ ଓ ସମ୍ବିଧାନ ପ୍ରଣୟନର ୫୫ ବର୍ଷ ବିତି ଗଲାଣି । ଭାରତୀୟ ନାଗରିକମାନେ କେବଳ ଭୋଟ ଦେବାର ଅଧିକାର ବା ରାଜନୈତିକ ଅଧିକାରକୁ ଅଦ୍ୟାବଧି ସ୍ୱାଧୀନତା ବୋଲି ବିବେଚନା କରିଥାନ୍ତି । ଏକ ଗଣତାନ୍ତ୍ରିକ ସ୍ୱାଧୀନ ରାଷ୍ଟ୍ରରେ ମୁଖ୍ୟତଃ ଶାସନ ବ୍ୟବସ୍ଥାର ସଫଳ କାର୍ଯ୍ୟକାରିତା ପାଇଁ ଚାରି ଗୋଟି ବିଭବ ଉପରେ ଗୁରୁତ୍ୱ ଦିଆଯାଏ । ରାଜନୈତିକ, ଅର୍ଥନୈତିକ, ସୁଯୋଗର ସମାନତା, ସମଷ୍ଟିଗତ ଏବଂ ବ୍ୟକ୍ତିଗତ ଅଧିକାର ଓ ଦାୟିତ୍ୱ ହିଁ ଫଳପ୍ରଦ ଗଣତାନ୍ତ୍ରିକ ବ୍ୟବସ୍ଥାର ପୃଷ୍ଠଭୂମି ।

ସାମ୍ବିଧାନିକ ବ୍ୟବସ୍ଥାନୁସାରେ ଆମ ଦେଶର ଗଣତାନ୍ତ୍ରିକ ଆଭିମୁଖ୍ୟ ପ୍ରତିଫଳିତ ହୁଏ ଆମର ବୈଦେଶିକ 'ପଞ୍ଚଶୀଳ ନୀତି'ରେ । ଏହାର ପ୍ରମୁଖ ସୂତ୍ର 'ଶାନ୍ତିପୂର୍ଣ୍ଣ ସହାବସ୍ଥାନ' (Peaceful coexistence) ଆମ ଦେଶର ଅନ୍ତରୀଣ ତଥା ଆନ୍ତର୍ଜାତିକ ସ୍ତରରେ ଅନ୍ୟାନ୍ୟ ରାଷ୍ଟ୍ର ସହ ସଂପର୍କ ଅଭିବୃଦ୍ଧିର ପ୍ରମୁଖ ଆୟୁଧ । ବିଭିନ୍ନ ଧର୍ମ ପ୍ରତି ନିରପେକ୍ଷ ଦୃଷ୍ଟିଭଙ୍ଗୀ, ଅନ୍ୟର ନ୍ୟାୟୋଚିତ ଅଧିକାର ପ୍ରତି ସମ୍ମାନ ଆମ ଦେଶର ମାନବିକ ଚରିତ୍ର ଓ ମର୍ଯ୍ୟାଦା ବୃଦ୍ଧିର ସହାୟକ ।

ଅପରନ୍ତୁ ବହୁ ସମୟରେ ଆନ୍ତର୍ଜାତିକ ଦୃଶ୍ୟପଟ୍ଟରେ ଆମେରିକା ପରି ବହୁ ଗଣତନ୍ତ୍ର ରାଷ୍ଟ୍ରରେ ମଣିଷ ରୂପେ ବାସ କରିବାର ଅଧିକାର ସ୍ଥଳ ବିଶେଷରେ ବ୍ୟାହତ ହେବାର ପରିଲକ୍ଷିତ ହେଉଛି । ସାମାଜିକ ପ୍ରଗତି ସହ ଉନ୍ନତତର ଜୀବନ ଧାରଣ ସମ୍ଭବ ହେଉ ନାହିଁ । ଅନ୍ୟାନ୍ୟ ରାଷ୍ଟ୍ର ପରି ଆମ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାରେ ବୈଷମ୍ୟମୟ ସମାଜରେ ଅର୍ଦ୍ଧାଧିକ ସଂଖ୍ୟକ ଲୋକ ଦରିଦ୍ର ଥିଲାବେଳେ ମଣିଷର ମାନବିକ ଅଧିକାର ଓ ଆତ୍ମସମ୍ମାନ କ୍ଷୁଣ୍ଣ ହେଉଛି । ଅଶିକ୍ଷା, ନିରକ୍ଷରତା, ଧର୍ମାନ୍ଧତା, ଅବୈଜ୍ଞାନିକ ଚିନ୍ତାଚେତନା ଓ ଅତିସରଳତା ବହୁଳାଂଶରେ ଲୋକମାନଙ୍କୁ ସ୍ଥାଣୁ କରି ଦେଇଛି । ଫଳରେ ମାନବିକ ଅଧିକାର ଓ ମୌଳିକ ସ୍ୱାଧୀନତାରୁ ବଂଚିତ ହେବା ଫଳରେ ସମଗ୍ର ରାଷ୍ଟ୍ରର ଯୁଗୋପଯୋଗୀ ଗତିଶୀଳତା ହ୍ରାସ ପାଉଛି । ପ୍ରଗତିର କ୍ଷିପ୍ରତା ରହୁ ନାହିଁ । ସମାଜର ସମୁନ୍ନତି ପାଇଁ ପ୍ରତ୍ୟେକଙ୍କ ଜୀବନରେ ସମୃଦ୍ଧି ଓ ସମ୍ମାନ ଭରି ଦେବାକୁ ହେଲେ ମାନବିକ ଅଧିକାର ଦିଗଟିକୁ ପ୍ରତ୍ୟେକ ଶାସନକର୍ତ୍ତା, ନିର୍ବାଚିତ ପ୍ରତିନିଧି ଓ ପ୍ରତ୍ୟେକ ନାଗରିକଙ୍କୁ ହୃଦୟଙ୍ଗମ କରିବାକୁ ପଡ଼ିବ ।

ତେବେ ପ୍ରଶ୍ନ ଉଠୁଛି - ଗଣତନ୍ତ୍ରକୁ ସମୁନ୍ନତ ଓ ଶକ୍ତିଶାଳୀ କରିବାକୁ ଉପଯୋଗୀ ବୋଲି ଅଭିହିତ 'ମାନବିକ ଅଧିକାର' କ'ଣ ଏବଂ ଏହା ସାମ୍ବିଧାନିକ ବ୍ୟବସ୍ଥାର ପରିଧି ଭିତରେ କିପରି ସୁରକ୍ଷିତ ହୋଇପାରିବ ?

### ମାନବିକ ଅଧିକାର କ'ଣ

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଯେତେବେଳେ ପୃଥବୀ ବକ୍ଷରେ ଧ୍ୱଂସର ଭବିତବ୍ୟ ଚିତ୍ର ଓ ଦୃଶ୍ୟ ସବୁ ରାଷ୍ଟ୍ର ହୃଦୟଙ୍ଗମ କଲେ ଓ ଏହାର ବିଷମୟ ପରିଣତିରେ କଲବଲ ମଣିଷ ସମାଜ ଦାସତ୍ୱର ଗର୍ତ୍ତ ଭିତରେ ପଡ଼ି ମଣିଷ ପରି ବଂଚିବାର ରାହା ପାଇଲା ନାହିଁ, ସେତେବେଳେ ମଣିଷର ଅଧିକାର ଓ ସ୍ଥିତି ଉପରେ ବିତର୍କ ଆରମ୍ଭ





ହେଲା । ବିଶ୍ୱ ଦରବାରରେ ସଂଘଟିତ ବର୍ବରୋଚିତ କାର୍ଯ୍ୟରୁ ମାନବଜାତିର ବିବେକ ଉଦୟ ହେଲା । ଏପରି ଏକ ବିଶ୍ୱ ଗଠନ ପାଇଁ ଉଦ୍ୟମ ଆରମ୍ଭ ହେଲା ଯେଉଁଠାରେ ମନୁଷ୍ୟ ବାକ୍ ଓ ବିଶ୍ୱାସର ସ୍ୱାଧୀନତା ପାଇବ । ମୁକ୍ତି ପାଇବ ଭୟ ଓ ଅଭାବରୁ ଏବଂ ସେଇଥିରୁ ହିଁ ଘୋଷିତ ହେବ ସାଧାରଣ ମଣିଷର ଉଚ୍ଚ ଆକାଂକ୍ଷା ।

### ସାର୍ବଜନୀନ ମାନବ ଅଧିକାର ଘୋଷଣାନାମା

୧୯୪୮ ମସିହା ଡିସେମ୍ବର ୧୦ ତାରିଖରେ ଜାତିସଂଘର ସାଧାରଣ ଅଧିବେଶନରେ ଗୃହୀତ ହେଲା ମାନବ ଅଧିକାର ସମ୍ବଳିତ ସାର୍ବଜନୀନ ଘୋଷଣାନାମା (Universal Declaration of Human Rights) । ଏହି ଐତିହାସିକ ଘୋଷଣାନାମାକୁ ପର୍ଯ୍ୟାୟ ଭାବେ ସାଧାରଣ ପରିଷଦର ସଭ୍ୟ ରାଷ୍ଟ୍ରମାନଙ୍କୁ ପ୍ରକାଶ, ପ୍ରଚାର ଓ ପ୍ରସାର ପାଇଁ ଆହ୍ୱାନ ଦିଆଯାଇଥିଲା । ପ୍ରତିଟି ରାଷ୍ଟ୍ର ରାଜନୈତିକ ପ୍ରାଧାନ୍ୟକୁ ଗୁରୁତ୍ୱ ନଦେଇ ଏହା ସଂପର୍କରେ ବ୍ୟାପକ ସଚେତନତା ସୃଷ୍ଟି ପାଇଁ ବ୍ୟବସ୍ଥା ଗ୍ରହଣ କରିବାକୁ ପରାମର୍ଶ ଦିଆଯାଇଥିଲା ।

ମାନବ ଅଧିକାର ସମ୍ବଳିତ ଏହି ସାର୍ବଜନୀନ ଉଦ୍‌ଘୋଷଣାକୁ ସବୁରାଷ୍ଟ୍ରର ସବୁ ନାଗରିକମାନଙ୍କ ପାଖରେ ପହଞ୍ଚାଇଲାଣି କି ? ସେମାନେ ମାନବ ଅଧିକାରଭୁକ୍ତ ବିଧି ବ୍ୟବସ୍ଥା ସଂପର୍କରେ ସଚେତନ ଅଛନ୍ତି କି ? ଗଣତନ୍ତ୍ର ରାଷ୍ଟ୍ରରେ ମାନବ ଅଧିକାର ସଂପର୍କରେ ସଚେତନ ନ ହେଲେ ଗଣତାନ୍ତ୍ରିକ ବ୍ୟବସ୍ଥା ସଫଳ ହୋଇପାରିବ କି ? ସେଥିପାଇଁ ଏହି ଲେଖକ ଜାତିସଂଘର ମାନବିକ ଅଧିକାର ପର୍ଯ୍ୟାୟଭୁକ୍ତ ବିଭିନ୍ନ ଧାରା ସଂପର୍କରେ ଏହି ସନ୍ଦର୍ଭ ମାଧ୍ୟମରେ ସମସ୍ତଙ୍କୁ ଅବଗତ କରାଇବାର ପ୍ରୟାସ କରିଛି ।

ଏହି ଘୋଷଣାନାମାରେ ମାନବ ପରିବାରର ସକଳ ସଦସ୍ୟଙ୍କର ଅନ୍ତର୍ନିହିତ ସ୍ୱାଭିମାନ ଓ ସମାନତା ଏବଂ ଅବିଚ୍ଛିନ୍ନ ଅଧିକାରର ସ୍ୱୀକୃତି, ସମସ୍ତ ସଦସ୍ୟ ରାଷ୍ଟ୍ରମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଓ ସୁସଂପର୍କ ସ୍ଥାପନ କରିବା, ସେମାନଙ୍କର ଜନଗଣ ନିଜ ଅଧିକାରପତ୍ରରେ ମୌଳିକ ମାନବ ଅଧିକାର, ମାନବିକ ବ୍ୟକ୍ତିତ୍ୱର ଗୌରବ ଓ ଯୋଗ୍ୟତା ପ୍ରତି ଏବଂ ନରନାରୀ ଉଭୟଙ୍କର ସମାନ ଅଧିକାର ଉପରେ ବିଶ୍ୱାସକୁ ପୁନଃପ୍ରତିଷ୍ଠା କରିବା ଓ ବ୍ୟାପକତର ସ୍ୱାଧୀନତା ଭିତରେ ସାମାଜିକ ପ୍ରଗତି ଓ ଉନ୍ନତତର ଜୀବନ ଧାରଣ ପାଇଁ ନିଶ୍ଚିତ କରିବା ପ୍ରସ୍ତାବ ପ୍ରତ୍ୟେକ ସଦସ୍ୟ ରାଷ୍ଟ୍ରମାନଙ୍କୁ ଦିଆଯାଇଛି ।

ଜାତିସଂଘର ସାଧାରଣସଭାରେ 'ମାନବ ଅଧିକାରର ଏହି ସାର୍ବଜନୀନ ଘୋଷଣା'ର ଉଦ୍ଦେଶ୍ୟ ହେଉଛି - ପ୍ରତ୍ୟେକ ବ୍ୟକ୍ତି ଓ ସମାଜର ପ୍ରତ୍ୟେକ ଅଂଗ ଏହି ଘୋଷଣାନାମାକୁ ନିରନ୍ତର ଦୃଷ୍ଟିରେ ରଖି ଅଧ୍ୟୟନ ଓ ଶିକ୍ଷାଦାନ ମାଧ୍ୟମରେ ଏହି ଅଧିକାର ଓ ସ୍ୱାଧୀନତାଗୁଡ଼ିକ ପ୍ରତି ସମାନଭାବ ବୃଦ୍ଧି କରିବା ପାଇଁ ଯତ୍ନ କରିବେ ।

### ମାନବିକ ଅଧିକାରର ବିଧି ବ୍ୟବସ୍ଥା

୩୦ ଗୋଟି ଧାରା ସମ୍ବଳିତ ଏହି 'ମାନବ ଅଧିକାର ସଂପର୍କୀୟ ସାର୍ବଜନୀନ ଉଦ୍‌ଘୋଷଣା'କୁ ସଂକ୍ଷିପ୍ତ ଭାବେ ଉଲ୍ଲେଖ କରୁଛି ।

୧. ପ୍ରଥମ ଧାରାନୁଯାୟୀ ସକଳ ମନୁଷ୍ୟ ମୁକ୍ତ ଭାବେ ଜନ୍ମ ହୁଅନ୍ତି ଓ ମର୍ଯ୍ୟାଦା ତଥା ଅଧିକାର ଦୃଷ୍ଟିରୁ ସମାନ ଅଟନ୍ତି । ପରସ୍ପର ମଧ୍ୟରେ ଭ୍ରାତୃଭାବ ସ୍ଥାପନ କରିବା ସମସ୍ତଙ୍କର ପରମ କର୍ତ୍ତବ୍ୟ ।

୨. ସମସ୍ତ ସ୍ୱାଧିକାର ଓ ସ୍ୱାଧୀନତା ପାଇଁ ପ୍ରତ୍ୟେକ ସମାନଭାବେ ହକ୍‌ଦାର । ଏଥିରେ ଜାତି, ଲିଙ୍ଗ, ଭାଷା, ଧର୍ମ, ରାଜନୈତିକ ମତ ବା ଅନ୍ୟମତ, ଜାତୀୟତା, ସାମାଜିକ ସ୍ଥିତି, ଧନସଂପତ୍ତି, ଜନ୍ମଗତ ବା ଅନ୍ୟ ଆଭିଜାତ୍ୟ ଆଦି କୌଣସି ଦୃଷ୍ଟିରୁ ତାରତମ୍ୟ ରହିବ ନାହିଁ ।

ରାଜନୀତି ବା ଆଞ୍ଚଳିକ ବା ଆନ୍ତର୍ଜାତିକ ଦୃଷ୍ଟିରୁ କୌଣସି ଦେଶ ବା ପ୍ରଦେଶର ନାଗରିକ ଓ ଅଧିବାସୀଙ୍କ ପ୍ରତି କୌଣସି ଭେଦଭାବ ରଖାଯିବ ନାହିଁ ।

୩. ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନ ଭାବେ ବଂଚି ରହିବା ଓ ବ୍ୟକ୍ତିଗତ ସୁରକ୍ଷାର ଅଧିକାର ରହିଛି ।

୪. କାହାକୁ ଦାସ ବା ଗୋତି ଶ୍ରମିକ ରୂପେ କାର୍ଯ୍ୟରେ ନିଯୁକ୍ତ କରାଯିବ ନାହିଁ, ଦାସ ପ୍ରଥା ଓ ଦାସତ୍ୱକୁ ନିଷିଦ୍ଧ କରାଯିବ ।

୫. ଅତ୍ୟାଚାର, ଶୋଷଣ, ନିଷ୍ଠୁର ଅମାନବୀୟ ଆଚରଣ ତଥା ଅପମାନ ବା ଦଣ୍ଡର କେହି ଶୀକାର ହେବେ ନାହିଁ ।

୬. ପ୍ରତ୍ୟେକ ସ୍ଥାନରେ ପ୍ରତ୍ୟେକଙ୍କର ଆଇନ ଦୃଷ୍ଟିରେ ଜଣେ ବ୍ୟକ୍ତି ଭାବରେ ସ୍ୱୀକୃତି ପାଇବାର ଅଧିକାର ରହିବ ।

୭. ଆଇନ ଦୃଷ୍ଟିରୁ ସମସ୍ତେ ସମାନ ଓ ସମାନ ଭାବେ ସମସ୍ତେ ଆଇନ ସୁରକ୍ଷାର ଅଧିକାରୀ । ଏହାର ଉଲଂଘନ ବା ଉଲଂଘନ ପାଇଁ ପ୍ରୋତ୍ସାହନ ଦିଆଗଲେ ତାହାକୁ ବିରୋଧ କରିବାର ସମାନ ଅଧିକାର ସମସ୍ତଙ୍କର ରହିବ ।

୮. ସମ୍ବିଧାନପ୍ରାପ୍ତ ମୌଳିକ ଅଧିକାରକୁ ଉଲଂଘନ କରୁଥିବା କାର୍ଯ୍ୟର ବିରୋଧ ପାଇଁ ଉପଯୁକ୍ତ ଅଦାଲତର ସହାୟତା ପାଇଁ ଅଧିକାର ସମସ୍ତଙ୍କର ଅଛି ।

୯. ଯଥେଚ୍ଛାଚାର ଭାବେ କାହାକୁ ଗିରଫ ନଜରବନ୍ଦୀ ବା ଦେଶରୁ ବହିଷ୍କାର କରାଯାଇପାରିବ ନାହିଁ ।

୧୦. ଅଧିକାର ଓ କର୍ତ୍ତବ୍ୟ ନିର୍ଣ୍ଣୟ କ୍ଷେତ୍ରରେ ବ୍ୟକ୍ତି ବିରୋଧରେ ଆରୋପିତ କୌଣସି ଫୌଜଦାରୀ ମାମଲାର ଶୁଣାଣୀ ନିରପେକ୍ଷ ଓ ମୁକ୍ତ ଅଦାଲତ ଦ୍ୱାରା ନ୍ୟାୟୋଚିତ ହେବାର ପୂର୍ଣ୍ଣ ଅଧିକାର ପ୍ରତ୍ୟେକ ବ୍ୟକ୍ତିଙ୍କର ସମାନ ଭାବରେ ଅଛି ।





୧୧. ମୁକ୍ତ ଅଦାଲତରେ ନିଜ ସପକ୍ଷରେ ସମସ୍ତ ସାକ୍ଷ୍ୟ ପ୍ରମାଣର ସୁବିଧା ପାଇ ଦୋଷୀ ସାବ୍ୟସ୍ତ ନ ହୋଇଥିବା ବ୍ୟକ୍ତିକୁ ନିରପରାଧ ବୋଲି ଧରାଯିବାର ଅଧିକାର ପାଇବେ ।

୧୨. କାହାର ବ୍ୟକ୍ତିଗତ, ପାରିବାରିକ ତଥା ଘରୋଇ ବ୍ୟାପାର ଓ ଚିଠିପତ୍ର ଯୋଗାଯୋଗରେ କୌଣସି ମନଇଚ୍ଛା ହସ୍ତକ୍ଷେପ କରାଯିବ ନାହିଁ । କାହାର ସମ୍ମାନ ଓ ଖ୍ୟାତି ଉପରେ କୌଣସି ଆନ୍ତର୍ଜାତିକ ଆକ୍ଷେପ କରାଯାଇପାରିବ ନାହିଁ । ଏପରି ହସ୍ତକ୍ଷେପ ବା ଆକ୍ଷେପ ବିରୁଦ୍ଧରେ ଆଇନଗତ ସୁରକ୍ଷା ପାଇଁ ସମସ୍ତଙ୍କର ଅଧିକାର ରହିବ ।

୧୩. ବ୍ୟକ୍ତି ନିଜ ଦେଶର ସୀମା ଭିତରେ ମୁକ୍ତ ଭାବେ ଚଳପ୍ରଚଳ ଓ ବସବାସ କରିବାର ଅଧିକାର ଅଛି ।

୧୪. ନିର୍ଯ୍ୟାତନାରୁ ରକ୍ଷା ପାଇବା ପାଇଁ ଯେକୌଣସି ବ୍ୟକ୍ତିର ଅନ୍ୟ ଦେଶରେ ଶରଣ ନେବାର ଓ ବାସ କରିବାର ଅଧିକାର ଅଛି ।

୧୫. ପ୍ରତ୍ୟେକ ବ୍ୟକ୍ତି ନାଗରିକତ୍ୱ ପାଇବାର ଅଧିକାର ଅଛି । କାହାକୁ ଅନ୍ୟାୟ ଭାବେ ନାଗରିକତ୍ୱରୁ ବଂଚିତ କରାଯାଇପାରିବ ନାହିଁ ବା ନାଗରିକତ୍ୱ ପରିବର୍ତ୍ତନ ଅଧିକାରକୁ ଉପେକ୍ଷା କରାଯାଇପାରିବ ନାହିଁ ।

୧୬. ଜାତିଧର୍ମ ଦେଶ ନିର୍ବିଶେଷରେ ପ୍ରତ୍ୟେକ ପ୍ରାପ୍ତ ବୟସ୍କା ନାରୀ ଓ ପୁରୁଷଙ୍କର ବିବାହ କରିବା ଓ ପରିବାର ଗଢ଼ିବାର ଅଧିକାର ରହିବ ।

୧୭. ପ୍ରତ୍ୟେକ ବ୍ୟକ୍ତିର ନିଜସ୍ୱ ଭାବେ ଓ ଅନ୍ୟମାନଙ୍କ ସହ ମିଶି ସଂପତ୍ତି ରଖିବାର ଅଧିକାର ଅଛି । ଅନ୍ୟାୟ ଭାବେ କାହାକୁ ନିଜ ସଂପତ୍ତିରୁ ବଂଚିତ କରାଯାଇପାରିବ ନାହିଁ ।

୧୮. ବିଚାର, ବିବେକ ଓ ଧର୍ମକ୍ଷେତ୍ରରେ ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନତାର ଅଧିକାର ଅଛି ।

୧୯. ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନମତ ଓ ଅଭିବ୍ୟକ୍ତିର ଅଧିକାର ଅଛି । ହସ୍ତକ୍ଷେପ ବିନା ନିଜସ୍ୱମତ ରଖିବାର ସ୍ୱାଧୀନତା ଓ ଭୌଗୋଳିକ ସୀମା ନମାନି ଯେକୌଣସି ମାଧ୍ୟମ ଜରିଆରେ ତଥ୍ୟ ଓ ତତ୍ତ୍ୱ ଅନ୍ୱେଷଣ, ଗ୍ରହଣ ଓ ପ୍ରଦାନ ଏହି ଅଧିକାରର ଅନ୍ତର୍ଭୁକ୍ତ ।

୨୦. ପ୍ରତ୍ୟେକଙ୍କର ଶାନ୍ତିପୂର୍ଣ୍ଣ ସଭା କରିବା ଓ ସମିତି ଗଠନ କରିବାର ସ୍ୱାଧୀନତା ଅଛି । କାହାରିକୁ କୌଣସି ସମିତିର ସଦସ୍ୟ ହେବା ପାଇଁ ବାଧ କରାଯାଇ ପାରିବ ନାହିଁ । ସମିତିର ସଦସ୍ୟ ହେବା ପାଇଁ ବାଧ କରାଯାଇପାରିବ ନାହିଁ ।

୨୧. ନିଜ ଦେଶର ଶାସନ ବ୍ୟବସ୍ଥାରେ ପ୍ରତ୍ୟକ୍ଷ ରୂପେ ବା ମୁକ୍ତ ଭାବେ ନିର୍ବାଚିତ ପ୍ରତିନିଧିଙ୍କ ଜରିଆରେ ଅଂଶଗ୍ରହଣ କରିବାର ଅଧିକାର ଅଛି । ପ୍ରତ୍ୟେକଙ୍କର ନିଜ ଦେଶରେ ଚାକିରି ପାଇବାର ସମାନ ଅଧିକାର ଅଛି ।

୨୨. ପ୍ରତ୍ୟେକ ବ୍ୟକ୍ତି ସାମାଜିକ ସୁରକ୍ଷା ପାଇବାର ଅଧିକାର ଅଛି ଓ ଆପଣା ବ୍ୟକ୍ତିତ୍ୱର ମୁକ୍ତ ବିକାଶ ଓ ଗୌରବ ପାଇଁ ଆବଶ୍ୟକ ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ପାଇବାର ଅଧିକାର ଅଛି ।

୨୩. କାମ କରିବାର ରୋଜଗାର ପନ୍ଥା ନିର୍ଦ୍ଧାରଣ କରିବାର ନିଯୁକ୍ତି ଓ କାମ ପାଇଁ ଉଚିତ ଓ ସୁବିଧାଜନକ ପରିସ୍ଥିତି ବେକାରୀ ବିରୁଦ୍ଧରେ ସୁରକ୍ଷା ପାଇବାର ଅଧିକାର ଅଛି । ସମାନ କାମ ପାଇଁ ସମାନ ମଜୁରୀ ବା ଦରମାର ଅଧିକାର ଅଛି । ନିଜର କାମ ଅନୁସାରେ ଅନୁରୂପ ପାରିଶ୍ରମିକ ପାଇବାର ଅଧିକାର ରହିଛି ।

୨୪. ପ୍ରତ୍ୟେକ ବ୍ୟକ୍ତି ବିଶ୍ରାମ ନେବାର ଓ ଅବକାଶ ପାଇବାର ଅଧିକାର ଅଛି । କାର୍ଯ୍ୟ ନିର୍ବାହୀ ସମୁଚିତ ସମୟସୀମା ଓ ନିର୍ଦ୍ଦିଷ୍ଟ ସମୟାନ୍ତରରେ ଦରମା ସହିତ ଛୁଟି ପାଇବା ଏହାର ଅନ୍ତର୍ଭୁକ୍ତ ।

୨୫. ନିଜର ଓ ପରିବାରର ସ୍ୱାସ୍ଥ୍ୟ ଓ ମଙ୍ଗଳ ପାଇଁ ଜୀବନଯାପନ କ୍ଷେତ୍ରରେ ଖାଦ୍ୟ, ପୋଷାକ, ବାସଗୃହ, ଚିକିତ୍ସା ଓ ଅନ୍ୟାନ୍ୟ ପ୍ରୟୋଜନୀୟ ସାମାଜିକ ସେବା ପାଇବା ସଂଗେସଂଗେ ବେକାରୀ, ଅସୁସ୍ଥତା, ଶାରୀରିକ ଅକ୍ଷମତା, ବୈଧବ୍ୟ, ବାର୍ଦ୍ଧକ୍ୟ ବା ଅନ୍ୟ କୌଣସି କାରଣରୁ ଜୀବିକାର୍ଜନ ପାଇଁ ଅକ୍ଷମ ପରିସ୍ଥିତିରେ ସୁରକ୍ଷା ପାଇବା ଏହି ଅଧିକାରର ଅନ୍ତର୍ଭୁକ୍ତ ।

୨୬. ପ୍ରତ୍ୟେକଙ୍କର ଶିକ୍ଷା ପାଇବାର ଅଧିକାର ଅଛି । ମୌଳିକ ଓ ପ୍ରାଥମିକ ସ୍ତରରେ ବାଧ୍ୟତାମୂଳକ ମାଗଣା ଶିକ୍ଷା ପ୍ରଦାନ କରିବା ଉଚିତ । ବୈଷୟିକ ଓ ବୃତ୍ତିଗତ ଶିକ୍ଷା ସାଧାରଣଙ୍କ ଭିତରେ ଉପଲବ୍ଧି କରାଯିବା ଓ ଉଚ୍ଚଶିକ୍ଷା ଯୋଗ୍ୟତା ଭିତ୍ତିରେ ସମାନଭାବେ ପ୍ରାପ୍ତ ହେବା ଉଚିତ । ନିଜ ପିଲାମାନେ କିପ୍ରକାର ଶିକ୍ଷା ପାଇବେ ତାହା ସ୍ଥିର କରିବାର ପ୍ରଥମ ଅଧିକାର ପିତାମାତାଙ୍କର ଅଛି ।

୨୭. ପ୍ରତ୍ୟେକ ନିଜର ସାଂସ୍କୃତିକ ଜୀବନଧାରାରେ ମୁକ୍ତ ଭାବେ ଅଂଶଗ୍ରହଣ କରିବା, କଳାକୁ ଉପଭୋଗ କରିବା ଓ ବୈଜ୍ଞାନିକ ପ୍ରଗତିରେ ଓ ଏହାର ଉପକାର ପାଇବାରେ ଅଂଶୀଦାର ହେବାର ଅଧିକାର ଅଛି ।

ନିଜସ୍ୱ କୌଣସି ବୈଜ୍ଞାନିକ, ସାହିତ୍ୟ ବା କଳାତ୍ମକ କୃତିର ମୌଳିକ ଓ ଭୌତିକ ସୁରକ୍ଷାର ଅଧିକାର ପ୍ରତ୍ୟେକଙ୍କର ଅଛି ।

୨୮. ସାମାଜିକ ଓ ଆନ୍ତର୍ଜାତିକ ବ୍ୟବସ୍ଥା ପାଇବାର ଅଧିକାର ଅଛି ।

୨୯. ପ୍ରତ୍ୟେକଙ୍କର ସମାଜ ପ୍ରତି କର୍ତ୍ତବ୍ୟ ଅଛି, କାରଣ ସମାଜରେ ତା'ର ବ୍ୟକ୍ତିତ୍ୱର ସ୍ୱାଧୀନ ଓ ପୂର୍ଣ୍ଣ ବିକାଶ ସମ୍ଭବ । ନିଜର ଅଧିକାର ଓ ସ୍ୱାଧୀନତାର ଉପଯୋଗବେଳେ ପ୍ରତ୍ୟେକ ବ୍ୟକ୍ତି ଆଇନ ଦ୍ୱାରା ସ୍ଥିରୀକୃତ ସୀମା ଭିତରେ ଆବଦ୍ଧ ରହିବେ । ଏହି ଉପଯୋଗ ବେଳେ ଅନ୍ୟର ଅଧିକାର ଓ ସ୍ୱାଧୀନତା ପ୍ରତି ଶ୍ରଦ୍ଧା ଓ ସମ୍ମାନ ରହିବ । ଅଧିକାର





ଓ ସ୍ୱାଧୀନତାର ଉପଯୋଗ କୌଣସି ପ୍ରକାରେ ଜାତିସଂଘର ନୀତି ଓ ଉଦ୍ଦେଶ୍ୟର ବିରୁଦ୍ଧାଚରଣ କରିବ ନାହିଁ ।

୩୦. ଏହି ଘୋଷଣାନାମାରେ ଲିପିବଦ୍ଧ କୌଣସି କଥାର ଏପରି କିଛି ଅର୍ଥ କରିବା ଉଚିତ ନୁହେଁ, ଯେଉଁଥିରୁ କୌଣସି ବ୍ୟକ୍ତି ଗୋଷ୍ଠୀ ବା ରାଷ୍ଟ୍ର ଏପରି କୌଣସି କାର୍ଯ୍ୟ କରିବାର ଅଧିକାର ପାଇବେ ଯାହାର ଉଦ୍ଦେଶ୍ୟ ଏଥିରେ ସନ୍ନିବେଶିତ ଅଧିକାର ଓ ସ୍ୱାଧୀନତା ମଧ୍ୟରୁ କୌଣସିଟିର ବିପରୀତ ବା ବିନାଶକାରୀ ବୋଲି ପ୍ରମାଣିତ ହେବ ।

ଆମ ଦେଶ ପରି ଗଣତନ୍ତ୍ର ରାଷ୍ଟ୍ରରେ ମାନବ ଅଧିକାର ସଂପର୍କିତ ବିଭିନ୍ନ ବ୍ୟବସ୍ଥା ସଂପର୍କରେ ସମସ୍ତଙ୍କୁ ବୁଝିବାକୁ ହେବ ଏବଂ ତଦନୁସାରେ ସଚେତନ ହେଲେ ଗଣତାନ୍ତ୍ରିକ ବ୍ୟବସ୍ଥାର ଫଳପ୍ରଦ ପ୍ରଭାବ ଆମକୁ ବିକଶିତ ରାଷ୍ଟ୍ର ଗଠନରେ ସହାୟକ ହେବ । କେବଳ ମାନବିକ ଅଧିକାରକୁ ସାବ୍ୟସ୍ତ କରିବା ଆଳରେ ନିଜର ମୌଳିକ କର୍ତ୍ତବ୍ୟ ଓ ଦାୟିତ୍ୱକୁ ଭୁଲିଗଲେ ପୁନର୍ବାର ଆମେ ଅତୀତ ଅବସ୍ଥାକୁ ଫେରିଯିବା । ସେଥିପାଇଁ କୁହାଯାଇଛି -

ଦୁଃଖି ଯଦି ସୁଖୀ ହୁଏ
ଚେତି ଘର କରେ
ସୁଖୀ ଯଦି ଦୁଃଖୀ ହୁଏ
ଝୁରି ଝୁରି ମରେ ।

ଅଧ୍ୟକ୍ଷ
ଓଡ଼ିଶା ଶିକ୍ଷାସେବା, କ୍ୟାପିଟାଲ ହାଇସ୍କୁଲ
ଭୁବନେଶ୍ୱର

---

# ସାଧାରଣତନ୍ତ୍ର ଦିବସ

ଓମ୍ ପ୍ରକାଶ ମହାପାତ୍ର

ଗଣତନ୍ତ୍ର ଭାରତ ଦେଶ ଅସାଧାରଣ ତା'ର ରୂପ ଗୁଣ ବେଶ
ଜାନୁଆରୀ ଛବିଶି ସାଧାରଣତନ୍ତ୍ର ଦିବସ ଆସେ ପ୍ରତିବର୍ଷ ।
ଜାତି ଜାତି ଭାଷା ସଂସ୍କୃତି ଧର୍ମ ମେଳେ ଖେଳେ ଆନନ୍ଦ ଉଲ୍ଲାସ
ଆସୁଛି ଏସନେ ହୋଇ ଉଛନ୍ନ, ଛାଡ଼ିନି ସୁନାମି ଯନ୍ତ୍ରଣା ଧାସ ।
ସତ୍ୟ ଅହିଂସା ଗାନ୍ଧୀ ମନ୍ତ୍ରର ହେଉଛି ମନ୍ଥର ଭିତର ବାହାର
ସ୍ୱାର୍ଥପରତା ହିଂସା ଦୁର୍ନୀତି କରୁଛି ପ୍ରବେଶ ଦାଣ୍ଡ ଦୁଆର ।
ଝଣ୍ଡା ତ୍ରିରଙ୍ଗା ଶହୀଦ ସ୍ତମ୍ଭ ମୂକସାକ୍ଷୀ ହେବକି ବେରଙ୍ଗ
ଅନେକରେ ଐକ୍ୟ ଏ ଦେଶ ଚାକଚକ୍ୟ ଭାଙ୍ଗିବକି ତାର ବାକ୍ୟ ।
ପରିଚୟ ବିଶ୍ୱ ଦରବାର ବିବେକାନନ୍ଦର ମୋତି ମେହେନ୍ତର ଏ ଦେଶର
ହଜାଇ ପଦକ ଟାଗୋରର ଏ ଜାତି ଖୋଜୁଛି ହଜିଲା ସଂପତ୍ତି ବାରବାର ।
ଜାତି, ଧର୍ମ, ରାଜନୀତି ଭାଙ୍ଗୁଛି ନିଜିତି ନିରପେକ୍ଷ ପ୍ରୀତି ନିଷ୍ଠା ଏକଲବ୍ୟର
ରହିଛି ରହିବ ଅମ୍ଳାନ ଅକ୍ଷୁଣ୍ଣ ସତ୍ୟ ଅହିଂସା ଶାନ୍ତି ମୈତ୍ରୀ ଆମର ।
ଜାତୀୟ ସଂପତ୍ତି ସଂଘଟି ପୀରତି ଏ ଗଣତନ୍ତ୍ରର ନୀତି ଯଜ୍ଞ ଆହୂତି
ଶିଶୁ ଭବିଷ୍ୟତ ଯୁବ ପିଢ଼ି କଢ଼ି ଆମ ଭାଷା ଆଶା ଯଶ କିରତି ।
ଏ ଦେଶ ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ମନ୍ଦିର ମସ୍‌ଜିଦ୍ ମେଳା
ଉଜୁଡ଼ା ସଜଡ଼ା ଗୋଦରା କୋଡ଼ା ଖାରିଆ ଖଡ଼ା ସନ୍ତୁଳା ।
ସୁନ୍ଦର ତା'ର ଆକୃତି ସଂସ୍କୃତି କାରୁକାର୍ଯ୍ୟ ଭରା ଆଶ୍ଚର୍ଯ୍ୟ କଳା
ବ୍ୟକ୍ତି ସ୍ୱାଧୀନତା ଶାସନେ କ୍ଷମତା ରାଷ୍ଟ୍ରପତି ତାର ଜନାଦେଶ ବାର୍ତ୍ତା ଶିରପା ଧଳା ।
ଧନୀ ଦରିଦ୍ର ମେଳ ଛୁଆଁ ଅଛୁଆଁର ଖେଳ ଏ ଦେଶ ସାମ୍ୟବାଦର ଅମେଳ
ଆକୁମାରି ହିମାଳୟ ଶାନ୍ତ ସଦ୍‌ଭାବ ଆଳୟ ଅସୁସ୍ଥ ବିବ୍ରତ ବେଙ୍ଗଲା ଖଳା ।
ବୋଡ଼ ନାଗା ନକସଲ ଧରୁଛି ଭାରତେ ଯୁଦ୍ଧ ମଶାଲ
ଏଡ୍‌ସ ସୁନାମି ବନ୍ୟା ବାତ୍ୟା ଦୁର୍ବିପାକ କରାଳ ମୃତ୍ୟୁ ମାଳ ମାଳ ।
ଜନସଂଖ୍ୟା ବୃଦ୍ଧି ବେକାରି ଆବୁରି ବିଷାଦେ ଘାରୁଛି ମନ
ଜଗତିକରଣ ବିଦେଶୀ ପୁଞ୍ଜି ଦେବକି ଏ ଦେଶେ ଧନଧାନ୍ୟ ଗୁଞ୍ଜିଗାଞ୍ଜି ?
ସ୍ୱଦେଶୀ ଆଦର ଗାନ୍ଧୀ ଅରଟ ଟୋପି ଚାଦର ଗାଁ ବାହୁଡ଼ା ଡାକ ତାର
ହେବ କି ସାକାର ମନୁ ଅପସରି ସହର ସୁଖ ସମ୍ଭାର ଆଗାମୀ ପିଢ଼ିର ।
ଶିଶୁ ଭବିଷ୍ୟତ ଯୁବ ଯୌବନ ଅକ୍ଷତ ବଂଚି ରହିବାର ପଣାପାଣି ନବାତ
ହସି ହସାଇବ ଆଗାମୀ ଦିନର ଲାଲ୍ ସୁରୁଜ ପ୍ରଭାତ ଆମ ଶ୍ରେଷ୍ଠ ଭାରତ ।
ତାଜ ବାରଣ୍ଡା ହସିବ ବୀରାଙ୍ଗନା ଧନଞ୍ଜୟ ଗୋଧ୍ରା ପୁଣି ନ ଆସିବ
ପୂଜ୍ୟ ରାଜେନ୍ଦ୍ର କାଲାମ ଗାନ୍ଧୀ ନେହେରୁ ମନମୋହନଙ୍କୁ ଆମ ସଲାମ
ସାଧାରଣତନ୍ତ୍ର ପଞ୍ଚାବନ ଆସୁଛ ଆସ ନକରି ନିରାଶ ବଦନାମ ।
ଭାରତ ମାତାର ସୁନ୍ଦର କମନୀୟ ବେଶ
ବ୍ୟାଘ୍ର ମୟୂର ପଦ୍ମ ଫୁଲର ପ୍ରତୀକ ବାସ ।
ସତ୍ୟ ଅହିଂସା ସ୍ୱଦେଶୀ ଆଦରେ ଫାଟି ପଡୁ ଆମ ହସ
ସାଧାରଣତନ୍ତ୍ର ଦୁଇ ହଜାର ପାଞ୍ଚ ହେଉ ବର୍ଷ ଉତ୍କର୍ଷ ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର





# ସାଧାରଣତନ୍ତ୍ର ଦିବସ ପାଳନର ତାତ୍ପର୍ଯ୍ୟ

ଅଧ୍ୟାପକ ଡଃ ଶରତ ଚନ୍ଦ୍ର ପରିଡ଼ା

**ଜା**ନୁଆରୀ ମାସ ୨୬ ତାରିଖ ଆମ ଜାତି ପାଇଁ ଏକ ଗର୍ବ ଓ ଗୌରବର ଦିନ । ସାରା ଭାରତବର୍ଷରେ ଦିଲ୍ଲୀଠାରୁ ପଲ୍ଲୀ ପର୍ଯ୍ୟନ୍ତ ଏହି ଦିନଟି ଏକ ଜାତୀୟ ପର୍ବ ରୂପେ ବଡ଼ ଧୁମ୍‌ଧାମ୍‌ରେ ପାଳିତ ହେଉଛି । ସବୁଠି ଫୁଟି ଉଠୁଛି ଦେଶପ୍ରେମର ଭାବ । ୧୯୫୦ ମସିହା ଜାନୁଆରୀ ମାସ ୨୬ ତାରିଖରେ ଆମ ଦେଶ ଭାରତ ଏକ ସାଧାରଣତନ୍ତ୍ର ଦେଶ ରୂପେ ଘୋଷିତ ହୋଇଥିଲା । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଆମ ଦେଶ ତ ସ୍ୱାଧୀନ ହୋଇଥିଲା, ପୁଣି ଜାନୁଆରୀ ୨୬ କ'ଣ ?

ଇଂରେଜମାନେ ପ୍ରାୟ ଦୀର୍ଘ ୨୦୦ ବର୍ଷ ଧରି ଆମ ଦେଶକୁ ଶାସନ କରୁଥିଲେ । ସେତେବେଳେ ଆମର ନିଜର ବୋଲି କିଛି ନଥିଲା । ଯୁଗଟା ଥିଲା ପୂରା ଅନ୍ଧାରୀ । ଦି ଓଳି ଲୋକେ ମୁଠେ ଖାଇବାକୁ ପାଉନଥିଲେ । ଲୋକମାନେ ବେଠି ଖଟୁଥିଲେ । ଶୋଷଣ ଓ ଅତ୍ୟାଚାରର କୋରଡ଼ା ମାଡ଼ରେ ଜାତିର ମେରୁଦଣ୍ଡ ଦୋହଲି ଯାଉଥିଲା । ଧୀରେ ଧୀରେ ଜନ ଅସନ୍ତୋଷ କୁହୁଳିବାକୁ ଲାଗିଲା । ଭାରତର ନେତୃସ୍ଥାନୀୟ ଲୋକେ ସଂଗଠିତ ହେଲେ । ୧୮୫୭ ମସିହାରେ ଆରମ୍ଭ ହେଲା ପ୍ରଥମ ସ୍ୱାଧୀନତା ସଂଗ୍ରାମ 'ସିପାହୀ ବିଦ୍ରୋହ' । ତା'ପରେ ମୁକ୍ତି ପାଇଁ ସଂଗ୍ରାମ ଜାରି ରହିଲା । ମହାତ୍ମା ଗାନ୍ଧୀଙ୍କ ପରି ପ୍ରମୁଖ ଜାତୀୟ ନେତାଙ୍କ ଅକ୍ଳାନ୍ତ ସାଧନା ଓ ଆତ୍ମ ବଳିଦାନ ବଳରେ ଆମ ପରାଧୀନ ଭାରତ ସ୍ୱାଧୀନ ହୋଇଥିଲା । ଆଜି ସେହି ପ୍ରାତଃ ସ୍ମରଣୀୟ ଅମର ଶହୀଦମାନଙ୍କୁ ଆମେ ଦେଶବାସୀ ଆମର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ଓ କୃତଜ୍ଞତା ନିବେଦନ କରୁଛୁ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ମିଳିଥିଲେ ମଧ୍ୟ ଦେଶ ସ୍ୱାଧୀନ ହେଲେ କିପରି ଲୋକମାନଙ୍କୁ ଚଳାଇବାକୁ ହେବ ସେଥିପାଇଁ କିଛି ଆଇନ କାନୁନ୍ ଗଢ଼ା ହୋଇନଥିଲା । ତେଣୁ ୧୯୪୬ ମସିହା ଡିସେମ୍ବର ୯ ତାରିଖରୁ ସମ୍ବିଧାନ ପ୍ରଣୟନ କାର୍ଯ୍ୟ ଆରମ୍ଭ ହୋଇ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମାପ୍ତ ହୋଇଥିଲା ଏବଂ ଗଭୀର ଅଧ୍ୟୟନ ଓ ବହୁ ବିଚାର ବିମର୍ଷ ପରେ ତାହା ଗୃହୀତ ହୋଇଥିଲା । ଏଥିରେ ବଛା ବଛା ରାଜନୀତିଜ୍ଞ, ସମ୍ବିଧାନ ବିଶେଷଜ୍ଞ, ଆଇନବିତ୍ ଓ ଶିକ୍ଷାବିତ୍‌ମାନେ ସଭ୍ୟ ଥିଲେ । ଏଥିରେ ଅଧ୍ୟକ୍ଷତା କରିଥିଲେ ସ୍ୱାଧୀନ ଭାରତର ପ୍ରଥମ ଆଇନ ମନ୍ତ୍ରୀ ଡଃ ବାବାସାହେବ ଭୀମରାଓ ଆମ୍ବେଦକର । ତାଙ୍କର ବିଶେଷ ଅବଦାନ ଯୋଗୁଁ ତାଙ୍କୁ ଭାରତୀୟ ସମ୍ବିଧାନର ପିତା ବୋଲି କୁହାଯାଏ । ଆମ ସମ୍ବିଧାନର ନିର୍ମାତାମାନେ ଅନ୍ୟ ଦେଶର ସମ୍ବିଧାନ ଅଧ୍ୟୟନ କରି ଆମ ଦେଶ ପାଇଁ ଯାହା ଉପଯୋଗୀ ତାହା ଆମ ସମ୍ବିଧାନରେ ଖଞ୍ଜି ଦେଇଥିଲେ । ଏହି ସମ୍ବିଧାନରେ ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରା, ଦେଶବାସୀଙ୍କ ଆଶା ଆକାଂକ୍ଷା ଓ ଭାରତର ଯେଉଁ ମହାନ୍ ପରମ୍ପରା ଓ ଦର୍ଶନ ତାହା ଛତ୍ରେ ଛତ୍ରେ ପ୍ରତିଫଳିତ ହୋଇଛି । ଆମ ବିଶାଳ ଦେଶର ନାନା ଅଞ୍ଚଳ, ଭାଷା, ଜାତି, ଧର୍ମ - ସବୁକୁ ଆଖି ଆଗରେ ରଖି ଆଇନ ତିଆରି କରି ସେଗୁଡ଼ିକୁ ଲିପିବଦ୍ଧ କରୁ କରୁ ଏହା ପୃଥିବୀର ସର୍ବବୃହତ ଲିଖିତ ସମ୍ବିଧାନରେ ପରିଣତ ହୋଇଗଲା ।

ଯେଉଁଦିନ ସମ୍ବିଧାନ ଗୃହୀତ ହେଲା, ସେହିଦିନଠାରୁ ଲାଗୁ ନ ହୋଇ ଜାନୁଆରୀ ୨୬ ପର୍ଯ୍ୟନ୍ତ କାହିଁକି ଘୁଞ୍ଚିଗଲା ବୋଲି ମନରେ କୌତୁହଳ ସୃଷ୍ଟି ହେବା ସ୍ୱାଭାବିକ । ଆମ ଜାତି ପାଇଁ ଜାନୁଆରୀ ୨୬ ଏକ ଐତିହାସିକ ଦିନ । ୧୯୨୯ ଡିସେମ୍ବର ୩୧ ତାରିଖର କଥା । ଇତିହାସ ପ୍ରସିଦ୍ଧ ଲାହୋରଠାରେ ଅନୁଷ୍ଠିତ ନିଖିଳ ଭାରତୀୟ କଂଗ୍ରେସ କମିଟିରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ, ଆସନ୍ତା ଜାନୁଆରୀ ୨୬କୁ 'ପୂର୍ଣ୍ଣ ସ୍ୱରାଜ' ଦିବସ ରୂପେ ପାଳନ କରାଯିବ । ଏହାକୁ ବ୍ରିଟିଶ ସରକାର ସ୍ୱୀକୃତି ନ ଦେଲେ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବ । ତାହା ହିଁ ହେଲା । ଫଳରେ ୧୯୩୦ ମସିହା ଜାନୁଆରୀ ୨୬ରେ ପାଳିତ ହୋଇଥିଲା ପରାଧୀନ ଭାରତବର୍ଷର ପ୍ରଥମ ସ୍ୱାଧୀନତା ଦିବସ ।

ଠିକ୍ ସେହିପରି ୧୯୩୧ ମସିହା ଜାନୁଆରୀ ୨୬ରେ କରାଚିଠାରେ ଅନୁଷ୍ଠିତ ହୋଇଥିଲା ନିଖିଳ ଭାରତୀୟ କଂଗ୍ରେସର ଅନ୍ୟ ଏକ ଅଧିବେଶନ । ଆମେ କୋଟି କୋଟି ଭାରତୀୟ ଯେଉଁ ତ୍ରିରଙ୍ଗା ତଳେ ଛିଡ଼ା ହୋଇ ଦେଶ ଭକ୍ତିର ସଂଗୀତ ଗାନ କରୁଛୁ, ତା'ର ସ୍ମୃତି କରାଚି ଅଧିବେଶନ ସହିତ ଜଡ଼ିତ । ଏଠାରେ ଘୋଷଣା କରାଯାଇଥିଲା ଯେ ଉପରେ ରହିବ କମଳା ରଙ୍ଗ ଯାହା ସାହସ ଓ ତ୍ୟାଗର ପ୍ରତୀକ, ମଝିରେ ରହିବ ଧଳାରଙ୍ଗ ଯାହା ସତ୍ୟ, ଶାନ୍ତି ଓ





ଅହିଂସାର ସୂଚକ, ତଳେ ରହିବ ସବୁଜ ରଙ୍ଗ ଯାହା ବିଶ୍ୱାସ, ବୀରତ୍ୱ ଓ ପ୍ରଗତିର ବାର୍ତ୍ତାବହ । ଧଳାରଙ୍ଗ ଉପରେ ଥିଲା ଏକ ଛୋଟ ଚରଖା ଚିହ୍ନ । ଜାତୀୟ ପତାକାର ଓସାର ଦୁଇ ଗୁଣ ହେଲେ ଲମ୍ବ ତିନି ଗୁଣ ହେବ ବୋଲି ମଧ୍ୟ ସ୍ଥିର କରାଯାଇଥିଲା । ପରବର୍ତ୍ତୀ ସମୟରେ ତ୍ରିରଙ୍ଗା ପତାକାରେ ସାମାନ୍ୟ ପରିବର୍ତ୍ତନ କରି ଚରଖା ସ୍ଥାନରେ ସାରନାଥର ଧର୍ମଚକ୍ର ସ୍ଥାନ ପାଇଥିଲା । ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଦେଶରେ ପ୍ରତି ଜାନୁଆରୀ ୨୬ରେ ସ୍ୱାଧୀନତା ଦିବସ ପାଳନ କଲାବେଳେ ଏହି ତ୍ରିରଙ୍ଗା ଉଡ଼ା ଯାଉଥିଲା । ପ୍ରଭାତ ଫେରି ସାଙ୍ଗରେ ଜାତୀୟ ସଂଗୀତ ମଧ୍ୟ ଗାନ କରାଯାଉଥିଲା ।

ଇତିହାସରୁ ଜଣାଯାଏ ଯେ ବ୍ରିଟିଶ ସରକାର ୧୯୪୭ ଜାନୁଆରୀ ୨୬ରେ ଭାରତକୁ ସ୍ୱାଧୀନତା ଦେଉ ବୋଲି ତତ୍‌କାଳୀନ ଭାରତୀୟ ନେତାମାନେ ଚାହୁଁଥିଲେ । ମାତ୍ର କେତେକ ବିଶେଷ କାରଣ ହେତୁ ତାହା ସମ୍ଭବ ହୋଇ ପାରିଲା ନାହିଁ । ଏହି ସ୍ୱାଧୀନତାପ୍ରାପ୍ତି ଅଗଷ୍ଟ ୧୫ ପର୍ଯ୍ୟନ୍ତ ଗଡ଼ି ଯାଇଥିଲା । କିନ୍ତୁ ଏହି ଦିନଟିକୁ ଭାରତ ଇତିହାସରେ ସ୍ମରଣୀୟ ରଖିବା ପାଇଁ ୧୯୫୦ ମସିହା ଜାନୁଆରୀ ୨୬ରେ ଦେଶର ନୂଆ ସମ୍ବିଧାନକୁ କାର୍ଯ୍ୟକାରୀ କରିବାକୁ ନିଷ୍ପତ୍ତି ଗୃହୀତ ହୋଇଥିଲା ।

ଏହି ସମ୍ବିଧାନ କ'ଣ ବୋଲି ମନରେ ପ୍ରଶ୍ନ ଉଠିପାରେ । ସମ୍ବିଧାନ ଆମ ଦେଶର ଆଇନ ଖସଡ଼ା । ଏହା ରାଷ୍ଟ୍ରର ସ୍ୱରୂପ । ସରକାରର ଗଠନ ବିଷୟରେ ଜନସାଧାରଣ ଓ ଜନପ୍ରତିନିଧିଙ୍କୁ ବାଟ ଦେଖାଇ ଦିଏ । ଗୋଟିଏ ଲିଖିତ ସମ୍ବିଧାନର ଆରମ୍ଭରେ ପ୍ରାୟତଃ ଏକ ପ୍ରସ୍ତାବନା ଥାଏ । ଏହା ସମ୍ବିଧାନର ଦର୍ପଣ ସଦୃଶ । ସମ୍ବିଧାନର ଗୁଣ ଓ ଚରିତ୍ରର ଏକ ସରଳ ଓ ସଂକ୍ଷିପ୍ତ ପରିଚୟ ଏଥିରେ ପ୍ରଦାନ କରାଯାଇଛି । ସେଥିରେ କୁହାଯାଇଛି ଯେ, 'ଆମେ ଭାରତର ଜନସାଧାରଣ । ଭାରତକୁ ଗୋଟିଏ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ କରିବା ଲାଗି ଶୁଦ୍ଧପୂତ ମନରେ ଦୃଢ଼ ସଂକଳ୍ପ ହୋଇ ଆଜି ଜାନୁଆରୀ ୨୬ ତାରିଖ ଦିନ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ଆମ ଶାସନ ବିଧାୟକ ସଭାରେ ଗୃହୀତ ଏହି ଶାସନ ବିଧାନକୁ ଗ୍ରହଣ କରୁଛୁ ଏବଂ ଶପଥ ନେଉଛୁ ଯେ ଭାରତର ପ୍ରତ୍ୟେକ ନାଗରିକ ସାମାଜିକ, ଆର୍ଥନୀତିକ ଏବଂ ରାଜନୈତିକ କ୍ଷେତ୍ରରେ ସୁବିଚାର ଲାଭ କରିବେ, ପ୍ରତ୍ୟେକର ଚିନ୍ତା, ଭାବ, ଅଭିମତ, ଧର୍ମ ବିଶ୍ୱାସ ଓ ଈଶ୍ୱର ଉପାସନାରେ ସ୍ୱାଧୀନତା ରହିବ, ପ୍ରତ୍ୟେକ ନାଗରିକ ସମାନ ସୁବିଧା, ସୁଯୋଗ ଓ ସମାନ ଅଧିକାର ପାଇବେ ।

ବ୍ୟକ୍ତିଗତ ମହତ୍ୱ ଓ ଜାତିଗତ ଐକ୍ୟ ଉପରେ ପ୍ରତିଷ୍ଠିତ ଭ୍ରାତୃଭାବର ବିକାଶ ଉଦ୍ଦେଶ୍ୟରେ ଏହାକୁ ଆଇନରେ ପରିଣତ କରି ନିଜ ପ୍ରତି ପ୍ରୟୋଗ କରିବୁ । ଏହା ଆମ ସମ୍ବିଧାନର ମୂଳ ଓ ଅବିକୃତ ପ୍ରସ୍ତାବନା । ଆମ ଦେଶର ଗଠନ ଓ ଲକ୍ଷ୍ୟ ଏବଂ ଆମ୍ଭମାନଙ୍କ କର୍ତ୍ତବ୍ୟ ଅଧିକାର ବିଷୟରେ ଜାଣିବା ଅତି ଜରୁରୀ ଅଟେ । ଆମ ଦେଶ କୌଣସି ବାହାର ଦେଶର କର୍ତ୍ତୃତ୍ୱ ସ୍ୱୀକାର କରେ ନାହିଁ । କିନ୍ତୁ ନିଜ ଦେଶରେ ଥିବା ପ୍ରତ୍ୟେକ ବ୍ୟକ୍ତି ଓ ଅନୁଷ୍ଠାନକୁ ନିୟନ୍ତ୍ରଣ କରେ । ଭାରତ ନିଜେ ନିଜର ଭାଗ୍ୟବିଧାତା । ଏହା ଏକ ସାର୍ବଭୌମ ରାଷ୍ଟ୍ର ।

ଆମର ସ୍ୱାଧୀନତା ସଂଗ୍ରାମୀ ଓ ସମ୍ବିଧାନ ନିର୍ମାତାମାନେ ଚାହୁଁଥିଲେ ଆମ ଦେଶର ପ୍ରତ୍ୟେକ ନାଗରିକ ସ୍ୱାଧୀନତାର ଆନନ୍ଦ ଅନୁଭବ କରନ୍ତୁ । ଦେଶର ପୁନର୍ଗଠନ ପ୍ରକ୍ରିୟାରେ ଭାଗ ନିଅନ୍ତୁ । ସେଥିପାଇଁ ଭାରତକୁ ଏକ ଗଣତନ୍ତ୍ର ରାଷ୍ଟ୍ରରେ ପରିଣତ କରାଗଲା । ଦେଶର ସର୍ବୋଚ୍ଚ କ୍ଷମତା କୌଣସି ଜଣେ ବ୍ୟକ୍ତିଠାରେ ଠୁଳ ନହୋଇ ଜନସାଧାରଣଙ୍କଠାରେ ନ୍ୟସ୍ତ ହେଲା । ଆମ ଦେଶରେ ସାବାଳକ ଭୋଟ ପ୍ରଥା ପ୍ରଚଳିତ । ୧୮ ବର୍ଷରୁ ଊର୍ଦ୍ଧ୍ୱ ଭାରତର ପ୍ରତ୍ୟେକ ନାଗରିକକୁ ଭୋଟ ଦେବାର ଅଧିକାର ଦିଆଯାଇଛି । ସେମାନେ ଭୋଟ ଦେଇ ଲୋକପ୍ରତିନିଧି ନିର୍ବାଚିତ କରନ୍ତି ଓ ସେମାନଙ୍କ ଦ୍ୱାରା ସରକାର ଗଢ଼ାଇ ଦେଶର ଶାସନ ଚଳାନ୍ତି । ନିର୍ବାଚିତ ପ୍ରତିନିଧିମାନେ ସେମାନଙ୍କ ଦୋଷତ୍ରୁଟି ପାଇଁ ଜନସାଧାରଣଙ୍କ ନିକଟରେ ଦାୟୀ ରହନ୍ତି ।

ଭାରତରେ ରାଜରାଜୁଡ଼ା ଶାସନ ନାହିଁ । ଏହା ଏକ ସାଧାରଣତନ୍ତ୍ର ଦେଶ । ରାଷ୍ଟ୍ରପତି ଦେଶର ମୁଖ୍ୟ ଅଟନ୍ତି । ସେ ଉତ୍ତରାଧିକାରୀ ସୂତ୍ରରେ ରାଷ୍ଟ୍ରପତି ପଦବୀ ମଣ୍ଡନ ନକରି ଲୋକମାନଙ୍କ ଦ୍ୱାରା ପରୋକ୍ଷ ଭାବରେ ପାଞ୍ଚବର୍ଷ ପାଇଁ ନିର୍ବାଚିତ ହୋଇଥା'ନ୍ତି ।

ଆମ ସମ୍ବିଧାନରେ ରାଜନୈତିକ, ସାମାଜିକ, ଅର୍ଥନୈତିକ ବା ନ୍ୟାୟ ଦେବା କ୍ଷେତ୍ରରେ ହେଉ ସମସ୍ତଙ୍କୁ ସମାନ ସୁବିଧା ସୁଯୋଗ ଦିଆଯାଇଛି । ସମାନତା ରୂପକ ମୌଳିକ ଅଧିକାର ଦେଲାବେଳେ କୌଣସି ବ୍ୟକ୍ତିର ଜାତି, ଧର୍ମ, ବର୍ଣ୍ଣ ଓ ଭାଷାକୁ ବିଚାରକୁ ନିଆଯାଏ ନାହିଁ । ବରଂ ଯେଉଁମାନେ ସମାଜର ଦୁର୍ବଳ ଶ୍ରେଣୀ, ସଂଖ୍ୟାଲଘୁ ସଂପ୍ରଦାୟ, ଅନୁସୂଚିତ ଜାତି ଓ ଉପଜାତି ସେମାନଙ୍କର ସମାଜରେ କିପରି ବିକାଶ ସାଧନ ହୋଇପାରିବ, ସେଥିପ୍ରତି ଉପଯୁକ୍ତ ଧ୍ୟାନ ଦିଆଯାଇଛି । କିନ୍ତୁ ଏହି ସୁବିଧା ସୁଯୋଗର କେତେ ଦୂର ସଦ୍‌ବ୍ୟବହାର ହେଉଛି, ତାହା ସମୀକ୍ଷା କରିବା ପ୍ରତ୍ୟେକ ସଚେତନ ନାଗରିକର କର୍ତ୍ତବ୍ୟ ହୋଇ ପଡ଼ିଛି ।

ଆମ ସମ୍ବିଧାନ ଗତିଶୀଳ ହୋଇଥିବାରୁ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ଅନିର୍ଦ୍ଦିଷ୍ଟ ଭବିଷ୍ୟତର ମୁକାବିଲା କରିବା ପାଇଁ ସାମ୍ବିଧାନିକ ନିୟମ ରହିବା ଦରକାର । ତେଣୁ ସମ୍ବିଧାନ ସଂଶୋଧନ ଆବଶ୍ୟକ ହୋଇଥାଏ । ଅବଶ୍ୟ ବାରମ୍ବାର ସମ୍ବିଧାନ ସଂଶୋଧନକୁ ଅନେକ ନାଗରିକ ପସନ୍ଦ କରୁନାହାନ୍ତି । ଏ ପର୍ଯ୍ୟନ୍ତ ଆମ ସମ୍ବିଧାନ ଅନେକଥର ସଂଶୋଧିତ ହୋଇ ସାରିଲାଣି । ୧୯୭୬ ମସିହାରେ ହୋଇଥିବା ୪୨ତମ ସମ୍ବିଧାନ ସଂଶୋଧନ ବଳରେ ଆମ ସମ୍ବିଧାନର ମୂଳ ପ୍ରସ୍ତାବନାରେ ସମାଜବାଦୀ, ଧର୍ମନିରପେକ୍ଷ ଓ ସଂହତି ଶବ୍ଦଗୁଡ଼ିକ ଯୋଡ଼ି ଦିଆଯାଇଛି ।

ଦେଶରେ ସମାଜବାଦ ପ୍ରତିଷ୍ଠା ଆମ ସମ୍ବିଧାନର ଲକ୍ଷ୍ୟ । ଯେଉଁ ଦେଶରେ ଶୋଷଣ ନଥାଏ, ପ୍ରତ୍ୟେକ ବ୍ୟକ୍ତିର ସର୍ବନିମ୍ନ ଚାହିଦା





ପୂରଣ କରାଯାଇ ସମସ୍ତଙ୍କୁ ସମାନ ଭାବରେ ନ୍ୟାୟ ପ୍ରଦାନ କରାଯାଇଥାଏ, ତାକୁ ସମାଜବାଦୀ ରାଷ୍ଟ୍ର କୁହାଯାଏ । ଧନୀ, ଦରିଦ୍ର ମଧ୍ୟରେ ତାରତମ୍ୟ ଦୂର କରିବା ପାଇଁ କେତେକ ରାଷ୍ଟ୍ରୀୟ ନିର୍ଦ୍ଦେଶମୂଳକ ନୀତି ଆମ ସମ୍ବିଧାନରେ ଯୋଗ କରାଯାଇଛି । ତେଣୁ ଆମ ସରକାର କ୍ଷୁଧା ନିବାରଣ ଓ ଉତ୍ପାଦନ ବୃଦ୍ଧି ନିମନ୍ତେ ପଞ୍ଚବାର୍ଷିକ ଯୋଜନାଭଳି କାର୍ଯ୍ୟକ୍ରମମାନ ହାତକୁ ନେଇଛନ୍ତି । ଏହାଦ୍ୱାରା ଶିଳ୍ପ, କୃଷି ଭଳି କ୍ଷେତ୍ରରେ ଯଥେଷ୍ଟ ଉନ୍ନତି ଘଟିଛି ।

ଆମେ ଧର୍ମନିରପେକ୍ଷତାରେ ବିଶ୍ୱାସ କରୁ । ଦେଶର ସ୍ୱାଧୀନତା ପାଇଁ ଯେଉଁ ମୁକ୍ତି ସଂଗ୍ରାମ ଚାଲିଥିଲା, ସେଥିରେ ଧର୍ମଭାବନା ନଥିଲା । ମାତ୍ର ପରବର୍ତ୍ତୀ କାଳରେ ଧର୍ମନିରପେକ୍ଷତାକୁ ଅତୁଟ ରଖିବା ସମ୍ଭବ ନ ହେବାରୁ ସାମ୍ବିଧାନିକ ଆଇନ ତିଆରି କରାଗଲା । ସେହି ଅନୁସାରେ ଭାରତ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ରାଷ୍ଟ୍ର ଆଗରେ ସବୁଧର୍ମ ସମାନ । ସବୁ ଧର୍ମର ଲୋକେ ସମାନ ସୁବିଧା ଓ ସୁଯୋଗ ଉପଭୋଗ କରନ୍ତି । ବ୍ୟକ୍ତିର ଧର୍ମ ବିଶ୍ୱାସ ଓ ଈଶ୍ୱର ଉପାସନା ସଂପୂର୍ଣ୍ଣ ବ୍ୟକ୍ତିଗତ । ଏଥିରେ ରାଷ୍ଟ୍ର ହସ୍ତକ୍ଷେପ କରେ ନାହିଁ । ରାଷ୍ଟ୍ରଧର୍ମ ବୋଲି ରାଷ୍ଟ୍ର କୌଣସି ଧର୍ମକୁ ଗ୍ରହଣ କରି ନାହିଁ । ଗଣତନ୍ତ୍ରର ସୁରକ୍ଷା ପାଇଁ ଧର୍ମନିରପେକ୍ଷତା ଅପରିହାର୍ଯ୍ୟ ଅଟେ ।

ଗଣତନ୍ତ୍ର ବ୍ୟକ୍ତିର ଉନ୍ନତି ଚାହେଁ । ତେଣୁ ପ୍ରତ୍ୟେକ ନାଗରିକକୁ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଦିଆଯାଇଛି । ସେ ନିର୍ଭୀକ ଭାବରେ ନିଜର ଚିନ୍ତା ଓ ଭାବନା ପ୍ରକାଶ କରିପାରିବ ଓ କୌଣସି ବିଷୟରେ ନିଜର ଅଭିମତ ପୋଷଣ କରିପାରିବ । ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ସମତା ଓ ଭ୍ରାତୃତ୍ୱର ମୂଳଦୁଆ ଉପରେ ଗଣତନ୍ତ୍ର ଠିଆ ହୋଇଛି । ସମତା ନ ରହିଲେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ବଳରେ ଅନେକ ଲୋକ କେତେକଙ୍କ ଉପରେ ପ୍ରଭୁତ୍ୱ ଜାହିର କରିଥାନ୍ତି । ବ୍ୟକ୍ତି ସ୍ୱାତନ୍ତ୍ର୍ୟ ନ ରହିଲେ ବ୍ୟକ୍ତିଗତ ସ୍ତରରେ ହେଉଥିବା ଉଦ୍ୟମକୁ ସମତା କ୍ଷୁଣ୍ଣ କରେ ଓ ରାଷ୍ଟ୍ର ନିର୍ମାଣ ବାଧାପ୍ରାପ୍ତ ହୁଏ । କେବଳ ଭାଇଚାରା ହିଁ ଏ ଦୁହିଁଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିଥାଏ । ଜାତୀୟ ଏକତା ଓ ସଂହତି ଆମର ଲକ୍ଷ୍ୟ । ସ୍ୱାଧୀନତାର ସୁରକ୍ଷା ଓ ସାମୂହିକ ବିକାଶ ପାଇଁ ଏହା ନିହାତି ଆବଶ୍ୟକ ଅଟେ । ଗୋଟିଏ ଦେଶର ଲୋକମାନଙ୍କ ମଧ୍ୟରେ ଥିବା ଏକତ୍ୱ ଭାବକୁ, ଜାତୀୟ ସଂହତି କୁହାଯାଏ । କିନ୍ତୁ ବ୍ୟକ୍ତିଗତ ସ୍ୱାର୍ଥ, ଜାତିଆଣ ଭାବ, ଧର୍ମ ଧର୍ମ ଭିତରେ ତିକ୍ତତା, ଉଚ୍ଚନୀଚ ଭେଦଭାବ ଭଳି କେତେକ ଅନ୍ତରାୟ ଜାତୀୟ ସଂହତିରେ ବାଧା ସୃଷ୍ଟି କରୁଛନ୍ତି । ତେଣୁ ସମସ୍ତ ପ୍ରକାର ସଂକୀର୍ଣ୍ଣତାକୁ ଜଳାଞ୍ଜଳି ଦେଇ ପରସ୍ପର ମଧ୍ୟରେ ଶ୍ରଦ୍ଧା, ସମ୍ମାନ, ସହନଶୀଳତା ଓ ଭ୍ରାତୃତ୍ୱଭାବ ବଜାୟ ରଖିଲେ ଭାରତବର୍ଷରେ ଅଖଣ୍ଡତା ପ୍ରତିଷ୍ଠିତ ହେବ । ଆମକୁ ସବୁବେଳେ ମନେ ରଖିବାକୁ ହେବ ଯେ ଆମର ଜାତି, ଧର୍ମ, ଭାଷା, ଅଞ୍ଚଳ, ବେଶ-ପୋଷାକ, ଖାଦ୍ୟପେୟ, ପର୍ବପର୍ବାଣି, ଚାଲିଚଳଣି ଓ ରୀତିନୀତି ଭିତରେ ବିଭିନ୍ନତା ଥିଲେ ମଧ୍ୟ ଆମେ ସମସ୍ତେ ଏକ ମହାଭାରତୀୟ ସୂତ୍ରରେ ବାନ୍ଧି ହୋଇଛେ । ଆମ ସମ୍ବିଧାନ, ଜାତୀୟ ପତାକା ଓ ଜାତୀୟ ସଂଗୀତ ଆମ ସଂହିତିର ନିଦର୍ଶନ ।

ସାଧାରଣତନ୍ତ୍ର ଦିବସ ପାଳନ ଆତ୍ମ ସମୀକ୍ଷା କରିବାର ସୁଯୋଗ ଆଣି ଦେଇଥାଏ । ଆମେ ନେଇଥିବା ସଂକଳ୍ପ ଆଜି କେତେଦୂର ସଫଳ ହୋଇପାରିଛି, ଆମେ ଆଚରଣ କରୁଥିବା କାର୍ଯ୍ୟପନ୍ଥା କେତେଦୂର ଗଣତାନ୍ତ୍ରିକ ଓ ଅପୂର୍ଣ୍ଣ ରହିଯାଇଥିବା ଶପଥଗୁଡ଼ିକ ପୂରଣ କରିବାରେ ଆମେ କେତେ ଦୂର ପ୍ରତିଶ୍ରୁତିବଦ୍ଧ ତାହା ସାଧାରଣତନ୍ତ୍ର ଦିବସ ଆମକୁ ଚେତାଇ ଦେଇଥାଏ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଆମ ଦେଶରେ ପରୀକ୍ଷାମୂଳକ ଭାବେ ଚାଲି ବେଶ୍ ସୁଖ୍ୟାତି ଅର୍ଜନ କରିଛି । ଭାରତ ଆଜି ଆଣବିକ ଶକ୍ତି, ଶିଳ୍ପ, ବିଜ୍ଞାନ, କୃଷି ଓ ଗମନାଗମନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରିପାରିଛି । ତଥାପି ଅନେକ କିଛି ଆମକୁ ହାସଲ କରିବାକୁ ବାକି ରହିଯାଇଛି । ଭାରତର ଲୋକସଂଖ୍ୟା ଅନୁପାତରେ ଅଧାରୁ ଅଧିକ ଜନତା ନିରକ୍ଷର ଓ କୁସଂସ୍କାରଗ୍ରସ୍ତ । ଚାରିଆଡ଼େ ଅଜ୍ଞତା, ଦାରିଦ୍ର୍ୟ ଓ ସଚେତନତାର ଘୋର ଅଭାବ । ସାବାଳକ ଭୋଟ ପ୍ରଥାର ସଦ୍‌ବ୍ୟବହାର ସବୁ ସମୟରେ ସମ୍ଭବ ହେଉ ନାହିଁ । ମୌଳବାଦୀମାନେ ଧର୍ମ ଧର୍ମ ଭିତରେ ବିଭେଦ ସୃଷ୍ଟି କରି ସମାଜର ସଦ୍‌ଭାବ ଓ ଶାନ୍ତି ନଷ୍ଟ କରିବାକୁ ଚେଷ୍ଟା କରୁଛନ୍ତି । ବେକାରୀ ବଢ଼ି ବଢ଼ି ଚାଲିଛି ଓ କର୍ମନିଯୁକ୍ତି କମି କମି ଆସୁଛି । ଜନସଂଖ୍ୟା ସହିତ ଦୁର୍ନୀତି ତାଳ ଦେଇ ଆଗେଇ ଚାଲିଛି । ସୀମା ବିବାଦ ଆମ ଜାତୀୟ ଏକତା ପ୍ରତି ଏକ ପ୍ରଶ୍ନବାଚୀ ସୃଷ୍ଟି କରିଛି । ଫଳରେ ଜାତିର ବିକାଶ ଆଶାନୁରୂପ ହୋଇପାରୁନାହିଁ । ଏହା ପଛରେ ଆମର ଚରମ ଉଦାସୀନତା ରହିଛି । ସମ୍ବିଧାନର ଆଇନକାନୁନ୍ ସହିତ ଆମେ ଅନ୍ତରଙ୍ଗ ହୋଇପାରି ନାହୁଁ ଓ ସେଗୁଡ଼ିକ ଠିକ୍ ରୂପେ ପାଳନ କରିପାରିନାହୁଁ । ଆମେ ନିଜ କଥା ବେଶି ଭାବି ଦେଶ କଥା କମ୍ ଭାବୁଛୁ । ଆମେ ଜାଣିବା ଦରକାର ବାହାରୁ କେହି କାହା ଉପରେ ଗଣତାନ୍ତ୍ରିକ ମନୋଭାବ ଲଦି ଦେଇ ନପାରେ, ଏହା ଲୋକର ନିଜ ମନ ଭିତରୁ ପ୍ରକାଶ ପାଇବା ଉଚିତ ।

ସାମାଜିକ ଗଣତନ୍ତ୍ର ଏକ ଜୀବନଧାରା ଓ ବିକାଶ ପ୍ରକ୍ରିୟା । ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ବିଶ୍ୱାସ ରଖି ନିଜଠାରେ ଆତ୍ମବିଶ୍ୱାସ ଆଣିବା ସାଧାରଣତନ୍ତ୍ର ଦିବସର ଡାକରା । ଶିକ୍ଷାଦ୍ୱାରା ଅଜ୍ଞତାକୁ ଦୂର କରି ନିଜକୁ ସଚେତନ କରିବା ସଂଗେସଂଗେ ଅନ୍ୟକୁ ମଧ୍ୟ ସଚେତନ କରିବାକୁ ପଡ଼ିବ । ପ୍ରତ୍ୟେକ କ୍ଷେତ୍ରରେ ନିଜ ଆଚରଣରେ ସଂଯମତା ଓ ସାଧୁତା ରକ୍ଷା କରିବାକୁ ହେବ । ଗଣତନ୍ତ୍ରର ଜାଗ୍ରତ ପ୍ରହରୀ ହୋଇ ଆମକୁ ସବୁବେଳେ ସତର୍କ ରହିବା ଆବଶ୍ୟକ । ସାଧାରଣତନ୍ତ୍ର ଦିବସ ହେଉଛି ବଳିଦାନର ଦିବସ । ମାତୃଭୂମିର ସେବା ପାଇଁ ସ୍ୱାର୍ଥକୁ କିପରି ବଳି ଦେବାକୁ ହୁଏ, ତାହା ଶିକ୍ଷାଲାଭ କରିବା ଦରକାର । ତେଣୁ ଯିଏ ଯେଉଁଠାରେ ଯେଉଁ କର୍ମ କରୁଥାଆନ୍ତୁ ନା କାହିଁକି ନିଜର କାର୍ଯ୍ୟ ଦେଶ ନିର୍ମାଣରେ କିପରି ସହାୟକ ହୋଇପାରିବ, ତାହା ଭାବି ଅତ୍ୟନ୍ତ ନିଷ୍ଠା ଓ ତ୍ୟାଗ ଭାବନା ସହ ସଂପାଦନ କଲେ ସାଧାଣତନ୍ତ୍ର ଦିବସ ପାଳନ ଯଥାର୍ଥ ହେବ ।

ଆକାଶବାଣୀ (ଜୟପୁର) କେନ୍ଦ୍ରରୁ ପ୍ରସାରିତ
ବି- ୯୩/୧, ନାଲ୍‌କୋ
ଦାମନଯୋଡ଼ି, କୋରାପୁଟ - ୭୬୩୦୦୮





# ଜନରାଜ୍ୟ ଦିବସ ପାଳନ : ଅତୀତ ଓ ବର୍ତ୍ତମାନ

କାଶୀନାଥ ବାରିକ

**ଭା**ରତବର୍ଷ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ସ୍ୱାଧୀନ ହେଲା । ଦେଶ ସ୍ୱାଧୀନ ହେବାପରେ ନିଜସ୍ୱ ସମ୍ବିଧାନଟିଏ କରି ସେହି ଅନୁସାରେ, ଭାରତୀୟ ଜନତା ପରିଚାଳିତ ହେବା ପାଇଁ ଏକ ନିଜସ୍ୱ ସମ୍ବିଧାନର ଆବଶ୍ୟକତା ଉପଲବ୍ଧି କଲେ । ସମସ୍ତେ ଅନୁଭବ କଲେ, ଦେଶର ବିକାଶ ଲାଗି ପୂର୍ଣ୍ଣ ସୁଯୋଗ ଦରକାର । ଅନ୍ୟ ଦେଶର ଲୋକମାନଙ୍କ ଭଳି ଭାରତବାସୀମାନେ ତାଙ୍କର ଜନ୍ମଗତ ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଆଗ୍ରହ ପ୍ରକାଶ କଲେ ।

ଲାହୋରଠାରେ ଭାରତୀୟ ଜାତୀୟ କଂଗ୍ରେସର ସାଧାରଣ ଅଧିବେଶନରେ ଦେଶବାସୀମାନଙ୍କର ପୂର୍ଣ୍ଣ ସ୍ୱରାଜ୍ୟ ହାସଲର ଲକ୍ଷ୍ୟ ଗୃହୀତ ହେବା ପରେ ସେମାନଙ୍କର ପୂର୍ଣ୍ଣ ଅଧିକାରର ସଂକଳ୍ପକୁ ଘୋଷଣା କରାଗଲା । ଜାନୁଆରୀ ୨୬, ୧୯୫୦ ମସିହାରେ ତାହା ବାସ୍ତବ ରୂପ ନେଲା । ଦେଶକୁ ସାର୍ବଭୌମ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରଭାବେ ପ୍ରତିଷ୍ଠା କରାଗଲା ।

ପ୍ରସଙ୍ଗକ୍ରମେ, ୧୯୪୬ ମସିହା ଡିସେମ୍ବର ୯ ତାରିଖରେ ସମ୍ବିଧାନ ସମ୍ପର୍କରେ ନୂଆଦିଲ୍ଲୀର ପାର୍ଲାମେଣ୍ଟ ଭବନରେ ପ୍ରଥମେ ଆରମ୍ଭ ହୋଇଥିଲା । ଦୁଇବର୍ଷ ୧୭ ଦିନ ମଧ୍ୟରେ ଅର୍ଥାତ୍ ୧୯୪୯ ନଭେମ୍ବର ୨୬ ତାରିଖରେ ଏହାର କାମ ପୂର୍ଣ୍ଣାଙ୍ଗ ରୂପ ନେଲାପରେ, ଡକ୍ଟର ରାଜେନ୍ଦ୍ର ପ୍ରସାଦ ସମ୍ବିଧାନର ଅନୁମୋଦନ ପାଇଁ ଉଦ୍ୟମ କରିଥିଲେ । ସେ ଏ ସମସ୍ତ କାର୍ଯ୍ୟ କରିବା ପରେ ପଣ୍ଡିତ ଜବାହରଲାଲ ନେହେରୁ ସମ୍ବିଧାନର ଲକ୍ଷ୍ୟ ସମ୍ପର୍କରେ ପ୍ରସ୍ତାବ ଆଗତ କରିଥିଲେ । ସେଥିରେ ମୌଳିକ ଲକ୍ଷ୍ୟ ରହିଲା ଜନସାଧାରଣଙ୍କ କର୍ତ୍ତୃତ୍ୱାଧୀନ ସମସ୍ତ କ୍ଷମତା । ଏହାଦ୍ୱାରା ସମସ୍ତେ ସ୍ୱାଧୀନତାର ମୂଲ୍ୟବୋଧ ଅନୁଭବ କରିପାରିବେ, ଦେଶ ସାର୍ବଭୌମ ସାଧାରଣତନ୍ତ୍ର ଦେଶ ବୋଲି ବିଚାର କରିପାରିବେ । ସମସ୍ତଙ୍କର ନ୍ୟାୟ, କ୍ଷମତା ଓ ସ୍ୱାଧୀନତା ବାସ୍ତବ ରୂପ ନେବ । ସଂଖ୍ୟାଲଘୁମାନେ ନିଜକୁ ସୁରକ୍ଷିତ ମନେ କରିବେ ଓ ଆଦିବାସୀ, ହରିଜନ, ମହିଳାମାନେ ନିରାପତ୍ତା ପାଇପାରିବେ । ୧୯୪୭ ମସିହା ଜାନୁଆରୀ ମାସରେ ଏ ସମସ୍ତ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ସେତେବେଳେ ସମ୍ବିଧାନ ପାଇଁ ଦ୍ୱିତୀୟ ଅଧିବେଶନ ହୋଇଥିଲା । ଇଂରେଜ ସରକାର ଆମ ଦେଶବାସୀଙ୍କୁ ଭାରତର ଶାସନ ଦାୟିତ୍ୱ ହସ୍ତାନ୍ତର କରିବା ପୂର୍ବରୁ ଏଭଳି କାର୍ଯ୍ୟକ୍ରମ ହୋଇସାରିଥିଲା । ଏଥିସକାଶେ ଅନେକ ଉପସମିତି କରାଯାଇ ଗୋଟିଏ ପରେ ଗୋଟିଏ ରିପୋର୍ଟକୁ ପ୍ରସ୍ତୁତ କରାଯାଉଥିଲା । ଏହି ସବୁ ରିପୋର୍ଟକୁ ତନଖିବା ପାଇଁ ପଣ୍ଡିତ ଜବାହରଲାଲ ନେହେରୁ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ରହିଥିଲେ । ଅବୈତନିକ ଭାବରେ ସମ୍ବିଧାନର ପ୍ରସ୍ତୁତିକାଳରେ ଉପଦେଷ୍ଟା ଭାବରେ ବେନିଗାଲ ନରସିଂହ ରାଓଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଏହି ସମ୍ବିଧାନର ଚୂଡ଼ାନ୍ତ ରୂପରେଖ ପାଇଁ ଭୀମରାଓ ଆମ୍ବେଦକରଙ୍କର ସଭାପତିତ୍ୱରେ ଏକ କମିଟି ଗଠିତ ହୋଇଥିଲା ଓ ସେହି କମିଟି ଆଗରେ ତାହାକୁ ୧୯୪୮ ମସିହା ଫେବୃଆରୀ ମାସରେ ଉପସ୍ଥାପନ କରାଯାଇଥିଲା । ଏହାର ବିଭିନ୍ନ ବିଷୟମାନ ବିଭିନ୍ନ ଅଧିବେଶନରେ ପରୀକ୍ଷାନିରୀକ୍ଷା ପରେ ୧୬୫ ଦିନରେ ୧୧୪ଟି ଚିଠା ଚୂଡ଼ାନ୍ତ ହୋଇଥିଲା । ଏହା ଉପରେ ୭୬୩୫ଟି ସଂଶୋଧନ ପ୍ରସ୍ତାବ ଆସିଥିଲା । ସେଥିମଧ୍ୟରୁ ୨୪୭୩ଟିକୁ ଆଲୋଚନା କଲାବେଳେ ପ୍ରାୟ ୧୩,୦୦୦ ଜନସାଧାରଣ ଏହି ପ୍ରସ୍ତାବଗୁଡ଼ିକୁ ପର୍ଯ୍ୟବେକ୍ଷଣ କରିଥିଲେ ।

ଅତୀତର ଇତିହାସକୁ ଓଲଟାଇଲେ ଜଣାଯାଏ ଯେ, ବୌଦ୍ଧ ଯୁଗରେ ମଧ୍ୟ ଗଣତାନ୍ତ୍ରିକ ବ୍ୟବସ୍ଥାର ନିୟମାବଳୀମାନ ଥିଲା । ଭାରତବର୍ଷର ବିଭିନ୍ନ ବୌଦ୍ଧ ଅଞ୍ଚଳ ବ୍ୟତୀତ ଓଡ଼ିଶାର ବୌଦ୍ଧ ବିହାରମାନ ଆବିଷ୍କୃତ ହେବାପରେ ସେସବୁ ଲୋକଲୋଚନକୁ ଆସିପାରନ୍ତି । ଭାରତର ଗାଁଗଣ୍ଡାରେ ପଞ୍ଚାୟତି ବ୍ୟବସ୍ଥାମାନ - ଗଣତନ୍ତ୍ର ଓ ସାଧାରଣତନ୍ତ୍ରର ପରିଚାୟକ ଭାବେ କାମ କରୁଥିଲେ । ଅତୀତରେ ରାଜାମହାରାଜାମାନେ ରାଜତନ୍ତ୍ର ଉପରେ ସେମାନଙ୍କର ସରକାର ଚଳାଉଥିଲେ ସୁଦ୍ଧା ମନ୍ତ୍ରୀମାନଙ୍କ ଦ୍ୱାରା କାର୍ଯ୍ୟ ନିର୍ବାହ କରୁଥିଲେ । ସେହି ପନ୍ଥାକୁ ଏଯାବତ୍ ମନ୍ତ୍ରୀମାନେ ଏକ ପରଂପରାଗତ କାର୍ଯ୍ୟକ୍ରମ ବୋଲି ବିଚାରୀ ସେହି ପରମ୍ପରାର ଉତ୍ତର ଦାୟଦ ହୋଇପାରିଛନ୍ତି । ଏହା ହିଁ ଆମ ଦେଶର ଏକ ପ୍ରାଚୀନ ପରମ୍ପରା ବୋଲି ବିଚାର କରାଯାଇଛି ।





ଏଣୁ, ୩୦୮ ସଭ୍ୟ ବିଶିଷ୍ଟ ସମ୍ବିଧାନ ସଭାଦ୍ୱାରା ୧୯୪୯ ନଭେମ୍ବର ୨୬ ତାରିଖରେ ୩୯୫ ଅନୁଚ୍ଛେଦ ଓ ୮ ତଫସିଲ ବିଶିଷ୍ଟ ସମ୍ବିଧାନରେ ଲୋକମାନଙ୍କ ପାଇଁ ଲୋକମାନଙ୍କ ନୀତିରେ ଲୋକମାନଙ୍କ ଦ୍ୱାରା ଏକ ସରକାରର ନୀତିକୁ ଲିପିବଦ୍ଧ କରାଯାଇଛି । ଏହା ଫଳରେ ଜନତାମାନେ ଆଇନ ଅଦାଲତ ମାଧ୍ୟମରେ ସେମାନଙ୍କର ପୂର୍ଣ୍ଣ ଅଧିକାର ସାବ୍ୟସ୍ତ କରିପାରୁଅଛନ୍ତି ।

ସମ୍ବିଧାନ ପ୍ରଣେତାମାନେ ନିଜ ଦେଶର ଏକ ସ୍ୱତନ୍ତ୍ର ସମ୍ବିଧାନ ପ୍ରଣୟନ ପାଇଁ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ-୧୯୩୫, ଅତୀତ ଅଷ୍ଟ୍ରେଲିଆ ଓ କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା, ଆୟର୍ଲ୍ୟାଣ୍ଡ, ସୋଭିଏତ୍ ୟୁନିୟନ୍, ୱେମାର ରିପବ୍ଲିକ୍, ସୁଇଜରଲ୍ୟାଣ୍ଡର ସମ୍ବିଧାନଗୁଡ଼ିକୁ ଆଣି ସେ ସମୟର ମୌଳିକ ଲୋକ ଅଧିକାରଗୁଡ଼ିକୁ ଗ୍ରହଣ କରିଥିଲେ । ଏହାର ଉଦ୍ଦେଶ୍ୟ ଥିଲା, ବିଶ୍ୱରେ ଥିବା ବିଭିନ୍ନ ଦେଶର ଲୋକମାନଙ୍କୁ ସାମାଜିକ, ମତ ସାବ୍ୟସ୍ତ କରିବାର ଅଧିକାର, ସେଥିପ୍ରତି ବିଶ୍ୱାସ ଉପାସନା ଆଦିରେ ସମଭାବରେ ସ୍ୱାଧୀନତା ଦେବା ଭିତରେ ଭାରତବାସୀଙ୍କୁ ଅନୁରୂପ ସୁବିଧା ଓ ସୁଯୋଗ ଦେବା । ଏହି ସଂକଳ୍ପ ହିଁ ଆଜି ଦେଶରେ ପ୍ରତିଷ୍ଠାଲାଭ କରିପାରିଛି ।

ସମ୍ବିଧାନ ପ୍ରଣୟନ କରିବା ଭିତରେ ଦେଶ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ବର୍ଷ ବିତାଇ ସାରିଲାଣି । ବିଭିନ୍ନ ଦଳର ରାଜନୈତିକ ନେତାମାନେ ଦେଶର ପରିଚାଳନା ଦାୟିତ୍ୱ ନେଇଅଛନ୍ତି । କେନ୍ଦ୍ରର ସମ୍ବିଧାନ ନୀତିକୁ ଦେଶର ବିଭିନ୍ନ ରାଜ୍ୟମାନେ ପାଳନ କରୁଅଛନ୍ତି । ଓଡ଼ିଶା ସେହି ଦୃଷ୍ଟିରୁ ଦେଶର ସମ୍ବିଧାନକୁ ମାନିବା ସହିତ ଅତୀତର ସ୍ମରଣୀୟ ଦିନକୁ ମନେପକାଇ ପ୍ରତିବର୍ଷ ଜାନୁଆରୀ ୨୬ ତାରିଖକୁ ଜନରାଜ୍ୟ ଦିବସ ଭାବରେ ପାଳନ କରିଆସୁଅଛି ।

ଦେଶର ପ୍ରଗତି ଆଶାନୁରୂପ ଭାବରେ ହେବା ପାଇଁ ହେଲେ ସମ୍ବିଧାନକୁ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ମଧ୍ୟରେ ସମନ୍ୱୟ ରକ୍ଷା କରିବା ସହିତ ସେ ସବୁକୁ ପାଳନ କରିବା ପାଇଁ ପ୍ରତି ପ୍ରତିନିଧି ଯତ୍ନବାନ ହେବା କଥା । ରାଜ୍ୟରେ ବିଧାନସଭା ରହିଛି । କେନ୍ଦ୍ରରେ ପାର୍ଲାମେଣ୍ଟର ରାଜ୍ୟ ସଭା ଓ ଲୋକସଭା ରହିଛି । ଶପଥ ନେଲାବେଳେ ଉଭୟ ବିଧାୟକ ଓ ସାଂସଦମାନେ ସମ୍ବିଧାନକୁ ନେଇ ଚଳିବା ନେଇ ଶପଥ ନେଇଥାନ୍ତି । ରାଜନୀତିର ଊର୍ଦ୍ଧ୍ୱରେ ଜନତାଙ୍କର ପ୍ରତିନିଧି ଭାବରେ ଯାହା ନ୍ୟାୟ ଦେବା କଥା ସେ ଦିଗରେ ଚିନ୍ତା କଲେ ଦେଶର ସମସ୍ୟା ଦୂରିଭୂତ ହୋଇପାରନ୍ତା, ମାତ୍ର ଦେଖାଯାଉଛି ଦିନକୁ ଦିନ ବିବିଧ ବୈଷମ୍ୟ । ଏହି ବିଶମତା କ୍ରମେ ବଢ଼ି ବଢ଼ି ଯାଉଛି ।

ଓଡ଼ିଶାରେ ଯେଉଁ ମନ୍ତ୍ରିମଣ୍ଡଳ ଚାଲିଛି, ତାହା କେନ୍ଦ୍ର ମନ୍ତ୍ରିମଣ୍ଡଳର ଆଦର୍ଶକୁ ଅବଜ୍ଞା କରୁ ନାହିଁ । କାରଣ ସମ୍ବିଧାନ ଦ୍ୱାରା ଉଭୟ ପରିଚାଳିତ ହେଉଥିବା ହେତୁ ପ୍ରତ୍ୟେକ ନୀତି ବହିର୍ଭୂତ କରିବା ଅସମ୍ଭବ ବୋଲି ବୁଝିବାକୁ ପଡ଼ିବ । ତେବେ, ଅଗ୍ରଗତି କରିବା ପାଇଁ ଓଡ଼ିଶା ସରକାର ଯେଉଁ ପଦକ୍ଷେପମାନ ନେଉଛନ୍ତି, ସେସବୁ କତିପୟ ବିପରୀତ ମାର୍ଗର ପ୍ରତିନିଧିତ୍ୱ ପାଇଁ ଜନତାକୁ ନ୍ୟାୟ ଦେବା ଅସମ୍ଭବ ହୋଇପଡ଼ିଛି । ଏକ ଦିଗରେ ଦୈବିଦୁର୍ବିପାକ ପ୍ରପୀଡ଼ିତ ଅନ୍ତଃସମସ୍ୟା ରହୁଥିଲାବେଳେ, ଅନ୍ୟ ଦିଗରେ କେନ୍ଦ୍ରର ସହାୟତା ପାଇବାର ଯେଉଁ କଟକଣା ରହୁଛି, ସେ ସବୁକୁ ଅତିକ୍ରମ କରିବା ପାଇଁ ମାସ ମାସ ଧରି ଅପେକ୍ଷା କରିବାକୁ ପଡୁଛି । ଏହାଫଳରେ ଜନହିତକର କାମ ବାଧା ପାଉଛି ।

ଲୋକମାନଙ୍କୁ ସାମ୍ବିଧାନିକ ନ୍ୟାୟ ଦେବା ପାଇଁ ଭିତରେ ରହିଥିବା ଭୂତପୂର୍ବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ବିଜୁପଟ୍ଟନାୟକ ଓଡ଼ିଶାର ୧୩ଟି ଜିଲ୍ଲାରୁ ୩୦ଟି ଜିଲ୍ଲାକୁ ବର୍ଦ୍ଧିତ କରିଥିଲେ । ଏହା ଫଳରେ ଉଭୟ ନେତା ବା ଲୋକ ପ୍ରତିନିଧି ସହିତ ପ୍ରଶାସକମାନେ ଲୋକମାନଙ୍କୁ ନ୍ୟାୟ ଦେବା ଉଦ୍ଦେଶ୍ୟ ଥିଲା । କିନ୍ତୁ, ଅନେକ ସମସ୍ୟା ଭିତରେ ବି କିୟଦାଂଶ ସଫଳ ହୋଇଅଛି । ଲୋକମାନେ ନ୍ୟାୟ ପାଇବା ଦିଗରେ ସଚେତନତା ଓ ଶିକ୍ଷାର ଘୋର ଅଭାବ ପରିଲକ୍ଷିତ ହୋଇଅଛି । ସେଥିପାଇଁ ଗଣତନ୍ତ୍ରର ବାସ୍ତବ ଚିତ୍ର ସମସ୍ତେ ଦେଖି ପାରୁ ନାହାନ୍ତି । ଏଣୁ, ଗଣଶିକ୍ଷା ଓ ସଚେତନତା ଦିଗରେ ଦେଶବାସୀ, ଓଡ଼ିଶାର ଲୋକେ ଯତ୍ନବାନ ହେବା ଦରକାର ।

ପ୍ରତି ରାଜ୍ୟରେ କେନ୍ଦ୍ର ଓ ଓଡ଼ିଶାର ଏକାଧିକ ଅନୁଷ୍ଠାନ ଜନହିତକର ପାଇଁ ସ୍ଥାପିତ ହେଉଅଛି । କୋଟି କୋଟି ଟଙ୍କାର ଅଟକଳ ହେଉଅଛି । ମାତ୍ର, ସେସବୁ କିପରି ସୁଚାରୁ ରୂପେ କାର୍ଯ୍ୟକାରୀ ହୋଇପାରିବ, ସେଥିପାଇଁ ଉଭୟ ପ୍ରତିନିଧି ଓ ଜନତା ସଜାଗ ହେବା ଦରକାର । ଯେତେ ଦିନ ପର୍ଯ୍ୟନ୍ତ ଜନସାଧାରଣ ନିଜର ଦାବି ହାସଲ ପାଇଁ ସତର୍କତା ଓ ଜାଗ୍ରତ ହୋଇ ନଥିବେ, ସେତେ ଦିନ ପର୍ଯ୍ୟନ୍ତ ପ୍ରକୃତ ସ୍ୱରାଜ୍ୟ ହାସଲ ହୋଇପାରିଛି ବୋଲି କହିବା ଯୁକ୍ତିଯୁକ୍ତ ହେବ ନାହିଁ ।

ଭାରତର ତଥା ଓଡ଼ିଶାର ଏକ ବୃହତ୍ ସମସ୍ୟା ଭାଷା ଓ ଲିପି । କେତେକ ରାଜ୍ୟ ଭାଷାକୁ ନେଇ ଗଠିତ ହୋଇଥିଲାବେଳେ, ଅନ୍ୟ କେତେକ ରାଜ୍ୟ ମୌଳିକ ସମସ୍ୟାକୁ ନେଇ ଗଠିତ ହୋଇଅଛି । ନିକଟରେ କେନ୍ଦ୍ରର ବିଭାଗୀୟ ମନ୍ତ୍ରୀ ଭାରତର ଭାଷା ଉପରେ ଏକ ଉତ୍ତର ଦେଇଥିଲେ । ଭାରତର ବିଭିନ୍ନ ଭାଷାଭାଷୀ ପତ୍ରପତ୍ରିକାରେ ସେସବୁ ଛପାହେବା ଭିତରେ ଓଡ଼ିଶା ଖବର କାଗଜରେ ମଧ୍ୟ ସେସବୁ ଛପା ଯାଇଥିଲା । ଦୈନିକ ସମ୍ବାଦ ଓ ଶ୍ରମିକ ମାଲିକର ଫର୍ଦ୍ଦରୁ ଜଣା ପଡ଼ିଥିଲା । ଭାରତରେ ୩୩୭୨ଟି ଭାଷା ରହିଅଛି । ସେଥିମଧ୍ୟରୁ ୨୧୭ଟି କଥିତ ଭାଷା । ପ୍ରତି କଥିତ ଭାଷାରେ ପ୍ରାୟ ୧୦ ହଜାରରୁ ଊର୍ଦ୍ଧ୍ୱ ଲୋକେ ବ୍ୟବହାର କରୁଛନ୍ତି । ୧୯୯୧ ଜନଗଣନା ଅନୁସାରେ ୧୫୭୬ଟି ବର୍ଗିକୃତ ଓ ୧୭୯୬ଟି ଅଣବର୍ଗିକୃତ ଭାଷା ରହିଅଛି । ସେଥିମଧ୍ୟରୁ ଅଧିକାଂଶ ଭାଷାର ଲିପି ହୋଇଅଛି । ଲିପି ଶିକ୍ଷା ପାଇଁ ସହାୟକ ହୋଇଥାଏ । ମାତ୍ର, ସେସବୁର ସାର୍ବଜନୀନତାକୁ ଉପଲବ୍ଧ





କରିବାକୁ ପଡ଼ିବ । ଏହା ଓଡ଼ିଆ ଓ ଅନ୍ୟାନ୍ୟ ଭାଷାରେ ଛପା ଯାଇଥିବା ହେତୁ ଦେଶର ଭାଷା କଥା ସମସ୍ତେ ଜାଣି ପାରିଥିଲେ । ଏହାର ବ୍ୟତିକ୍ରମରେ ବିଷମ ସମସ୍ୟା ଦେଖା ଦେବା ସ୍ୱଭାବିକ । ଏଣୁ, ଭାଷା ସମସ୍ୟାକୁ ପ୍ରାଧାନ୍ୟ ଦେଇ ପରସ୍ପର କଳହ କରିବାରେ ଜନସାଧାରଣଙ୍କ ପ୍ରତି ନ୍ୟାୟ ଦେବା ସମ୍ଭବ ହୋଇ ପାରୁନାହିଁ । ଏଯାବତ୍ ଅଦାଲତରୁ ଆମ୍ଭେ ଇଂରାଜୀ ଭାଷାକୁ ଅନ୍ତର କରିବା ସମ୍ଭବ ହୋଇପାରି ନାହିଁ । ଇଂରାଜୀ ଭାଷାର ଗୋଟାକୁ ଗୋଟା ବିଦ୍ୟାଳୟ ଖୋଲିବା ପାଇଁ ସମ୍ମତି ପ୍ରଦାନ କରୁଅଛୁ । ଅନ୍ୟ ଭାଷାକୁ ପ୍ରାଧାନ୍ୟ ଦେବା ସହିତ ଆମ କଥିତ ଓ ଲିପି ଆଦିର ସ୍ଥିତି ଓ ଗତି ପାଇଁ ଯତ୍ନବାନ ହେବା ଦରକାର । ତାହା ହୋଇପାରିଲେ ଭବିଷ୍ୟତରେ ଆମ୍ଭ ପାଇଁ ଆମ୍ଭ ଜନସମାଜ ପାଇଁ କେଉଁ ଭାଷା ଉପଯୋଗୀ ହୋଇପାରିବ, ସେସବୁ ପ୍ରୟୋଗ କରାଯାଇ ପାରନ୍ତା ଓ ଆମ ସମସ୍ୟା ଅଳ୍ପକେ ଦୂର ହୋଇପାରନ୍ତା । ଏଣୁ, ତତ୍‌ସମ, ତଦ୍‌ଭବ, ଦେଶଜ ଓ ବୈଦେଶିକ ଭାଷାର ସମନ୍ୱୟର ରକ୍ଷା ସହିତ ଦେଶର ପ୍ରଗତି ପାଇଁ ପ୍ରତି ଭାଷାଭାଷୀ ଲୋକମାନଙ୍କ ମଧ୍ୟରେ ସାର୍ବଭୌମତା ପ୍ରକାଶିତ ହେବା ଦରକାର ।

ଆମ ଦେଶର ବିଶ୍ୱ ପ୍ରତି ବୃହତ୍ ଅବଦାନ ଧର୍ମ ଓ ଆଧ୍ୟାତ୍ମିକତା । ଏ ଯାବତ୍ ଭାରତବର୍ଷ କର୍ତ୍ତୃତ୍ୱ ଦେଶର ଜାତି ଧର୍ମପ୍ରତି ମାନ୍ୟତା ଦେଇ ତାହାର ମହାନୁଭବତାକୁ ଆନ୍ତର୍ଜାତୀୟ ସ୍ତରରେ ପ୍ରଦର୍ଶନ କରିଆସିଛି । ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ରହି ଆମ ଓଡ଼ିଶା ସେହି ଅନୁସାରେ କାମ କରିଚାଲିଛି । ଏଣୁ, ସବୁକ୍ଷେତ୍ରରେ ଅନ୍ୟ ରାଜ୍ୟ ତୁଳନାରେ ଆଶାନୁରୂପ ଧର୍ମ ଦିଗରେ ବୈଷମ୍ୟ ଦେଖା ଦେଇନାହିଁ । ଓଡ଼ିଶାରେ ଅନ୍ୟ ରାଜ୍ୟ ତୁଳନାରେ ସଂଖ୍ୟା ଲଘୁ ସୁରକ୍ଷିତ ଅଛନ୍ତି । ଏଣୁ, ଅଗ୍ରଗତି ସମ୍ଭବ ହୋଇପାରିଛି । ରାଜସ୍ୱ ସମ୍ବଳକୁ ନେଇ ରାଜ୍ୟକୁ ଗଠନ କରିବା ଦିଗରେ ସରକାରଙ୍କର ପ୍ରତି ପ୍ରସ୍ତାବକୁ ପ୍ରତି ଜନସାଧାରଣଙ୍କର ପ୍ରତିନିଧିମାନେ ହୃଦୟଙ୍ଗମ କରି ସେହି ଅନୁସାରେ କେନ୍ଦ୍ର ଓ ଆନ୍ତର୍ଜାତୀୟ ସହାନୁଭୂତି ଓ ସହାୟତା ଲାଭ କରିବା ଦରକାର ।

ଆଜିର ଜନରାଜ୍ୟ ଦିବସରେ ଓଡ଼ିଶାବାସୀ ସେମାନଙ୍କର ସମସ୍ୟା ଦିଗରେ ଅବଗତ ହୋଇ ପ୍ରତି କ୍ଷେତ୍ରରେ ପ୍ରଗତି ଦିଗରେ ନିଜେ ନିଜକୁ ସକ୍ରୀୟ କରିବା ସହିତ ସେମାନଙ୍କର ପ୍ରତିନିଧିମାନେ ଯେପରି ଭାରତର ସମ୍ବିଧାନକୁ ନେଇ ଆଗେଇ ଯିବେ ସେଥିପାଇଁ ପ୍ରେରଣା ଦେବା ଦରକାର । ଏହା କରାଯାଇପାରିଲେ ଦେଶର ଗଣତନ୍ତ୍ର ଦୃଢ଼ ଅଛି ବୋଲି ଜାଣିବା ଦିଗରେ କାହାକୁ ଅସୁବିଧା ହେବ ନାହିଁ ।

ରାଜ୍ୟସ୍ତରୀୟ ମୁକ୍ତବୃତ୍ତ ସାମ୍ବାଦିକ
ଭୁବନେଶ୍ୱର



ଭୁବନେଶ୍ୱରର ୟୁନିଟ୍-୩, ପ୍ରଦର୍ଶନୀ ପଡ଼ିଆଠାରେ ସି.ସି.ଆଇ. ତରଫରୁ ଆୟୋଜିତ ଉଦ୍ୟୋଗ ୨୦୦୪କୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ଗ୍ରାମ୍ୟ ଉନ୍ନୟନ, ଶିକ୍ଷା ତଥା ଆଇନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଉପସ୍ଥିତ ଅଛନ୍ତି । (୨୨.୧୨.୦୪)





# ସାଧାରଣତନ୍ତ୍ର ଦିବସର ଅନୁଚିନ୍ତା

ସୁଦୀପ୍ତା କୁମାରୀ ପଣ୍ଡା

ଆମ ଜନ୍ମଭୂମି ଭାରତ ଶହ ଶହ ବର୍ଷ ଧରି ଇଂରେଜମାନଙ୍କ ଅଧୀନରେ ଥିଲା । ସେମାନେ ଆମ ଦେଶରେ ଏକଛତ୍ରବାଦ ଶାସନ ଚଳାଇ ଲୋକମାନଙ୍କୁ ବହୁ ହଇରାଣ ହରକତ କରୁଥିଲେ । ଦିନକୁ ଦିନ ଅନ୍ୟାୟ, ଅତ୍ୟାଚାରର ଦମନଲୀଳା ଲୋକମାନଙ୍କୁ ଦୁର୍ବିସହ କରି ପକାଇଲା । ଫଳରେ ଦେଶରେ ବିଦ୍ରୋହର ନିଆଁ ଜଳି ଉଠିଲା । ପରିଶେଷରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ, ଅତ୍ୟାଚାରୀ ଇଂରେଜ ଶାସକଙ୍କ କବଳରୁ ମୁକ୍ତିଲାଭ କଲା ।

ଯଦିଓ ଏହିଦିନ ଭାରତ ସ୍ୱାଧୀନ ହେଲା, କିନ୍ତୁ ନିଜର ଆଇନ ପ୍ରଣୟନ କରିବାର କ୍ଷମତା ତା'ର ନଥିଲା । ପ୍ରତ୍ୟେକ ସ୍ୱାଧୀନ ଦେଶ ତା'ର ସମ୍ବିଧାନ ଅନୁସାରେ ଶାସିତ ହୁଏ । ଏହା ଲିଖିତ ବା ଅଲିଖିତ ହୋଇପାରେ । ସମ୍ବିଧାନ ଅନୁସାରେ ଦେଶର ଜଣେ ମୁଖ୍ୟ ଥାଆନ୍ତି । ତାଙ୍କୁ ଦେଶମୁଖ୍ୟ ବା ରାଷ୍ଟ୍ରମୁଖ୍ୟ କୁହାଯାଏ । ତାଙ୍କ ନାମରେ ଶାସନ ଚାଲେ । ଆମ ଦେଶ ଭାରତ ସ୍ୱାଧୀନ ହେଲା ସତ କିନ୍ତୁ ଆମର ସମ୍ବିଧାନ ନ ଥିବାରୁ ଆମେ ପୂର୍ଣ୍ଣ ସ୍ୱାଧୀନତା ପାଇ ନଥିଲେ । ବ୍ରିଟିଶ ସମ୍ବିଧାନ ଅନୁସାରେ ତାଙ୍କର ଜଣେ ପ୍ରତିନିଧି ଆମକୁ ଶାସନ କରୁଥିଲେ ।

ଏକ ଶାସନ ଖସଡ଼ା ବା ସମ୍ବିଧାନ ପ୍ରସ୍ତୁତ କରିବା କଥା ଆମର ନେତାମାନେ ଦେଶ ସ୍ୱାଧୀନ ହେବାର ବହୁ ଆଗରୁ ଚିନ୍ତା କରିଥିଲେ । ଏଥିପାଇଁ ୧୯୪୬ ମସିହା ଡିସେମ୍ବର ମାସ ୯ ତାରିଖରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ଏହାଥିଲା ସମ୍ବିଧାନ ପ୍ରଣୟନ ପାଇଁ ପ୍ରଥମ ପ୍ରସ୍ତୁତି ବୈଠକ । ଏହାର ଠିକ୍ ଦୁଇଦିନ ପରେ ଡିସେମ୍ବର ମାସ ୧୧ ତାରିଖରେ ପୁନର୍ବାର ଏକ ବୈଠକ ଆହୂତ କରାଯାଇଥିଲା । ଏହାର ସ୍ଥାୟୀ ସଭାପତି ଭାବେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ମନୋନୀତ ହୋଇଥିଲେ । କିନ୍ତୁ ମୁସଲିମ୍‌ଲିଗ୍‌ର ନେତାମାନେ ଏଥିରେ ଯୋଗ ନଦେବାରୁ ବୈଠକରେ ପ୍ରସ୍ତୁତ କରାଯାଇଥିବା ନିୟମାବଳୀଗୁଡ଼ିକ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଆମ ଦେଶର ଜାତି-ଧର୍ମ-ବର୍ଣ୍ଣକୁ ଆଖି ଆଗରେ ରଖି ଏହାର ଏକତା ଓ ଅଖଣ୍ଡତାକୁ ବଜାୟ ରଖିବାର କଥା ଚିନ୍ତାକରି ଡଃ ଆମ୍ବେଦକରଙ୍କ ସଭାପତିତ୍ୱରେ ୭ ଜଣ ସଦସ୍ୟଙ୍କୁ ନେଇ ୧୯୪୭ ମସିହା ଅଗଷ୍ଟ ୨୯ ତାରିଖରେ ସମ୍ବିଧାନ ପ୍ରଣୟନ ପାଇଁ ଏକ ଖସଡ଼ା ପ୍ରସ୍ତୁତ କମିଟି ଗଠନ କରାଗଲା । ପୂର୍ବରୁ ପ୍ରସ୍ତୁତ ନିୟମାବଳୀଗୁଡ଼ିକୁ ପରୀକ୍ଷା ନିରୀକ୍ଷା କରି ଏଥିରେ ଥିବା ଦୋଷ ତ୍ରୁଟି ବାଛି ଏକ ବିବରଣୀ ଦେବା ଥିଲା ଏହି କମିଟିର ପ୍ରଧାନ କାର୍ଯ୍ୟ । ୧୯୪୮ ମସିହା ଫେବୃଆରୀ ୨୧ ତାରିଖରେ ଏହି କମିଟି ତା'ର ଲିଖିତ ବିବରଣୀ ଉପସ୍ଥାପନ କରିଥିଲା । ସେହିବର୍ଷ ନଭେମ୍ବର ୪ ତାରିଖରେ କମିଟି ଦ୍ୱାରା ଏକ ପୂର୍ଣ୍ଣାଙ୍ଗ ବିବରଣୀ ପ୍ରସ୍ତୁତ କରାଗଲା । ୧୯୪୮ ମସିହା ନଭେମ୍ବର ୧୫ ତାରିଖରେ ଏହାର ଦ୍ୱିତୀୟ ପର୍ଯ୍ୟାୟ ବୈଠକ ବସି ୧୯୪୯ ମସିହା ଅକ୍ଟୋବର ୧୭ ତାରିଖରେ ଶେଷ ହୋଇଥିଲା । ୧୯୪୯ ନଭେମ୍ବର ୧୪ରେ ଏହାର ତୃତୀୟ ପର୍ଯ୍ୟାୟ ବୈଠକ ବସି ସେହି ମାସ ୨୬ ତାରିଖରେ ଏକ ପୂର୍ଣ୍ଣାଙ୍ଗ ସମ୍ବିଧାନ ରୂପେ ପରିଗଣିତ ହେଲା । ଏଥିରେ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ମଧ୍ୟ ସ୍ୱାକ୍ଷର କରିଥିଲେ । ପରିଶେଷରେ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଆମର ନୂଆ ସମ୍ବିଧାନ କାର୍ଯ୍ୟକାରୀ ହେଲା । ଭାରତ ଏକ ସାର୍ବଭୌମ, ଧର୍ମ ନିରପେକ୍ଷ ଓ ଗଣତାନ୍ତ୍ରିକ ରାଷ୍ଟ୍ରଭାବେ ସ୍ୱୀକୃତି ପାଇଲା । ଭାରତୀୟମାନେ ନିଜେ ନିଜର ଶାସକ ହେଲେ ।

ପୃଥିବୀର ବିଭିନ୍ନ ଗଣତନ୍ତ୍ର ରାଷ୍ଟ୍ରର ସମ୍ବିଧାନର ଢାଞ୍ଚା ଭିତ୍ତିରେ ଆମ ସମ୍ବିଧାନର ରୂପରେଖ ପ୍ରସ୍ତୁତ ହୋଇଛି । ଭାରତୀୟ ସମ୍ବିଧାନ ପୃଥିବୀରେ ସର୍ବବୃହତ୍ ସମ୍ବିଧାନ ଅଟେ । ଏହା ଆମେରିକା ସମ୍ବିଧାନର ପାଞ୍ଚଗୁଣ ଓ ଚୀନ ସମ୍ବିଧାନର ଦୁଇଗୁଣ । ଆମେରିକାର ସମ୍ବିଧାନ ଆରମ୍ଭ ସମୟରେ ୭ଟି ଅନୁଚ୍ଛେଦ ଥିବାବେଳେ, ଅଷ୍ଟ୍ରେଲିଆ ସମ୍ବିଧାନରେ ୧୨୮ ଗୋଟି ଅନୁଚ୍ଛେଦ ରହିଥିଲା । ସେହିପରି ଭାବେ କାନାଡ଼ାର ସମ୍ବିଧାନରେ ୧୪୭ଟି ଅନୁଚ୍ଛେଦ ଥିବାବେଳେ ଆମ ଭାରତ ସମ୍ବିଧାନ ଆରମ୍ଭରେ ରହିଥିଲା ୩୯୫ଟି ଅନୁଚ୍ଛେଦ । ୩୯୫ଟି ଅନୁଚ୍ଛେଦକୁ ୨୨ଟି ଭାଗ ଓ ୯ ଗୋଟି ଅନୁସୂଚୀରେ ବିଭକ୍ତ କରାଯାଇଥିଲା । କିନ୍ତୁ ପରେ ୧୯୯୫ ମସିହାରେ ୭୮ତମ ସମ୍ବିଧାନ ସଂଶୋଧନ ନିୟମାନୁସାରେ ବର୍ତ୍ତମାନ ଏହା ୪୪୩ଟି ଅନୁଚ୍ଛେଦ, ୨୨ ଗୋଟି ଭାଗ ଓ ୧୨ ଗୋଟି ଅନୁସୂଚୀ ଦ୍ୱାରା ଗଠିତ ହୋଇଛି ।





ସମ୍ବିଧାନ ପ୍ରସ୍ତୁତକାରୀ ସଦସ୍ୟମାନେ ତାଙ୍କର ବହୁମୂଲ୍ୟ ସମୟ ଓ ଶକ୍ତି ଦେଇ ଯେଉଁ ଶାସନ ଖସଡ଼ା ପ୍ରସ୍ତୁତ କରିଥିଲେ, ତାହାର ସୁଫଳ ଆଜି ଆମ୍ଭେମାନେ ପାଉଛେ । ବାସ୍ତବିକ ସେମାନଙ୍କ ପାଖରେ ଏ ଦେଶର ଜନସାଧାରଣ ଚିରଋଣୀ । ଜାନୁଆରୀ ୨୬ ତାରିଖଟି ଆମ ଦେଶ ପାଇଁ ଏକ ଗର୍ବ ଓ ଗୌରବର ଦିବସ ଅଟେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସବୁ ଭାରତୀୟମାନେ ଏହାକୁ ଏକ ମହାନ୍ ଓ ପବିତ୍ର ଦିବସ ରୂପେ ପାଳନ କରନ୍ତି । ଏହି ଦିବସର ପବିତ୍ରତା ଓ ମୂଲ୍ୟବୋଧ ଭରି ଦେଇଛି ଅଗଣିତ ଜନତାଙ୍କ ମନରେ ଭ୍ରାତୃଭାବ, ଦେଶାତ୍ମବୋଧ ଓ ଜାତୀୟତାର ମହାମନ୍ତ୍ର । ତେଣୁ ଏହା ଆମ ପାଇଁ ଏକ ଜାତୀୟ ତଥା ସ୍ମରଣୀୟ ଦିବସ ରୂପେ ପରିଗଣିତ । ଏହି ଦିବସକୁ ସାଧାରଣତନ୍ତ୍ର ଦିବସ, ଜନରାଜ୍ୟ ଦିବସ ଅବା ଗଣତନ୍ତ୍ର ଦିବସ ଭାବେ ଅଭିହିତ କରାଯାଇଥାଏ । ଗଣତନ୍ତ୍ର ଲୋକଶକ୍ତିର ପରିଚାୟକ । ଗ୍ରୀକ୍ ଶବ୍ଦ Democracyରୁ ଗଣତନ୍ତ୍ରର ଉତ୍ପତ୍ତି । Demosମାନେ ଗଣ ଏବଂ Kratasମାନେ କ୍ଷମତା । ବିଶିଷ୍ଟ ରାଜନୀତିଜ୍ଞ ତଥା ଆମେରିକାର ଭୂତପୂର୍ବ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନଙ୍କ ମତରେ Democracy is the form of Government which is of the people, by the people and for the people ଅର୍ଥାତ୍ ଗଣତନ୍ତ୍ର ଶାସନ ଲୋକମାନଙ୍କର, ଲୋକମାନଙ୍କଦ୍ୱାରା ଏବଂ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଅଟେ । ଖ୍ରୀ:ପୂ: ୫ମ ଶତାବ୍ଦୀରୁ ଗଣତନ୍ତ୍ରର ପଦଚିହ୍ନ ପୃଥିବୀରେ ଦେଖିବାକୁ ମିଳିଥିଲେ ମଧ୍ୟ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜତନ୍ତ୍ର ଶାସନ ତା'ର ପ୍ରାଧାନ୍ୟ ବିସ୍ତାର କରିଥିଲା । ଜନ୍ ମିଲଟନ୍, ରୁଷୋ, ମଣ୍ଟେସ୍କ୍ୟୁ, ମହାତ୍ମା ଗାନ୍ଧୀ ପ୍ରଭୃତି ମନିଷୀଗଣ ବିଶ୍ୱରେ ଗଣତାନ୍ତ୍ରିକ ଚିନ୍ତାଧାରାର ପ୍ରଚାର ଓ ପ୍ରସାର ପାଇଁ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ ।

ଆଧୁନିକ ଯୁଗକୁ ଗଣତନ୍ତ୍ରର ଯୁଗ ରୂପେ ଅଭିହିତ କରାଯାଏ । ଆଧୁନିକ ଯୁଗର ପ୍ରତିନିଧିମୂଳକ ଗଣତନ୍ତ୍ର ଅଧିକ ଲୋକପ୍ରିୟତା ହାସଲ କରିଛି । ସାବାଳକ ଭୋଟ ପ୍ରଥା ଏହାର ଅନ୍ୟତମ ବିଶେଷତ୍ୱ । ଗଣତନ୍ତ୍ର ଶାସନରେ ସ୍ୱେଚ୍ଛାଚାରିତା ନାହିଁ । ଜନସାଧାରଣଙ୍କ ହୃଦୟକୁ ଜୟ କରି ନପାରିଲେ ଗଣତନ୍ତ୍ର ଶାସନ ତିଷ୍ଠି ରହିବା ଅସମ୍ଭବ । 'ବହୁଜନ ହିତାୟ ଓ ବହୁଜନ ସୁଖାୟ' - ଗଣତନ୍ତ୍ରର ମୂଳମନ୍ତ୍ର ଅଟେ । ସମାଜର ସବୁ ଶ୍ରେଣୀର ଲୋକଙ୍କୁ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପ୍ରଦାନ କରିବାପାଇଁ ଗଣତନ୍ତ୍ର ବଦ୍ଧପରିକର । ଜାତୀୟ ଚରିତ୍ର ଗଠନରେ ଗଣତନ୍ତ୍ରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସାମାଜିକ ଜୀବନକୁ ନିର୍ମଳ ଓ ଦୁର୍ନୀତିମୁକ୍ତ କରିବା ପାଇଁ ଏହା ଅନେକାଂଶରେ ସହାୟକ ହୋଇଥାଏ । ଗଣତନ୍ତ୍ର ନଥିଲେ ବ୍ୟକ୍ତି ସ୍ୱାଧୀନତା ନଥାନ୍ତା । ଗଣତନ୍ତ୍ର ଶାସନ ବ୍ୟକ୍ତି ସ୍ୱାଭିମାନର ପ୍ରତୀକ ସ୍ୱରୂପ । ତେଣୁ ଉତ୍କଳମଣି ଗୋପବନ୍ଧୁ ଦାସ କହିଥିଲେ,

ସ୍ୱାଧୀନତା ମାନବର ଜନ୍ମ ଅଧିକାର  
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର  
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି  
ଚାରି ସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।

ସ୍ୱାଧୀନତା ଦ୍ୱାରା ପ୍ରତ୍ୟେକ ନାଗରିକ ନିଜର ଅଧିକାର ଓ କର୍ତ୍ତବ୍ୟ ପ୍ରତି ସଚେତନ ହୋଇପାରିବ । ବ୍ୟକ୍ତିର ରାଜନୈତିକ ସଚେତନତା ଲୋକ ପ୍ରତିନିଧିମାନଙ୍କୁ ଜନ ବିରୋଧୀ କାର୍ଯ୍ୟରୁ ବିରତ କରେ । ସେଥିପାଇଁ କୁହାଯାଏ - Eternal vigilance is the price of liberty. ବ୍ୟକ୍ତି ସ୍ୱାଧୀନତାର ସୁରକ୍ଷା ପାଇଁ ଗଣତନ୍ତ୍ର ଶାସନରେ ନ୍ୟାୟାଳୟଗୁଡ଼ିକୁ ଅବାଧ ଓ ନିରପେକ୍ଷ ଭାବରେ କାମ କରିବା ନିମନ୍ତେ ସୁଯୋଗ ଦେବା ଉଚିତ୍ । ସେହିପରି ଭାବେ ସମ୍ବାଦପତ୍ରଗୁଡ଼ିକ କୌଣସି ଗୋଷ୍ଠୀ ବା ବ୍ୟକ୍ତି ହାତରେ କ୍ରୀଡ଼ନକ ନସାଜି ସରକାରୀ କଳର ଦୋଷ ଦୁର୍ବଳତାକୁ ପଦାରେ ପକାଇବା ଉଚିତ । ତେଣୁ ସମ୍ବାଦପତ୍ର ଓ ଗଣମାଧ୍ୟମ ଗଣତନ୍ତ୍ରର ସଫଳତା ପାଇଁ ଅତ୍ୟନ୍ତ ଅପରିହାର୍ଯ୍ୟ ।

ଆମ ଦେଶର ଗଣତନ୍ତ୍ର ବହୁ ଉତ୍‌ଥାନ ପତନ ମଧ୍ୟ ଦେଇ ଗତିକରି ଚାଲିଛି । ପ୍ରତିବର୍ଷ ଜାନୁଆରୀ ୨୬ ତାରିଖରେ ହିମାଚଳଠାରୁ କୁମାରିକା ଯାଏଁ ପ୍ରତ୍ୟେକ ଜନସାଧାରଣ ଏହାକୁ ମହାଆଡ଼ମ୍ବରରେ ପାଳନ କରିଥାଆନ୍ତି । ବିଶେଷକରି ରାଜଧାନୀ ଦିଲ୍ଲୀରେ ଏହା ମହାସମାରୋହରେ ପାଳିତ ହୋଇଥାଏ । ଜଳ, ସ୍ଥଳ ଓ ବାୟୁସେନା ପକ୍ଷରୁ ଇଣ୍ଡିଆ ଗେଟ୍‌ଠାରେ ରାଷ୍ଟ୍ରପତିଙ୍କୁ ଅଭିବାଦନ ଦିଆଯାଏ । କେବଳ ଭାରତର ରାଜଧାନୀ ଦିଲ୍ଲୀରେ ନୁହେଁ, ଭାରତର ବିଭିନ୍ନ ରାଜ୍ୟର ରାଜଧାନୀ, ରାଜ୍ୟରେ ଥିବା ଜିଲ୍ଲାଗୁଡ଼ିକର ସଦର ମହକୁମା, ବିଭିନ୍ନ ସରକାରୀ କାର୍ଯ୍ୟାଳୟ ଏବଂ ଶିକ୍ଷାନୁଷ୍ଠାନମାନଙ୍କରେ ଏହି ଦିବସ ପାଳନ କରାଯାଏ । ଶିକ୍ଷାନୁଷ୍ଠାନଗୁଡ଼ିକରେ ପ୍ରଭାତଫେରି, ପତାକା ଉତ୍ତୋଳନ ଓ ଜାତୀୟ ସଙ୍ଗୀତ ଗାନ କରାଯାଏ ।

ଏହି ପବିତ୍ର ଦିବସରେ ଦେଶବାସୀ ଜାତୀୟ ପତାକାତଳେ ଦେଶ ଓ ଜାତିର ଉନ୍ନତିକଳ୍ପେ ଶପଥ ନେଇଥାନ୍ତି । ଏହା ଦେଶବାସୀଙ୍କ ପାଇଁ ଆତ୍ମ ସମୀକ୍ଷା ଓ ସଂକଳ୍ପର ଦିବସ ଅଟେ । ଆମେ ଯଦି ଆମର ସମ୍ବିଧାନ, ଜାତୀୟ ପତାକା, ଜାତୀୟ ସଂଗୀତ ଓ ଆମ ମାତୃଭୂମି ପ୍ରତି ଅତୁଟ ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରିପାରିବା ତେବେ ଏ ଦିବସର ମହତ୍ତ୍ୱ ଓ ମର୍ଯ୍ୟାଦା ନିଶ୍ଚୟ ବୃଦ୍ଧି ପାଇବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଘର ନଂ- ଏମ୍.ଆଇ.ଜି. : ୧,୨୦/୪  
ହାଉସିଂ ବୋର୍ଡ଼ କଲୋନୀ  
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୧୬

---



# ବ୍ୟକ୍ତିଗତ ସତ୍ୟାଗ୍ରହ ଓ ମହତାବ

ଡକ୍ଟର ସୋମା ଚାନ୍ଦ

**ଭା**ରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ, ସଂଗ୍ରାମୀ ତଥା ସଂଗ୍ରାମର ପରିପୂର୍ଣ୍ଣତାରେ ସୁରଭିତ । ଏଥିରେ ଭରି ରହିଛି ତ୍ୟାଗ ଓ ଦେଶପ୍ରୀତିର ସୌରଭ । ଅସୁମାରୀ ସଂଗ୍ରାମୀଙ୍କ ତିତିକ୍ଷା, ଆତ୍ମୋତ୍ସର୍ଗ ମନୋବୃତ୍ତି ହିଁ ଏହି ସଂଗ୍ରାମକୁ ରଶ୍ମିମନ୍ତ ଓ ଗୌରବୋଜ୍ଜ୍ୱଳ କରିଛି । ଆଜିର ଆଲୋଚ୍ୟ ସଂଗ୍ରାମୀ ଓଡ଼ିଶାର ଅପ୍ରତିଦ୍ୱନ୍ଦୀ ଜନନାୟକ ଡକ୍ଟର ହରେକୃଷ୍ଣ ମହତାବ ନିଜର କର୍ତ୍ତବ୍ୟନିଷ୍ଠା ତଥା ଆତ୍ମନିବେଦନର ମନୋବୃତ୍ତି ମାଧ୍ୟମରେ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ନିଜ ପାଇଁ ଏକ ବିଶେଷ ସ୍ଥାନ ସୃଷ୍ଟି କରିପାରିଛନ୍ତି । ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ଅଧ୍ୟାୟରେ ନିଜର ବଳିଷ୍ଠ ଭୂମିକା ପାଳନ କରି ରାଜ୍ୟ ତଥା ଜାତୀୟ ସ୍ତରରେ ସେ ଚିର ଭାସ୍ୱର ରହିଛନ୍ତି । ଆଜିର ପ୍ରବନ୍ଧଟିରେ ତାଙ୍କର ବ୍ୟକ୍ତିଗତ ସତ୍ୟାଗ୍ରହର ଭୂମିକା ଉପରେ ଆଲୋକପାତ କରାଯାଇଛି ।

୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ହେବା ପରେ ସ୍ୱାଧୀନତା ସଂଗ୍ରାମ ଏକ ନିର୍ଦ୍ଦିଷ୍ଟ ରୂପରେଖ ନେବାକୁ ଆରମ୍ଭ କରିଥିଲା । ଜାତୀୟ କଂଗ୍ରେସର ପ୍ରଥମାବସ୍ଥାରେ ଉଦାରବାଦୀ ନେତାଙ୍କ ପ୍ରାଧାନ୍ୟ ଥିବା ବେଳେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଚରମପନ୍ଥୀ ନେତାମାନେ କଂଗ୍ରେସରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । କିନ୍ତୁ ୧୯୧୯ ମସିହାରେ ଭାରତୀୟ ରାଜନୀତିରେ ଗାନ୍ଧୀଙ୍କର ଆବିର୍ଭାବ ସଂଗ୍ରାମର ଧାରାରେ ଆଣିଥିଲା ଏକ ଅଭିନବ ସୂଚନା ।

ତାଙ୍କର ଦୁଇଟି ନେତିବାଚକ ଅସ୍ତ୍ର ଅର୍ଥାତ୍ ଅହିଂସା ଓ ଅସହଯୋଗ ମାଧ୍ୟମରେ ସେ ଏକ ଅସ୍ତିବାଚକ ଫଳପ୍ରାପ୍ତି ଅର୍ଥାତ୍ ସ୍ୱାଧୀନତା ଲାଭର ଆଶା ରଖିଥିଲେ । ଏହି ଦୁଇଟି ଆୟୁଧକୁ ଭିତ୍ତି କରି ସେ ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ଆଣିଥିଲେ ନୂତନ ଉନ୍ମାଦନା ଓ ନବ ଅନୁପ୍ରେରଣା । ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ ଏହି ପୃଷ୍ଠଭୂମିରେ ଉଦ୍‌ଘାଟିତ ହୋଇଥିଲା । କିନ୍ତୁ ଅସହଯୋଗରେ ଲୋକେ ହିଂସାର ଆଶ୍ରୟ ନେବାରୁ ଗାନ୍ଧିଜୀ ଆନ୍ଦୋଳନକୁ ସ୍ଥଗିତ ରଖିଥିଲେ । ପରବର୍ତ୍ତୀ ସମୟରେ ପୁନଶ୍ଚ ଲବଣ ଆଇନକୁ ଭିତ୍ତିକରି ସେ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିଥିଲେ ।

ସ୍ୱାଧୀନତା ସଂଗ୍ରାମର ଏହି ପ୍ରମୁଖ ଘଟଣାବଳୀଗୁଡ଼ିକ ଊଣାଅଧିକ ପ୍ରାୟ ସମସ୍ତଙ୍କୁ ଜଣା । କିନ୍ତୁ ଆଜିର ଆଲୋଚ୍ୟ ବିଷୟ ବ୍ୟକ୍ତିଗତ ସତ୍ୟାଗ୍ରହ ସ୍ୱାଧୀନତା ସଂଗ୍ରାମର ଏକ ବଳିଷ୍ଠ ଅଧ୍ୟାୟ ହୋଇଥିଲେ ମଧ୍ୟ ଏହା ସୀମିତ ବିସ୍ତୃତି ହେତୁ ଅଦ୍ୟାବଧି ବିଶେଷ ଆଲୋଚିତ ହୋଇ ନାହିଁ । ଏହି ସତ୍ୟାଗ୍ରହ କିନ୍ତୁ ନିଜସ୍ୱ ପ୍ରଭାବରେ ଅମଳିନ । ତତ୍କାଳୀନ ଅନ୍ୟତମ ବିଶିଷ୍ଟ ସତ୍ୟାଗ୍ରହରେ ଏକ ବିଶିଷ୍ଟ ଗାନ୍ଧୀବାଦୀ କଂଗ୍ରେସ ନେତା ହରେକୃଷ୍ଣ ମହତାବ ଏହି ଭୂମିକା ଗ୍ରହଣ କରିଥିଲେ ।

ବ୍ୟକ୍ତିଗତ ସତ୍ୟାଗ୍ରହର ସମୟ ଥିଲା ୧୯୪୦ ଓ ୧୯୪୧ ମସିହା । ଅର୍ଥାତ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର ଘଟଣା ଓ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନର ପୂର୍ବବର୍ତ୍ତୀ ସମୟ । ୧୯୩୯ ମସିହା ସେପ୍ଟେମ୍ବର ୩  ତାରିଖରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ଇଉରୋପରେ ଯୁଦ୍ଧ ଆରମ୍ଭ ହୋଇଥିଲେ ମଧ୍ୟ ଏହାର ପ୍ରଭାବ ସାରା ବିଶ୍ୱରେ ଏବଂ ବିଶେଷ କରି ଭାରତରେ ଅନୁଭୂତ ହୋଇଥିଲା । ଏହାର କାରଣ ଅବଶ୍ୟ ସମସ୍ତଙ୍କୁ ଜଣା । ଇଂଲଣ୍ଡ ଯୁଦ୍ଧରେ ମିତ୍ରଶକ୍ତିର ଏକ ପ୍ରମୁଖ ସଦସ୍ୟ ହୋଇଥିବାରୁ ଇଂଲଣ୍ଡ ଅଧୀନସ୍ଥ ଉପନିବେଶଗୁଡ଼ିକ ପରୋକ୍ଷ ଭାବରେ ଯୁଦ୍ଧରେ ସାମିଲ ହୋଇଥିଲେ । ଭାରତକୁ ମଧ୍ୟ ସେହି ଦଶା ଭୋଗ କରିବାକୁ ପଡ଼ିଥିଲା । ଗାନ୍ଧୀ ମଧ୍ୟ ୧୯୪୦ ମସିହା ଜାନୁଆରୀ ୧ ତାରିଖରେ ଘୋଷଣା କରିଥିଲେ ଯେ 'ବ୍ରିଟିଶମାନଙ୍କର ଧ୍ୱଂସସ୍ତୂପ ଉପରେ ଭାରତୀୟମାନେ ନିଜର ସ୍ୱାଧୀନତା ଚାହାନ୍ତି ନାହିଁ ।'

ତତ୍କାଳୀନ ଭାଇସ୍‌ରାୟ ଲର୍ଡ଼ ଲିନ୍‌ଲିଥ୍‌ଗୋ ସେହିପରି ଭାରତୀୟମାନଙ୍କ ସହଯୋଗ ଲାଭ କରିବା ଉଦ୍ଦେଶ୍ୟରେ ଅଗଷ୍ଟ ଆଠ ତାରିଖରେ ଭାରତୀୟମାନଙ୍କ ପାଇଁ 'ଅଗଷ୍ଟ ଅଫର' ପ୍ୟାକେଜ୍‌ର ଘୋଷଣା କଲେ ଯାହା କୌଣସି କଂଗ୍ରେସ ନେତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ଗାନ୍ଧୀ ମଧ୍ୟ ଏହି ଘୋଷଣାକୁ ସ୍ୱାଗତ କରିନଥିଲେ ଓ ଏଥିରେ ନିହିତ ଥିବା ବିଭିନ୍ନ ପଦକ୍ଷେପଗୁଡ଼ିକୁ ଗ୍ରହଣ କରିନଥିଲେ । ତେଣୁ ବ୍ରିଟିଶ ଶକ୍ତିକୁ ଠିକ୍ ଦିଗ୍‌ଦର୍ଶନ ଦେବା ପାଇଁ ସେ ଏକ ନୂତନ ପ୍ରକାର ସତ୍ୟାଗ୍ରହର ସୂଚନା ଦେଇଥିଲେ । ଯାହା ବ୍ୟକ୍ତିଗତ ସତ୍ୟାଗ୍ରହ ନାମରେ ପରିଚିତ । ଏଥିରେ ଜନସାଧାରଣ ସଂପୃକ୍ତ ରହୁ ନଥିଲେ । ବରଂ ଏହି





ସତ୍ୟାଗ୍ରହ କେବଳ ନିର୍ଦ୍ଦିଷ୍ଟ ମନୋନୀତ ବ୍ୟକ୍ତିଙ୍କ ମଧ୍ୟରେ ସୀମିତ ଥିଲା । ଏହି ଦୃଷ୍ଟିରୁ ବିନୋବାଭାବେ ଥିଲେ ସର୍ବପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହୀ । ସେ ଅକ୍ଟୋବର ୨୧ ତାରିଖରେ ଗିରଫ ହେବା ପରେ ଅକ୍ଟୋବର ୩୧ରେ ଜବାହରଲାଲ ନେହେରୁ, ନଭେମ୍ବର ୧୭ରେ ବଲ୍ଲଭଭାଇ ପଟେଲ, ଡିସେମ୍ବର ୧ ତାରିଖରେ ହରେକୃଷ୍ଣ ମହତାବ ଏବଂ ୧୯୪୧ ମସିହା ଜାନୁଆରୀ ତିନି ତାରିଖରେ ମୌଲାନା ଅବଦୁଲ କାଲାମ ଆଜାଦ ଗିରଫ ହୋଇଥିଲେ ।

ମହତାବଙ୍କ ପାଇଁ ଏଇ ସତ୍ୟାଗ୍ରହର ପ୍ରସ୍ତୁତି ଆରମ୍ଭ ହୋଇଥିଲା ୧୯୪୦ ମସିହା ଅପ୍ରେଲ ମାସରୁ । ସତ୍ୟାଗ୍ରହ ବିଷୟରେ ସମସ୍ତଙ୍କୁ ଅବଗତ କରାଇବା ପାଇଁ ବରୀରେ ସ୍ୱେଚ୍ଛାସେବୀଙ୍କର ଏକ ପ୍ରଶିକ୍ଷଣ କ୍ୟାମ୍ପ ହୋଇଥିଲା । ଉତ୍କଳ ପ୍ରଦେଶ କଂଗ୍ରେସ କମିଟିକୁ ଭାଙ୍ଗି ଦିଆଯାଇ ଏହା ସ୍ଥାନରେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ କମିଟି ଗଠନ କରାଯାଇଥିଲା । ଜିଲ୍ଲାସ୍ତରୀୟ କମିଟିଗୁଡ଼ିକୁ ମଧ୍ୟ ସତ୍ୟାଗ୍ରହ କମିଟିରେ ରୂପାନ୍ତରିତ କରାଗଲା । ମହତାବ ଓ ତାଙ୍କର ବିଶିଷ୍ଟ ଅନୁଗାମୀବୃନ୍ଦ ଯଥା- ଗୌରଚନ୍ଦ୍ର ଦାସ, ଗୌରାଙ୍ଗ ଚରଣ ମହାନ୍ତି ପ୍ରଭୃତି ବାଲେଶ୍ୱର ଜିଲ୍ଲାର ଦୂରଦୂରାନ୍ତକୁ ଯାଇ ଜନସାଧାରଣଙ୍କୁ ସତ୍ୟାଗ୍ରହୀ ହେବା ପାଇଁ ନିବେଦନ କରିଥିଲେ ।

୧୯୪୦ ମସିହା ମେ ମାସରେ ମହତାବ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ବାଲେଶ୍ୱର ଜିଲ୍ଲା ଓ ଭଦ୍ରକ ସବ୍‌ଡିଭିଜନର ବହୁସ୍ଥାନରେ ଜନସଚେତନତା ପାଇଁ ସତ୍ୟାଗ୍ରହ କେନ୍ଦ୍ରମାନ ସ୍ଥାପନ କରାଯାଇଥିଲା ଓ ବିଭିନ୍ନ ସଭାସମିତିରେ ମହତାବ, ଗାନ୍ଧୀଙ୍କ ରଚନାତ୍ମକ କାର୍ଯ୍ୟସୂଚୀ ଉପରେ ବିଶେଷ ଭାବରେ ଆଲୋକପାତ କରିଥିଲେ ।

ନିଜର ଜନ୍ମସ୍ଥାନ ଆଗରପଡ଼ା ଗ୍ରାମରେ ମହତାବ ୱାର୍ଦ୍ଧା ପ୍ରଣାଳୀରେ ସୂତାକଟା ଓ ଖଦଡ଼ ବୁଣା ପ୍ରଚଳନ କରିଥିଲେ । ଗାନ୍ଧୀଙ୍କ ବାର୍ତ୍ତା ସମ୍ବଳିତ ପ୍ରଚାରପତ୍ର ଲୋକମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଥିଲା ଏବଂ ଏଥିରେ ସତ୍ୟାଗ୍ରହ ପାଇଁ ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବାର ପ୍ରୟାସ ଜାରି ରହିଥିଲା । ଏହି ସମୟରେ ମହତାବଙ୍କ ଲିଖିତ 'ରଣଭେରୀ' ପ୍ରଚାରପତ୍ର ଲୋକଙ୍କ ମଧ୍ୟରେ ବଣ୍ଟା ଯାଇଥିଲା । 'ରଣଭେରୀ'ର ବିଷୟବସ୍ତୁ ଥିଲା ଯେ ଭାରତୀୟମାନେ ଯୁଦ୍ଧ ସମୟରେ ସାବଧାନ ରହିବା ଉଚିତ । ସେମାନେ ଇଂରେଜ କର୍ତ୍ତୃପକ୍ଷଙ୍କୁ ଯୁଦ୍ଧ କର ଦେବେ ନାହିଁ । ଏହି ଗୋରା ସରକାରଙ୍କୁ ବିତାଡ଼ିତ କରିବା ପାଇଁ ସେମାନେ ପ୍ରତ୍ୟେକ ଗ୍ରାମରେ 'ଯୁବ ସ୍ୱେଚ୍ଛାସେବୀ ବାହିନୀ' ଗଠନ କରିବା ଉଚିତ । ନିଜ ଭିତରୁ ଭୟଭାବ ଦୂର କରି ପ୍ରତ୍ୟେକ ଭାରତୀୟ ଦେଶ ପାଇଁ ଆଗେଇ ଆସିବା ବିଧେୟ । ସର୍ବୋପରି ଲାଲ ପଗଡ଼ିଆ ଅର୍ଥାତ୍ ପୋଲିସ୍ ପାଖରୁ ନିଜକୁ ଦୂରେଇ ରଖିବେ ।

ଲୋକମାନଙ୍କୁ ସତ୍ୟାଗ୍ରହ ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ କରାଯାଉଥିବା ବେଳେ ୧୯୪୦ ମସିହା ଅଗଷ୍ଟ ମାସରେ ୱାର୍ଦ୍ଧାରେ କଂଗ୍ରେସ କାର୍ଯ୍ୟକାରିଣୀ କମିଟିର ବୈଠକ ବସିଥିଲା । ଏହା ୧୮ ତାରିଖରୁ ୨୩ ତାରିଖ ପର୍ଯ୍ୟନ୍ତ ଚାଲିଲା । ଏହି ବୈଠକରେ ଭାରତର ସ୍ୱାଧୀନତା ଲାଭ କରିବା ପାଇଁ ଏକ ନୂତନ ପ୍ରକାର ସତ୍ୟାଗ୍ରହ ଆୟୋଜନ କରିବାର ପ୍ରସ୍ତାବ ରହିଥିଲା । ୱାର୍ଦ୍ଧାରୁ ଫେରିବା ପରେ ମହତାବ କାର୍ଯ୍ୟକାରିଣୀ କମିଟିର ପ୍ରସ୍ତାବ ଓ ଗାନ୍ଧୀଙ୍କ ବାର୍ତ୍ତାକୁ ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ସାଧାରଣ ସଭାମାନ ଆୟୋଜନ କରିଥିଲେ । ଅଧିକନ୍ତୁ ତିନିପ୍ରକାର ପ୍ରଚାରପତ୍ର ମଧ୍ୟ ବଣ୍ଟନ କରାଯାଇଥିଲା ।

- ଗୋଟିଏ ପ୍ରଚାରପତ୍ରରେ ମହତାବ ଆଗାମୀ ସତ୍ୟାଗ୍ରହର ସୂଚନା ଦେଇ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ ।
- ଅନ୍ୟ ପ୍ରଚାରପତ୍ରଟି ନିଖିଳ ଭାରତ କଂଗ୍ରେସ କମିଟିର ବାଧ୍ୟତାମୂଳକ ଯୁଦ୍ଧକର ନଦେବା ପାଇଁ ଆଦେଶର ଓଡ଼ିଆ ଅନୁବାଦ ଥିଲା ।
- ଅନ୍ୟଟି କାର୍ଯ୍ୟକାରିଣୀ କମିଟିର ନୋଟିସ୍ ଥିଲା, ଯେଉଁଥିରେ ସଂଗ୍ରାମ ପାଇଁ ଲୋକଙ୍କୁ ପ୍ରସ୍ତୁତ ରହିବାକୁ କୁହାଯାଇଥିଲା ।

ଏହାପରେ ସାରା ରାଜ୍ୟରେ ଯୁଦ୍ଧ ବିରୋଧୀ ମନୋଭାବକୁ ପ୍ରବଳ କରାଇବା ପାଇଁ କଂଗ୍ରେସ କର୍ମୀମାନେ ତତ୍ପର ରହିଲେ । ସେପ୍ଟେମ୍ବର ୨୭ ତାରିଖରେ ହରେକୃଷ୍ଣ ମହତାବ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର କାର୍ଯ୍ୟକାରିଣୀ କମିଟିର ଡାଇରେକ୍ଟର ଭାବେ ନିଯୁକ୍ତ ହୋଇଥିଲେ । ଏହି ସମୟରେ ତାଙ୍କ ତତ୍ତ୍ୱାବଧାନରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତର ଭୂମିକା କଣ ହେବା ଉଚିତ ତାହା ଲୋକଙ୍କୁ ବୁଝାଯାଉଥିଲା । ଏହି ଯୁଦ୍ଧରେ ଭାରତ ପରୋକ୍ଷରେ ସଂପୃକ୍ତ ହେଲେ କ୍ଷତି ଛଡ଼ା ଲାଭ ନାହିଁ ତାହା ମଧ୍ୟ କୁହାଗଲା । ଅକ୍ଟୋବର ୨୦ ତାରିଖରେ ଏହି ପ୍ରସଙ୍ଗରେ ମହତାବ 'ସମାଜ' ସମ୍ବାଦପତ୍ରରେ । 'ଆମର କର୍ତ୍ତବ୍ୟ' ଶିରୋନାମାରେ ଗୋଟିଏ ବିଶେଷ ନିବନ୍ଧ ପ୍ରକାଶ କରିଥିଲେ ଯେଉଁଥିରେ ସିଏ ଗାନ୍ଧୀ ଆଦର୍ଶବାଦ, ରଚନାତ୍ମକ କର୍ମସୂଚୀ ଓ ସର୍ବୋପରି ସତ୍ୟାଗ୍ରହର ବିଭିନ୍ନ ଦିଗ ନେଇ ଆଲୋକପାତ କରିଥିଲେ । ଏହାଛଡ଼ା ଯୁଦ୍ଧର ପ୍ରଭାବରେ ଘଟୁଥିବା ବିପୁଳ କ୍ଷୟକ୍ଷତି ତଥା ସଭ୍ୟତାର ଅବକ୍ଷୟ ମଧ୍ୟ ଏହି ନିବନ୍ଧରେ ସ୍ଥାନ ପାଇଥିଲା । ମୋଟ ଉପରେ କହିବାକୁ ଗଲେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ପରେ ଏକ ନୂତନ ପ୍ରକାର ସତ୍ୟାଗ୍ରହ ପାଇଁ ଲୋକମାନଙ୍କୁ ମାନସିକ ଭାବେ ପ୍ରସ୍ତୁତ କରାଯିବାର ପ୍ରୟାସ ଏଥିରେ ଜାରି ରହିଥିଲା ।

ଏହି ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରଣାଳୀ ମଧ୍ୟ ଅନ୍ୟପ୍ରକାରର ଥିଲା । ଏଥିପାଇଁ ଗାନ୍ଧୀ ଜଣେ ଜଣେ ସତ୍ୟାଗ୍ରହୀଙ୍କୁ ମନୋନୀତ କରୁଥିଲେ । ତାଙ୍କ ପାଖରୁ ମନୋନୀତ ହେବା ପରେ ସତ୍ୟାଗ୍ରହୀ





ଜଣକ ନିଜ ଗ୍ରାମ ବା ଟାଉନକୁ ଯାଇ ଜନସାଧାରଣଙ୍କୁ ଏହା ଜଣାଉଥିଲେ । ଏହାପରେ ସେ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ଯାଇ ବିଧିବଦ୍ଧ ଭାବେ ଆଇନ ଅମାନ୍ୟ କରିବାର ଇଚ୍ଛା ପ୍ରକାଶ କରି ଲିଖିତ ଦରଖାସ୍ତ ଦେଉଥିଲେ । ସେଥିରେ ତାରିଖ, ସ୍ଥାନ ଓ ସମୟର ମଧ୍ୟ ନିର୍ଦ୍ଦିଷ୍ଟ କରାଯାଇଥିଲା । ତା'ପରେ ନିର୍ଦ୍ଦିଷ୍ଟ ଦିନ, ନିର୍ଦ୍ଦିଷ୍ଟ ସ୍ଥାନ ଓ ନିର୍ଦ୍ଦିଷ୍ଟ ସମୟରେ ସେ ଇଂରେଜ ସରକାରଙ୍କ ଯୁଦ୍ଧ ନୀତିକୁ ସମାଲୋଚନା କରି ଯୁଦ୍ଧକର ବିରୋଧୀ ବିଭିନ୍ନ ସ୍ଲୋଗାନ ଦେଉଥିଲେ । ଯୁଦ୍ଧଫଣ୍ଡକୁ ଟଙ୍କା ନଦେବା, ଯୁଦ୍ଧ ପାଇଁ ଭାରତରୁ କିଛି ନପଠାଇବା ମଧ୍ୟ ଏଥିରେ ସାମିଲ ଥିଲା । ଅବଶ୍ୟ ଏସବୁ କରିବା ପୂର୍ବରୁ ଗାନ୍ଧୀଙ୍କ ପାଖରେ ନିଜ ନାମ ନଥିଭୁକ୍ତ କରିବା ଜରୁରୀ ଥିଲା ।

ନଭେମ୍ବର ୨୦ ତାରିଖ ବେଳକୁ ସାରା ଭାରତର ବିଭିନ୍ନ ପ୍ରଦେଶରୁ ଗାନ୍ଧୀଙ୍କ ପାଖରେ ପ୍ରାୟ ଦେଢ଼ହଜାର ସତ୍ୟାଗ୍ରହୀଙ୍କ ନାମ ପହଞ୍ଚି ସାରିଥିଲା । ଓଡ଼ିଶାରୁ ସତେଇଶ ଜଣଙ୍କ ନାମ ଏହି ତାଲିକାରେ ଥିଲେ ମଧ୍ୟ ଗାନ୍ଧୀ ଏହି ତାଲିକାରୁ ହରେକୃଷ୍ଣ ମହତାବଙ୍କୁ ମନୋନୀତ କରିଥିଲେ ଓ ଡିସେମ୍ବର ୧ ତାରିଖ ଦିନ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ତାଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା । ସ୍ଥାନ ଓ ସମୟର ନିର୍ଦ୍ଦେଶ ମଧ୍ୟ ଏଥିରେ ଥିଲା । ସ୍ଥାନ ଥିଲା ବାଲେଶ୍ୱର ଜିଲ୍ଲାର ରେମୁଣା ଓ ସମୟ ଡିସେମ୍ବର ୧ ତାରିଖ ଅପରାହ୍ନ ୪ ଘଟିକା । ଉପରୋକ୍ତ ନିର୍ଦ୍ଦେଶ ଅନୁସାରେ ମହତାବ ଜିଲ୍ଲା ମାଜିଷ୍ଟ୍ରେଟଙ୍କ କାର୍ଯ୍ୟାଳୟକୁ ଯାଇ ସତ୍ୟାଗ୍ରହ ଆରମ୍ଭ କରିବାର ପ୍ରାକ୍ ସୂଚନା ମଧ୍ୟ ଦେଇଥିଲେ ।

ରେମୁଣା ବାଲେଶ୍ୱରଠାରୁ ପାଞ୍ଚ କି.ମି. ଦୂରରେ ଅବସ୍ଥିତ । ୧୯୪୦ ମସିହା ଡିସେମ୍ବର ୧ ତାରିଖରେ ଉତ୍ସାହୀ ସହକର୍ମୀଙ୍କ ଗହଣରେ ମହତାବ ସେଠାରେ ଯାଇ ପହଞ୍ଚିଲେ । ସ୍ଥାନ ଓ ସମୟ ପୂର୍ବରୁ ନିର୍ଦ୍ଧାରିତ ହୋଇଥିବାରୁ ପ୍ରାୟ ହଜାରେ ଖଣ୍ଡେ ଲୋକ ସେଠାରେ ସମବେତ ହୋଇଥିଲେ । ମହତାବଙ୍କ ମୁହଁରୁ ଗାନ୍ଧୀଙ୍କ ବାର୍ତ୍ତା ଶୁଣିବା ବ୍ୟତୀତ ଏକପ୍ରକାରର ନୂତନ ସତ୍ୟାଗ୍ରହ ଦେଖିବା ପାଇଁ ମଧ୍ୟ ସେମାନେ ଆଗ୍ରହୀ ଥିଲେ । ଆଚାର୍ଯ୍ୟ ହରିହର, ମୌଲବୀ ମହମ୍ମଦ ହନିଫ୍, ଗୋକୁଳାନନ୍ଦ ମହାନ୍ତି, କରୁଣାକର ପାଣିଗ୍ରାହୀ, ବିପିନ ବିହାରୀ ଦାସ, ଗୌର ମୋହନ ଦାସ ପ୍ରଭୃତି ଜିଲ୍ଲାର ବିଶିଷ୍ଟ କଂଗ୍ରେସ କର୍ମୀଗଣ ମଧ୍ୟ ସେଠାରେ ଉପସ୍ଥିତ ରହି ବ୍ୟକ୍ତିଗତ ସତ୍ୟାଗ୍ରହୀ ଶ୍ରୀ ମହତାବଙ୍କୁ ଉତ୍ସାହିତ କରୁଥିଲେ । ଜିଲ୍ଲା ପ୍ରଶାସନ ତରଫରୁ ଏସ୍.ଡି.ଓ. ପୋଲିସ ସୁପରିଟେଣ୍ଡେଣ୍ଟ ଓ ରିଜର୍ଭ ପୋଲିସ ଫୋର୍ସ ମଧ୍ୟ ଉକ୍ତ ସ୍ଥାନରେ ଉପସ୍ଥିତ ରହିଥିଲେ ।

ଚାରିଟା ବାଜିବାକୁ ପ୍ରାୟ ଦଶ ପନ୍ଦର ମିନିଟ୍ ଥିବାବେଳେ ମହତାବ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେଇଥିଲେ । ତାଙ୍କ ବକ୍ତବ୍ୟରେ ଅହିଂସା, ହିନ୍ଦୁ-ମୁସଲମାନ ଏକତା ଓ ଅସ୍ପୃଶ୍ୟତା ନିରୋଧ ଆଦି କଥା ସ୍ଥାନ ପାଇଥିଲା । ଠିକ୍ ଚାରିଟାବେଳେ ସେ ଯୁଦ୍ଧ ବିରୋଧୀ ସ୍ଲୋଗାନ ଦେଇଥିଲେ ଓ ଭାରତର ଯୁଦ୍ଧରେ ଯୋଗଦେବା କିପରି ଭାରତୀୟମାନଙ୍କ ପାଇଁ କ୍ଷତିକାରକ ତାହା ମଧ୍ୟ ସୂଚାଇ ଥିଲେ । ତେଣୁ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଅହିଂସା ମାଧ୍ୟମରେ ସତ୍ୟାଗ୍ରହ ଚାଲୁ ରଖିବାକୁ ସେ ଆହ୍ୱାନ ଦେଇଥିଲେ । ଏଥିପାଇଁ ସେ ବିଦେଶୀ ଦ୍ରବ୍ୟ ବର୍ଜନ, ଯୁଦ୍ଧ କର ବନ୍ଦ ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ସେଦିନ ଭାଷଣ ଦେବା ପରେ ମହତାବ ରେମୁଣାରୁ ବାଲେଶ୍ୱରକୁ ଫେରି ଆସିଥିଲେ । ପରଦିନ ସକାଳେ ବାଲେଶ୍ୱର କଂଗ୍ରେସ କମିଟି ଅଫିସରୁ ତାଙ୍କୁ ଗିରଫ କରାଯାଇଥିଲା । ଭାରତୀୟ ପ୍ରତିରକ୍ଷା ଆଇନର ୩୮(୫) ଧାରା ଅନୁଯାୟୀ ତାଙ୍କୁ ବର୍ଷକ ପାଇଁ କାରାଦଣ୍ଡ ଦିଆଗଲା । କଂଗ୍ରେସ ଜଣେ ପ୍ରତିଷ୍ଠିତ କର୍ମୀ ତଥା ବାଲେଶ୍ୱର ଜିଲ୍ଲାର ଜଣେ ଟାଣୁଆ ନେତା ହୋଇଥିବାରୁ ତାଙ୍କୁ ବାଲେଶ୍ୱର ଜେଲ୍‌ରେ କିଛି ଦିନ ରଖାଯାଇ ବ୍ରହ୍ମପୁର ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ସେଠାରୁ ସେ ୧୯୪୧ ମସିହା ଡିସେମ୍ବର ମାସରେ ଖଲାସ ହୋଇଥିଲେ ।

ବ୍ରହ୍ମପୁର ଜେଲରେ ଜଗନ୍ନାଥ ଦାସ, ବୋଧରାମ ଦୁବେ, ପ୍ରହ୍ଲାଦ ରାୟ, ନବକୃଷ୍ଣ ଚୌଧୁରୀ ଓ ଅନ୍ୟ କଂଗ୍ରେସ ନେତାଗଣ ମହତାବଙ୍କ ସହବନ୍ଦୀ ଥିଲେ । ଏହି ସମୟରେ ରାଜନୈତିକ ବନ୍ଦୀମାନେ ପୂର୍ବାପେକ୍ଷା ଅଧିକ ସୁଯୋଗ ସୁବିଧା ଭୋଗ କରିବାର ଅଧିକାର ପାଇଥିଲେ । ଜେଲ ଭିତରେ ତାସ ଖେଳିବା, ଖବରକାଗଜ ପଢ଼ିବା ଆଦି ସୁବିଧା ତାଙ୍କୁ ଏଥର ଦିଆଯାଇଥିଲା ।

୧୯୪୧ ମସିହା ଶେଷବେଳକୁ ବ୍ରିଟିଶ ସରକାର ବନ୍ଦୀ ସତ୍ୟାଗ୍ରହୀମାନଙ୍କ ପ୍ରତି କୋହଳ ମନୋଭାବ ପୋଷଣ କରିଥିଲେ । ଅବଶ୍ୟ ଏଥିପାଇଁ ଯୁଦ୍ଧର ପ୍ରଭାବ ଅନେକ ରହିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜାପାନର ପ୍ରବେଶ ଓ ମିତ୍ରଶକ୍ତି ଉପରେ ଜାପାନର ଆଧିପତ୍ୟ ଇଂରେଜମାନଙ୍କ ଭାରତୀୟ ଆଭିମୁଖ୍ୟରେ ଏହି ପରିବର୍ତ୍ତନ ଆଣିବାରେ ସହାୟକ ହୋଇଥିଲା ।

ଏହି ପୃଷ୍ଠଭୂମିରେ ୧୯୪୧ ମସିହା ଡିସେମ୍ବର ମାସରେ ଓଡ଼ିଶାର ପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହୀ ଡକ୍ଟର ହରେକୃଷ୍ଣ ମହତାବ ବ୍ରହ୍ମପୁର ଜେଲରୁ ଖଲାସ ହୋଇଥିଲେ । ତତ୍କାଳୀନ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇ ସେ ନିଜର ଜନ୍ମମାଟି ବାଲେଶ୍ୱରରେ ଆସି ପହଞ୍ଚିଥିଲେ । ସେଠାରେ ବିଭିନ୍ନ ସାଧାରଣ ସଭାରେ ସେ ଗାନ୍ଧୀଙ୍କ ଆଦର୍ଶ ଚିନ୍ତାଧାରା ଓ ଆଗାମୀ ସ୍ୱାଧୀନତାର ରୂପରେଖ ପ୍ରଦାନ କରିଥିଲେ । ଏହା ସହିତ ରାଜ୍ୟରେ ଅଧିଷ୍ଠିତ ଥିବା ମିଳିତ ମନ୍ତ୍ରିମଣ୍ଡଳର କର୍ମସୂଚୀକୁ ତୀବ୍ର ସମାଲୋଚନା କରି କେବଳ ଗାନ୍ଧୀ କର୍ମସୂଚୀ ଉପରେ ହିଁ ଗୁରୁତ୍ୱ ଆରୋପ କରିଥିଲେ ।

୧୯୪୦-୪୧ ମସିହାର ବ୍ୟକ୍ତିଗତ ସତ୍ୟାଗ୍ରହ ପରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଶେଷ ଅଙ୍କ ଉନ୍ମୋଚିତ ହୋଇଥିଲା





୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନରେ । ଯେକୌଣସି ବଡ଼କାମ ଆରମ୍ଭ କରିବା ପୂର୍ବରୁ ସାଧାରଣ ଭାବେ ଦରକାର ମାନସିକ ପ୍ରସ୍ତୁତି ଓ ତାତ୍ତ୍ୱିକ ସଚେତନତା । ଭାରତଛାଡ଼ ଆନ୍ଦୋଳନ ଏହି ଦୃଷ୍ଟିରୁ ଏକ ସର୍ବଭାରତୀୟ ଆନ୍ଦୋଳନ ହୋଇଥିବାବେଳେ ବ୍ୟକ୍ତିଗତ ସତ୍ୟାଗ୍ରହ ଏକ ନିର୍ଦ୍ଦିଷ୍ଟ ପରିସୀମା ଭିତରେ ସୀମିତ ଥିଲା । କିନ୍ତୁ ଏହି ସୀମିତ ବିସ୍ତୃତି ଭିତରେ ଏହାର ବ୍ୟାପ୍ତି ଥିଲା ଅପରିସୀମ । ନେତାମାନଙ୍କ ବ୍ୟକ୍ତିଗତ ସତ୍ୟାଗ୍ରହରେ ଅଂଶଗ୍ରହଣ ଓ ବ୍ରିଟିଶ ଯୁଦ୍ଧନୀତି ସମାଲୋଚନା ଲୋକମାନଙ୍କୁ ପରୋକ୍ଷରେ ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ଯଥେଷ୍ଟ ପ୍ରଭାବିତ କରିଥିଲା । ୧୯୪୧ ମସିହା ଜୁନ୍ ମାସ ସୁଦ୍ଧା ସର୍ବଭାରତୀୟ ସ୍ତରରେ ବନ୍ଦୀ ସଂଖ୍ୟା ଥିଲା ପ୍ରାୟ କୋଡ଼ିଏ ହଜାର ଏବଂ ଡିସେମ୍ବର ଶେଷ ସୁଦ୍ଧା ସେମାନେ ସମସ୍ତେ ଖଲାସ ହୋଇ ସାରିଥିଲେ ।

କିନ୍ତୁ ରାଜ୍ୟର ପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହୀ ଭାବେ ମହତାବ କଂଗ୍ରେସ ଦଳରେ ନିଜ ପାଇଁ ଏକ ବିଶିଷ୍ଟ ସ୍ଥାନ ସୃଷ୍ଟି କରିପାରିଥିଲେ । ଏପରିକି ୧୯୪୦-୪୧ ମସିହାରେ କଂଗ୍ରେସ କାର୍ଯ୍ୟକାରିଣୀ କମିଟି ସଭ୍ୟ ନଥାଇ ମଧ୍ୟ ସିଏ ରାଜ୍ୟକୁ ପ୍ରତିନିଧିତ୍ୱ କରିବା ପାଇଁ କଂଗ୍ରେସ ସଭାକୁ ଆମନ୍ତ୍ରିତ ହୋଇଥିଲେ । ଅଧିକନ୍ତୁ ପ୍ରଦେଶ କଂଗ୍ରେସ କମିଟି ଓ ନିଖିଳ ଭାରତ କଂଗ୍ରେସ କମିଟିର ସେ ଏକ ପ୍ରଧାନ ଯୋଗସୂତ୍ର ଥିଲେ । ଗାନ୍ଧୀଙ୍କ ସହ ତାଙ୍କର ଘନିଷ୍ଠ ସମ୍ପର୍କ, ଗାନ୍ଧୀବାଦ ପ୍ରତି ଆତ୍ମୀୟତା, ଗାନ୍ଧୀ ଆଦର୍ଶ ପ୍ରତି ଅକୁଣ୍ଠ ସହଯୋଗ ତାଙ୍କୁ ଏଥିପାଇଁ ବିଶେଷ ଭାବରେ ସାହାଯ୍ୟ କରିଥିଲା ।

ଜାପାନ ୧୯୪୧ ମସିହା ଡିସେମ୍ବର ୭ ତାରିଖ ପାର୍ଲ ହାର୍‌ବରରେ ବୋମାମାଡ଼ କଲାବେଳକୁ ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରାୟ ସମାପ୍ତି ଘଟି ସାରିଥିଲା ଓ କଂଗ୍ରେସ କର୍ମୀମାନେ ଗାନ୍ଧୀଙ୍କ ନେତୃତ୍ୱରେ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହୀର ଅଭିଜ୍ଞତା ମହତାବଙ୍କୁ ରାଜନୈତିଜ୍ଞ ଭାବେ ଆହୁରି ବୁଦ୍ଧିମନ୍ତ କରି ଭବିଷ୍ୟତ ପାଇଁ ପ୍ରସ୍ତୁତ କରିଥିଲା । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଏହି ସଞ୍ଚିତ ଅଭିଜ୍ଞତା ହିଁ ତାଙ୍କୁ ନବଉତ୍କଳର ରୂପକାର ଭାବେ ପ୍ରତିଫଳିତ କରିଥିଲା । ସିଏ ଯାହା ହେଉନା କାହିଁକି ଓଡ଼ିଶାରୁ ପ୍ରଥମ ବ୍ୟକ୍ତିଗତ ସତ୍ୟାଗ୍ରହୀ ଭାବେ ଶ୍ରୀ ହରେକୃଷ୍ଣ ମହତାବ ନିଜର ପ୍ରାକ୍-ସ୍ୱାଧୀନ କର୍ମମୟ ଜୀବନରେ ନିଜ ପାଇଁ ତଥା ରାଜ୍ୟ ପାଇଁ ବିଶେଷ ଫଳପ୍ରସୂ ହୋଇପାରିଥିଲେ । ଏହା ତାଙ୍କ ଭବିଷ୍ୟତ କର୍ମକାଣ୍ଡ ପାଇଁ ମଧ୍ୟ ବିଶେଷ ସହାୟକ ହୋଇଥିଲା ।

ପ୍ରାଧ୍ୟାପିକା, ଇତିହାସ ବିଭାଗ
ରେଭେନ୍‌ସା କଲେଜ, କଟକ

---

# କୁହ ବରୁଣେଇ କୁହ

ବ୍ରଜ ପାଇକରାୟ

କୁହ ବରୁଣେଇ କୁହ
ଶତ ଦୁର୍ଦ୍ଦିନ ବିଘ୍ନ ବଳୟେ
ଏ ଜାତି ଅପରାଜେୟ ... । ୦ ।

ଦୁର୍ଜୟ ବୀର ଓଡ଼ିଆ ଜାତିର
ରଣ ସଂଗୀତ ଧ୍ୱନୀ
ତୋହରି ବୁକୁରେ କମ୍ପନ ଭରି
ତୋଳୁ ଶତ ପ୍ରତିଧ୍ୱନୀ
କୁହ ବରୁଣେଇ କୁହ
ଶତ ଦୁର୍ଦ୍ଦିନ ବିଘ୍ନ ବଳୟେ
ଏ ଜାତି ଅପରାଜେୟ । ୧ ।

ଜୟୀ ରାଜଗୁରୁ ନିର୍ଭୀକ ପ୍ରାଣଦାନ
ବକ୍‌ସୀ ଜଗବନ୍ଧୁ ସମର ସାଲିସ୍‌ହୀନ
ଦଳବେହେରାର କାଳଜୟୀ ମହାଦାନ
ବୀର କୃତ୍ତିବାସ ସଂଗ୍ରାମ ଅଭିଯାନ

କୁହ ବରୁଣେଇ କୁହ
ଶତ ଦୁର୍ଦ୍ଦିନ ବିଘ୍ନ ବଳୟେ
ଏ ଜାତି ଅପରାଜେୟ । ୨ ।

ସୁପ୍ତ ଜାତିର ଲୁପ୍ତ କାହାଣୀ
ଦୃପ୍ତ ସ୍ୱରରେ କୁହ
କୁମ୍ଭକର୍ଣ୍ଣର ନିଦ୍ରା ଫେଡିଣ
ଗାଅ ଓଡ଼ିଆର ଜୟ
କୁହ ବରୁଣେଇ କୁହ
ଶତ ଦୁର୍ଦ୍ଦିନ ବିଘ୍ନ ବଳୟେ
ଏ ଜାତି ଅପରାଜେୟ । ୩ ।

ସରକାରୀ ଓକିଲ
୩୪୨/ବି, ଜାଗମରା (ବରବାରି)
ଭୁବନେଶ୍ୱର-୩୦





# ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ନାରୀ

ଡ. ସସ୍ମିତା ତ୍ରିପାଠୀ

**ଭା**ରତୀୟ ସ୍ୱାଧୀନତା ସଂଗ୍ରାମ ବିଶ୍ୱର ଅନ୍ୟ ଦେଶମାନଙ୍କରେ ଘଟିଥିବା ସ୍ୱାଧୀନତା ସଂଗ୍ରାମଠାରୁ ଅନେକାଂଶରେ ଭିନ୍ନ । ଗାନ୍ଧିଜୀଙ୍କର ନେତୃତ୍ୱରେ ପରିଚାଳିତ ଏହି ସଂଗ୍ରାମ ଅହିଂସା ଓ ସତ୍ୟାଗ୍ରହ ଉପରେ ଆଧାରିତ ଥିଲା । ଏହା ସମଗ୍ର ବିଶ୍ୱକୁ ଦେଖାଇଦେଲା ଯେ ଅହିଂସା ମାର୍ଗଦ୍ୱାରା ମଧ୍ୟ ସ୍ୱାଧୀନତା ଲାଭ କରାଯାଇପାରେ । ତେଣୁ ଆମର ସ୍ୱାଧୀନତା ସଂଗ୍ରାମ ବିଶ୍ୱରେ ଅନନ୍ୟ । ଅହିଂସା ଓ ସତ୍ୟାଗ୍ରହ ଉପରେ ଆଧାରିତ ଏହି ସଂଗ୍ରାମରେ ବିଶେଷ ଭୂମିକା ଗ୍ରହଣ କରିଥିଲେ ଆମ ଦେଶର ନାରୀମାନେ । କାରଣ ଏହି ସଂଗ୍ରାମ ନିମନ୍ତେ ଆବଶ୍ୟକ ଥିଲା ନୈତିକ ଶକ୍ତି । ନାରୀ ହିଁ ଏହି ଶକ୍ତିର ଆଧାର । ତେଣୁ ଗାନ୍ଧିଜୀ କହିଥିଲେ ନାରୀମାନଙ୍କୁ ଅବଳା ବା ଦୁର୍ବଳା ବୋଲି ଭାବିବା ଉଚିତ ନୁହେଁ । ଯଦି ଶକ୍ତିର ଅର୍ଥ ନୈତିକ ଶକ୍ତି ତେବେ ପୁରୁଷମାନଙ୍କଠାରୁ ନାରୀମାନଙ୍କର ସ୍ଥାନ ଯେ ଉଚ୍ଚରେ, ଏହା ନିଃସନ୍ଦେହ । ଏହି ମାତୃଶକ୍ତିର ଅଭ୍ୟୁଦୟ ଘଟିଥିଲା ଭାରତର ସ୍ୱାଧୀନତା ସଂଗ୍ରାମରେ । ସେମାନେ ପୁରୁଷମାନଙ୍କ ସହିତ କାନ୍ଧରେ କାନ୍ଧ ମିଳାଇ ବ୍ରିଟିଶ ପୋଲିସଙ୍କଠାରୁ ଲାଠିମାଡ଼ ଖାଇ ବ୍ରିଟିଶ ସରକାରଙ୍କର ବିରୁଦ୍ଧରେ ସଂଗ୍ରାମ ଜାରି ରଖିଥିଲେ । ସମଗ୍ର ଦେଶରେ ସ୍ୱାଧୀନତା ସଂଗ୍ରାମର ପ୍ରତିଧ୍ୱନି ଯେତେବେଳେ ଶୁଭୁଥିଲା, ସେତେବେଳେ ଓଡ଼ିଶା ବା ଏହାର ବ୍ୟତିକ୍ରମ ହୁଅନ୍ତା କିପରି ? ଅନ୍ୟ ପ୍ରଦେଶମାନଙ୍କ ପରି ଓଡ଼ିଶାରେ ମଧ୍ୟ ନାରୀମାନେ ମହାତ୍ମା ଗାନ୍ଧୀଙ୍କ ଅହିଂସା ଓ ସତ୍ୟାଗ୍ରହ ନୀତି ଦ୍ୱାରା ପ୍ରେରଣା ଲାଭ କରିଥିଲା । ଘରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ନ ରହି ଦେଶର ସ୍ୱାଧୀନତା ନିମନ୍ତେ ପ୍ରାଣବଳି ଦେବା ପାଇଁ ସେମାନେ ଆଗେଇ ଆସିଥିଲେ ।

୧୯୨୧ ମସିହା ମାର୍ଚ୍ଚମାସ ୨୪ ତାରିଖରେ ଗାନ୍ଧିଜୀ କାଠଯୋଡ଼ି ନଦୀକୂଳରେ ଏକ ସଭାରେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ । ଏହି ସଭାରେ ଅନେକ ମହିଳା ଆସି ଯୋଗ ଦେଇଥିଲେ । ଗାନ୍ଧିଜୀ ଓଡ଼ିଶାର ନାରୀମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ, ଖଦୀ ପିନ୍ଧିବା ପାଇଁ ଓ ସେମାନଙ୍କର ଗହଣାଗାଣ୍ଠି ଦେଶସେବା ନିମନ୍ତେ ଦାନ କରିବା ପାଇଁ ଆହ୍ୱାନ ଦେଇଥିଲେ । ଏଥିରେ ଅନୁପ୍ରାଣିତ ହୋଇ ରମାଦେବୀଙ୍କ ନେତୃତ୍ୱରେ ଅନେକ ମହିଳା ସେମାନଙ୍କର ଗହଣାଗାଣ୍ଠି ସବୁ ଦେଶସେବା ପାଣ୍ଠିକୁ ଦାନ କରି ଦେଇଥିଲେ ଓ ଖଦୀ ପିନ୍ଧିବା ଓ ବୁଣିବା ଆରମ୍ଭ କରିଥିଲେ । ଗାନ୍ଧିଜୀ ଓଡ଼ିଶାର ବିଭିନ୍ନ ସ୍ଥାନ ଗସ୍ତ କରି ଜନସାଧାରଣଙ୍କୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ପାଇଁ ଉତ୍ସାହିତ କରିଥିଲେ । ଏହାଦ୍ୱାରା ପୁରୁଷମାନଙ୍କ ସହିତ ନାରୀମାନେ ମଧ୍ୟ ଉତ୍ସାହିତ ହୋଇ ସ୍ୱାଧୀନତା ସଂଗ୍ରାମରେ ବହୁ ସଂଖ୍ୟାରେ ଯୋଗ ଦେଇଥିଲେ ।

ଗାନ୍ଧିଜୀ ଭଲ ଭାବରେ ଜାଣିଥିଲେ ଯେ ଯଦି ଆମ ଦେଶର ଜନସଂଖ୍ୟାର ଅର୍ଦ୍ଧେକ ଏହି ସଂଗ୍ରାମରେ ଯୋଗ ନ ଦିଅନ୍ତି ତେବେ ଏହି ସଂଗ୍ରାମ କଦାପି କୃତକାର୍ଯ୍ୟ ହୋଇପାରିବ ନାହିଁ । ଅହିଂସା ଓ ସତ୍ୟାଗ୍ରହ ଆଦି ନୀତିପାଳନ ନିମନ୍ତେ ସହିଷ୍ଣୁତା ଆବଶ୍ୟକ, ଯାହାର କି ମୂର୍ତ୍ତିମନ୍ତ ପ୍ରତୀକ ହେଲେ ନାରୀ ସମାଜ । ତେଣୁ ଅସହଯୋଗ ଆନ୍ଦୋଳନରେ ରମାଦେବୀ, ସରଳାଦେବୀ, ଗୋଦାବରୀ ଦେବୀ, ହେମବତୀ ଦେବୀ ଆଦି ଅନେକ ମହିଳା ଯୋଗ ଦେଇଥିଲେ । ମହିଳାକର୍ମୀମାନେ ବିଦେଶୀ ଜିନିଷ ବିକ୍ରୀ କରୁଥିବା ଦୋକାନଗୁଡ଼ିକ ସମ୍ମୁଖରେ ପିକେଟିଂ କରୁଥିଲେ । ସେମାନେ ବିଦେଶୀ ଦ୍ରବ୍ୟ ବର୍ଜନ ଓ ସ୍ୱଦେଶୀ ଦ୍ରବ୍ୟର ବ୍ୟବହାର ସମ୍ବନ୍ଧରେ ଘରଘର ବୁଲି ଲୋକମାନଙ୍କୁ ବୁଝାଉଥିଲେ । ଏହି ଆନ୍ଦୋଳନ ସମୟରେ ରମାଦେବୀ ତାଙ୍କର ବଡ଼ବାପା ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଘର ସମ୍ମୁଖରେ ବିଦେଶୀ ବସ୍ତ୍ରଗୁଡ଼ିକୁ ନିଆଁ ଲଗାଇ ପୋଡ଼ି ଦେଇଥିଲେ । ମଧୁବାବୁ ଏହାର ଫଳ କ'ଣ ହେବ ପଚାରିବାରୁ ରମାଦେବୀ ଉତ୍ତର ଦେଇଥିଲେ ଯେ ଫଳ ଭଗବାନଙ୍କ ହାତରେ ।

ନାରୀକର୍ମୀମାନେ ଲୋକମାନଙ୍କୁ ସ୍କୁଲ, କଲେଜ, କୋର୍ଟ କଚେରୀ ଆଦି ବର୍ଜନ କରି ବିଦେଶୀ ସରକାରଙ୍କ ସହିତ ସମ୍ପୂର୍ଣ୍ଣ ଅସହଯୋଗ କରିବା ପାଇଁ ପ୍ରବର୍ତ୍ତାଇଲେ । ସେମାନେ ସତ୍ୟାଗ୍ରହ ଶିବିରରେ ଶିକ୍ଷା ଲାଭ କରୁଥିଲେ । ଅନେକ ନାରୀ ପୋଲିସ ଦ୍ୱାରା ଗିରଫ ହୋଇ ଜେଲରେ ବନ୍ଦିନୀ ଜୀବନ ମଧ୍ୟ କଟାଇଲେ । ଅଧରମଣୀ ଦେବୀ ନାମକ ଜଣେ ମହିଳା ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ପାଇଁ ଚାହୁଁଥିଲେ । କିନ୍ତୁ ତାଙ୍କ ପରିବାରର ଲୋକମାନେ ଏଥିନିମନ୍ତେ ଅନୁମତି ନ ଦେବାରୁ ସେ ଘରେ ଅନଶନ ଆରମ୍ଭ କରି ଦେଇଥିଲେ । ଏଥିରୁ ସହଜରେ ଅନୁମେୟ ଯେ ଦେଶର ସ୍ୱାଧୀନତା ନିମନ୍ତେ ନିଜକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିବା ପାଇଁ ଓଡ଼ିଶାର ନାରୀମାନେ ସଦାସର୍ବଦା ତତ୍ପର ଥିଲେ ।





ମହିଳା ସତ୍ୟାଗ୍ରହୀମାନେ ଗାଁ ଗାଁ ବୁଲି ଗାଁର ସ୍ତ୍ରୀଲୋକମାନଙ୍କୁ ଅସହଯୋଗ ଆନ୍ଦୋଳନର ମହତ୍ତ୍ୱ ସମ୍ବନ୍ଧରେ ବୁଝାଉଥିଲେ । ପୋଲିସଙ୍କ ଭୟରେ ସେମାନେ ଲୁଚି ଲୁଚି ଅନେକ ବାଟ ଚାଲି କରି ଯାଉଥିଲେ । ଏପରିକି ସମୟ ସମୟରେ ସେମାନଙ୍କୁ ଉପାସ ରହିବାକୁ ପଡୁଥିଲା । ବେଳେବେଳେ ଗ୍ରାମବାସୀମାନେ ସେମାନଙ୍କୁ ସାହାଯ୍ୟ କରୁଥିଲେ । କିନ୍ତୁ ଅନେକ ସମୟରେ ପୋଲିସ ଭୟରେ ନିଜର ଇଚ୍ଛା ଥିବା ସତ୍ତ୍ୱେ ମଧ୍ୟ ସେମାନେ କୌଣସି ପ୍ରକାର ସାହାଯ୍ୟ କରିପାରୁନଥିଲେ । ସୂର୍ଯ୍ୟାସ୍ତ ପରେ ଲୁଚି ଲୁଚି ସେମାନେ କଂଗ୍ରେସର ପ୍ରଚାରପତ୍ର ଲୋକମାନଙ୍କ ମଧ୍ୟରେ ବାଣ୍ଟୁଥିଲେ । ଅସହଯୋଗ ଆନ୍ଦୋଳନରେ ଭାଗ ନେଇଥିବା ଯୋଗୁଁ ତୁଳସୀ ଦେବୀ, ଚମ୍ପାଦାସୀ, କୁତୁରୀ ଦେବୀ, ନିଶାମଣୀ ଦେବୀ ଆଦି ଅନେକ ମହିଳା କାରାବରଣ କରିଥିଲେ ।

୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ଗାନ୍ଧିଜୀଙ୍କର 'ଦାଣ୍ଡୀଯାତ୍ରା' ସହିତ ସମଗ୍ର ଦେଶରେ 'ଆଇନଅମାନ୍ୟ ଆନ୍ଦୋଳନ'ର ସୂତ୍ରପାତ ହେଲା । ଏପ୍ରିଲ ମାସ ୬ ତାରିଖରେ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଲବଣ ସତ୍ୟାଗ୍ରହ ନିମନ୍ତେ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା ଆରମ୍ଭ କଲେ । ରମାଦେବୀ ଓ ମାଳତୀ ଦେବୀ ତଥା ଅନ୍ୟ ମହିଳାକର୍ମୀମାନେ ଶଙ୍ଖଧ୍ୱନି ସହ ପୁଷ୍ପମାଳ ଅର୍ପଣ କରି ସେମାନଙ୍କୁ ବିଦାୟ ଦେଇଥିଲେ । ଏପ୍ରିଲ ମାସ ୧୩ ତାରିଖରେ ଆଚାର୍ଯ୍ୟ ହରିହର ଇଞ୍ଚୁଡ଼ିଠାରେ ଲୁଣମାରି ଆଇନଅମାନ୍ୟ କରିଥିଲେ । ପୋଲିସ ସତ୍ୟାଗ୍ରହୀମାନଙ୍କ ଉପରେ ଲାଠିଚାଳନା କରିଥିଲେ । ଏହି ସମୟରେ ନିକଟବର୍ତ୍ତୀ ଗାଁଗୁଡ଼ିକରୁ ମହିଳାମାନେ ଅନେକ ସଂଖ୍ୟାରେ ଆସି ପୋଲିସ ଲାଠିକୁ ଖାତିର ନକରି ଆହତ ସତ୍ୟାଗ୍ରହୀମାନଙ୍କର ସେବା କରିଥିଲେ ।

ଇତିମଧ୍ୟରେ ରମା ଦେବୀ, ମାଳତୀ ଦେବୀ, ଅନ୍ନପୂର୍ଣ୍ଣା ଦେବୀ, କିରଣବାଳା ସେନ ଆଦି ବାଲେଶ୍ୱର ଶିବିରରେ ଯୋଗ ଦେଇଥିଲେ । ଏପ୍ରିଲ ମାସ ୨୦ ତାରିଖରେ ଅନେକ ମହିଳାଙ୍କ ଗହଣରେ ଏହି ନାରୀନେତ୍ରୀମାନେ ଲବଣ ଆଇନ ଭଙ୍ଗ କରିଥିଲେ । କଟକ, ବାଲେଶ୍ୱର ଓ ଗଞ୍ଜାମର ବିଭିନ୍ନ ସ୍ଥାନରେ ଏହି ଆଇନଅମାନ୍ୟ ଆନ୍ଦୋଳନ ଚାଲିଥିଲା । କୁଜଙ୍ଗଠାରେ ରମା ଦେବୀ, ମାଳତୀ ଦେବୀ ଓ ରାଣୀ ଭାଗ୍ୟବତୀ ପାଟ ମହାଦେବୀଙ୍କ ନେତୃତ୍ୱରେ ଅନେକ ମହିଳା ଲବଣ ଆଇନ ଭଙ୍ଗ କରିଥିଲେ । ସେହିପରି ଗଞ୍ଜାମ ଜିଲ୍ଲାରେ ନାରୀମାନଙ୍କର ନେତୃତ୍ୱ ନେଇଥିଲେ ସରଳା ଦେବୀ ଓ ମାଳତୀ ଦେବୀ ଗଞ୍ଜାମ ଜିଲ୍ଲାର ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକରେ ବୁଲି ବୁଲି ମହିଳାମାନଙ୍କୁ ଲବଣ ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇ ଥିଲେ । ଫଳସ୍ୱରୂପ ହୁମା, ଲକ୍ଷ୍ମୀପୁର, ପଲ୍ଲିବନ୍ଧ ଓ ଜୟନ୍ତୀଗଡ଼ ଆଦି ସ୍ଥାନରେ ମହିଳାମାନେ ଲବଣ ଆଇନ ଭଙ୍ଗ କରିଥିଲେ । ଶୋଭାରାଣୀ ପଣ୍ଡା, କିଶୋରୀମଣି ଦେବୀ, ଗୁଣମଞ୍ଜରୀ ଦେବୀ, ହେମଲତା ସାମନ୍ତ ଆଦି ଅନେକ ମହିଳା ଏହି ଲବଣ ସତ୍ୟାଗ୍ରହରେ ଭାଗ ନେଇଥିଲେ । ସମ୍ବଲପୁରରେ ଜାମ୍ବୁବତୀ ପଟ୍ଟନାୟକ, ରୁକ୍ମିଣୀ ଦୁବେ ଓ କୋକିଳ ଦେବୀ ପିକେଟିଂ କରିବା ଓ ବିଦେଶୀ ଦ୍ରବ୍ୟ ବର୍ଜନ ଆଦି କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ବାଲେଶ୍ୱରର ଇରମଠାରେ ଲୁଣମାରି ଫେରୁଥିବା ସମୟରେ ପୋଲିସ୍ ମହିଳାକର୍ମୀମାନଙ୍କ ଉପରେ ଲାଠି ଚାଳନା କରିଥିଲା । ଅନେକ ମହିଳାକର୍ମୀ ଗିରଫ ହୋଇଥିଲେ । ବାନରସେନାରେ ଥିବା ଛୋଟ ଛୋଟ ବାଳିକାମାନେ ମଧ୍ୟ ଏହି ଆନ୍ଦୋଳନରେ ସାମିଲ ହୋଇଥିଲେ । ସେମାନଙ୍କ ମଧ୍ୟରେ ଅନ୍ନପୂର୍ଣ୍ଣା ମହାରଣା ଓ ମଙ୍ଗଳା ଦେବୀଙ୍କର ନାମ ଉଲ୍ଲେଖଯୋଗ୍ୟ । ସେମାନେ ଜିଲ୍ଲାପାଳଙ୍କ ଅଫିସରେ କଂଗ୍ରେସ ପତାକା ଉତ୍ତୋଳନ କରିବାର ଦୁଃସାହସ କରିଥିଲେ । ଗାନ୍ଧୀ-ଇରଓ୍ୱିନ୍ ଚୁକ୍ତି ସ୍ୱାକ୍ଷରିତ ହେବା ପରେ ଲବଣ ସତ୍ୟାଗ୍ରହର ଜୁଆରରେ ଭଟ୍ଟା ପଡ଼ିଥିଲା ।

୧୯୪୦ ମସିହାରେ ମହାତ୍ମା ଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଓଡ଼ିଶାର ସରଳା ଦେବୀ ଓ ଏ ଲକ୍ଷ୍ମୀବାଈ ଏହି ସତ୍ୟାଗ୍ରହରେ ଯୋଗଦେବାର ସୁଯୋଗ ଲାଭ କରିଥିଲେ । ୧୯୪୨ ମସିହା ଅଗଷ୍ଟ ମାସ ୮ ତାରିଖରେ ବମ୍ବେଠାରେ କଂଗ୍ରେସ ଅଧିବେଶନରେ ଗାନ୍ଧିଜୀ 'କର ବା ମର' ଡାକରା ଦେଇ 'ଭାରତଛାଡ଼' ଆନ୍ଦୋଳନର ସୂତ୍ରପାତ କରିଥିଲେ । ଓଡ଼ିଶାରୁ ମାଳତୀ ଚୌଧୁରୀ ଏହି ସଭାରେ ଯୋଗ ଦେଇଥିଲେ । ସେଠାରୁ ପ୍ରତ୍ୟାବର୍ତ୍ତନ କରି ମାଳତୀ ଦେବୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସହ ମିଶି ଏକ ଗୁପ୍ତ ସଂସ୍ଥା ଆରମ୍ଭ କରି ପୋଲିସ୍‌ଠାରୁ ଲୁଚି ସଂଗ୍ରାମ ଜାରି ରଖିବା ପାଇଁ ଚେଷ୍ଟା କରିଥିଲେ । ନନ୍ଦିନୀ ଦେବୀ ଇଂରେଜ ସରକାରଙ୍କର ବିରୁଦ୍ଧରେ ଏକ ଶୋଭାଯାତ୍ରାରେ ଯୋଗ ଦେଇ ଗିରଫ ହୋଇଥିଲେ । ପୋଲିସ ଅଫିସର ଓ ଚୌକିଦାରଙ୍କର ପୋଷାକ ପୋଡ଼ିବା ଯୋଗୁଁ ମଙ୍ଗଳା ଦେବୀ ଗିରଫ ହୋଇଥିଲେ । ଗଞ୍ଜାମର ଲକ୍ଷ୍ମୀବାଈ, ଚମ୍ପାଦେବୀ, ପୁରୀର ବିମଳା ଦେବୀ, ଗୁଣମଞ୍ଜରୀ ଦେବୀ ଓ ସମ୍ବଲପୁରର ପ୍ରଭାବତୀ ଦେବୀ, ଜାମ୍ବବତୀ ଦେବୀ ଓ ପାର୍ବତୀ ଗିରି ଏହି ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ । ଇରମ ନାମକ ସ୍ଥାନରେ ପୋଲିସ ଗୁଳିଚାଳନାରେ ଅନେକ ଲୋକ ମୃତ୍ୟୁବରଣ କରିଥିଲେ । ଏହା ୧୯୧୯ ମସିହାର ଜାଲିଆନାଓ୍ୱାଲାବାଗ ହତ୍ୟାକାଣ୍ଡ ସହିତ ତୁଳନୀୟ । ପରୀ ବେଓ୍ୱା ନାମକ ଜଣେ ମହିଳା ଏହି ସ୍ଥାନରେ ଶହୀଦ ହୋଇଯାଇଥିଲେ । ଏତଦ୍‌ବ୍ୟତୀତ ବାସନ୍ତୀ ଦେଇ, ନଳିନୀ ଦେଇ, ହାରା ଦେଇ ପ୍ରଭୃତି ଆହତ ହୋଇଥିଲେ । ସୋନପୁରଠାରେ ଗୁରୁବାଇ ମେହେର ନାମକ ମହିଳା ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଏକ ଶୋଭାଯାତ୍ରାରେ ଯୋଗ ଦେଇ ପୋଲିସ ଗୁଳିର ଶୀକାର ହୋଇଥିଲେ ।

ଏହିପରି ଭାବରେ ଆମର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ନାରୀମାନଙ୍କ ଅବଦାନ ଅତୁଳନୀୟ । ସେମାନଙ୍କର ଦେଶପ୍ରେମ ଓ ତ୍ୟାଗ ଦେଖି ଗାନ୍ଧିଜୀ ଭୂୟସୀ ପ୍ରଶଂସା କରିଥିଲେ । ସ୍ୱାଧୀନତା ସଂଗ୍ରାମର ଇତିହାସରେ ସେମାନଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି ଏବଂ ରହିଥିବ । ସେମାନଙ୍କର ମହାନ୍ ତ୍ୟାଗ ଓ ଦେଶାତ୍ମବୋଧ ଆମର ଉତ୍ତର ପିଢ଼ିକୁ ଯେ ଅନୁପ୍ରାଣିତ କରିବ, ଏହା ନିଃସନ୍ଦେହ ।

ବରିଷ୍ଠ ଅଧ୍ୟାପିକା, ଇତିହାସ ବିଭାଗ
ରେଭେନ୍‌ସା ମହାବିଦ୍ୟାଳୟ, କଟକ





# ଭାରତର ମୁକ୍ତି ସଂଗ୍ରାମରେ ପଶ୍ଚିମ ଓଡ଼ିଶାର ଅବଦାନ

ଅଧ୍ୟାପକ ପବିତ୍ର ମୋହନ ବାରିକ

**ଭା**ରତର ମୁକ୍ତି ସଂଗ୍ରାମକୁ ପଶ୍ଚିମ ଓଡ଼ିଶାର ଅନବଦ୍ୟ ଅବଦାନ ଅତୁଳନୀୟ । ନିଘଞ୍ଚ ଅରଣ୍ୟାନି ମଧ୍ୟରେ ବାସ କରୁଥିବା ସ୍ୱାଧୀନ ପ୍ରେମୀ ଜନସାଧାରଣଙ୍କ ଆତ୍ମବଳି ଓ ଉତ୍ସର୍ଗୀକୃତ ମନୋଭାବ ବାସ୍ତବିକ ହୃଦୟସ୍ପର୍ଶୀ । ଦେଶ ମାତୃକାର ମୁକ୍ତି ପାଇଁ ନିରୀହ ଅଧିବାସୀମାନଙ୍କର ସଂଗ୍ରାମ ଓ ସଂଘର୍ଷମୟ ଜୀବନ ଏ ଜାତିର ଇତିହାସ ପାଇଁ ମହାର୍ଘ୍ୟ ଅଧ୍ୟାୟ । ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ଦୁର୍ଦ୍ଦାନ୍ତ ଇଂରେଜ ଶକ୍ତି ବିରୋଧରେ ବିଦ୍ରୋହ କରିବାକୁ ପଶ୍ଚିମାଞ୍ଚଳ ମୁକ୍ତି ପ୍ରେମୀ ଓ ସ୍ୱାଧୀନତା ସେନାନୀମାନେ କୁଣ୍ଠାବୋଧ କରିନଥିଲେ । ସେହି ବୀର ପୁଙ୍ଗବମାନଙ୍କର ଅଦମ୍ୟ ସାହସ, ଅସୀମ ତ୍ୟାଗ, ନିଷ୍ଠାପର ଉଦ୍ୟମ ଓ ନିଃସ୍ୱାର୍ଥପର ଯୋଗଦାନ ପାଇଁ ମୁକ୍ତି ସଂଗ୍ରାମର ଇତିହାସ ଅଧିକ ରୋମାଞ୍ଚକର ଓ ଲୋମହର୍ଷଣକାରୀ ।

ଆଦିବାସୀ ଅଧ୍ୟୁଷିତ ପଶ୍ଚିମାଞ୍ଚଳର ଜନସାଧାରଣଙ୍କର ଜାତୀୟ ସଂଗ୍ରାମରେ ଯୋଗଦାନ ଅଭୂତପୂର୍ବ । ଏହି ଅଞ୍ଚଳର ସୁଯୋଗ୍ୟ ସନ୍ତାନମାନେ ମାତୃଭୂମିର ସୁରକ୍ଷା, ସମ୍ମାନ ଓ ମୁକ୍ତି ପାଇଁ ଦୁର୍ଦ୍ଦାନ୍ତ ସାମ୍ରାଜ୍ୟବାଦୀ ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ ।

ଇଂରେଜ ଶକ୍ତି ୧୮୦୩ ଖ୍ରୀଷ୍ଟାବ୍ଦରେ ଉପକୂଳବର୍ତ୍ତୀ ପୂର୍ବ ଓଡ଼ିଶାକୁ ନିଜ ଅଧିକାରଭୁକ୍ତ କଲେ । ଇଂରେଜମାନେ ମରହଟ୍ଟା ଶାସିତ ପଶ୍ଚିମ ଓଡ଼ିଶା ଉପରେ ପରବର୍ତ୍ତୀ ସମୟରେ ଲୋଲୁପ ଦୃଷ୍ଟି ନିକ୍ଷେପ କଲେ । ୧୭୫୧ ଖ୍ରୀଷ୍ଟାବ୍ଦରୁ ମରହଟ୍ଟାମାନେ ଏ ଅଞ୍ଚଳରେ ନିଜର ପ୍ରାଧାନ୍ୟ ଦୃଢ଼ କରିଥିଲେ । ପରବର୍ତ୍ତୀ ସମୟରେ ଇଂରେଜମାନେ ୧୮୧୮ ଖ୍ରୀଷ୍ଟାବ୍ଦରେ ନିଜର ରାଜନୈତିକ କର୍ତ୍ତୃତ୍ୱକୁ ଏ ଅଞ୍ଚଳରେ ସଫଳତାର ସହିତ ପ୍ରତିପାଦନ କରିପାରିଥିଲେ । ୧୮୪୯ ଖ୍ରୀଷ୍ଟାବ୍ଦରେ ଲର୍ଡ଼ ଡେଲହାଉସୀଙ୍କ ଅପରିଣାମଦର୍ଶୀ ତଥା ବିବେକହୀନ କାର୍ଯ୍ୟ ସ୍ୱରୂପ ରାଜସ୍ୱତ୍ତ୍ୱ ଲୋପ ନୀତି ବଳରେ ସମ୍ବଲପୁର ଇଂରେଜମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଆସିଲା ।

୧୮୨୭ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ରାଣୀ ମୋହନ କୁମାରୀଙ୍କୁ ସମ୍ବଲପୁର ରାଜସିଂହାସନରେ ଅଳଙ୍କୃତ କଲେ । ଏହି ସମୟରୁ ସ୍ଥାନୀୟ ଇଂରେଜମାନଙ୍କ ବିରୋଧରେ ସ୍ଥାନୀୟ ଅଧିବାସୀମାନଙ୍କର ତୀବ୍ର ଅସନ୍ତୋଷ ସୃଷ୍ଟି ହୋଇଥିଲା । ବିପ୍ଳବୀ ବୀର ସୁରେନ୍ଦ୍ର ସାଏ ନ୍ୟାର୍ଯ୍ୟ ଅଧିକାରରୁ ବଂଚିତ ହେବା ଦ୍ୱାରା ଇଂରେଜ ଶକ୍ତି ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ୧୮୫୭ ଖ୍ରୀଷ୍ଟାବ୍ଦରେ ବିଦ୍ରୋହ ସମୟରେ ସୁରେନ୍ଦ୍ର ସାଏଙ୍କର ମହାସଂଗ୍ରାମ ଇଂରେଜ ସାମ୍ରାଜ୍ୟ ପ୍ରତି ଥିଲା ଶକ୍ତ ଧକ୍କା । ସୁରେନ୍ଦ୍ର ସାଏଙ୍କୁ ଏହି ମହାସମରରେ ତାଙ୍କ ପରିବାର ସଦସ୍ୟ ଏବଂ ଅନେକ ଗଣ୍ଡ, ବିଞ୍ଝାଲ ଜମିଦାର ଓ ଗୌନ୍ତିଆମାନେ ସାହାଯ୍ୟ ଓ ସମର୍ଥନ ପ୍ରଦାନ କରିଥିଲେ । ମୁକ୍ତି ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ ଯେଉଁ ଜମିଦାରମାନଙ୍କର ସହଯୋଗରେ ସେ କାଳଜୟୀ ଇତିହାସ ସୃଷ୍ଟି କଲେ, ସେମାନେ ଥିଲେ ଲୋଇସିଂହା, କୁଲାବିରା, ଘେଁସ, ଖଡ଼ିଆଳ, ଭେଡେନ ଓ ଲଖନପୁରର ଜମିଦାର । ଘେଁସ ଜମିଦାର ପରିବାରର ମାଧୋ ସିଂହ, କୁଞ୍ଜେଲ ସିଂହ ଓ ହାତୀ ସିଂହଙ୍କ ବଳିଦାନ ଓଡ଼ିଆ ଜାତି ସଗର୍ବରସହିତ ସ୍ମରଣ କରୁଥିବ । ମହାନ୍ ବିଦ୍ରୋହର ମହାନାୟକ ଆଜନ୍ମ ବିଦ୍ରୋହୀ ସୁରେନ୍ଦ୍ର ସାଏ ଦୀର୍ଘ ୩୭ ବର୍ଷ ଧରି ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ଜୀବନ ଅତିବାହିତ କରିଥିଲେ ।

ପଶ୍ଚିମ ଓଡ଼ିଶାର ସବୁ ଶ୍ରେଣୀ, ବର୍ଗ ଓ ସଂପ୍ରଦାୟର ମୁକ୍ତି ପ୍ରେମୀ ଜନସାଧାରଣ ଅତି ଆଗ୍ରହ ଓ ନିଷ୍ଠାର ସହିତ ନିଜକୁ ଜାତୀୟ ଆନ୍ଦୋଳନରେ ସହଯୋଗ କରିଥିଲେ । ନିରୀହ ତଥା ନିଃସ୍ୱାର୍ଥପର ଆଦିବାସୀ ସଂପ୍ରଦାୟ ଉପରେ ଇଂରେଜ ସରକାର ଯେଉଁଭଳି ଭାବରେ ଶୋଷଣ ଓ ଅତ୍ୟାଚାର ଆରମ୍ଭ କଲେ, ତାହାର ପ୍ରତିବାଦ କରି ଶହ ଶହ ଆଦିବାସୀମାନେ ଅସ୍ତ୍ର ଧାରଣ କରିବାକୁ କେବେ କୁଣ୍ଠା ପ୍ରକାଶ କରିନଥିଲେ ।

ଘୁମୁସର ଇଂରେଜ ବିରୋଧୀ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟ ୧୮୪୬ ମସିହାରେ ଆରମ୍ଭ ହୋଇଥିଲା । ଏହି ପର୍ଯ୍ୟାୟ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିଥିଲେ କନ୍ଧବୀର ଚକ୍ରା ବିଶୋଇ । ଦକ୍ଷିଣ ଓ ପଶ୍ଚିମ ଓଡ଼ିଶାରେ ଏକ ବୃହତ ଆନ୍ଦୋଳନ ଆରମ୍ଭ କରିବାକୁ ଯାଇ ଇଂରେଜ ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ିଥିଲେ । ସରକାରଙ୍କର ଦୃଷ୍ଟି ଆଢୁଆଳରେ ରହି ଚକ୍ରା ବିଶୋଇ ଗୋପନରେ ତାଙ୍କର ସଂଗ୍ରାମ ଅବ୍ୟାହତ





ରଖିଥିଲେ । ବୌଦ୍ଧ ଓ ସୋନପୁରର ଅଧିବାସୀମାନେ ତାଙ୍କୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଦେଇ ଆସୁଥିଲେ । ଚକ୍ରା ବିଶୋଇଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା କନ୍ଧ ମେଳି ଘୁମୁସର ସମେତ ବୌଦ୍ଧ, ଅନୁଗୁଳ, ସୋନପୁର, ମଦନପୁର-ରାମପୁର, ବଲାଙ୍ଗୀର, ତେଲ ନଦୀ ଉପତ୍ୟକାର କନ୍ଧ ଅଞ୍ଚଳ, କଳାହାଣ୍ଡି ଓ ଜୟପୁର ଇତ୍ୟାଦି ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ପଶ୍ଚିମ ଓଡ଼ିଶାର ଅନେକ ଗଡ଼ଜାତ ରାଜା ଓ ଜମିଦାରମାନେ ଚକ୍ରା ବିଶୋଇଙ୍କୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସମର୍ଥନ ଜ୍ଞାପନ କରିଥିଲେ ।

କଳାହାଣ୍ଡି ଗଡ଼ଜାତ ରାଜ୍ୟର ମଦନପୁର-ରାମପୁର ଅଞ୍ଚଳର ରେଣ୍ଡା ମାଝି ଓ ତାଙ୍କର ସମର୍ଥକମାନେ ଇଂରେଜମାନଙ୍କ ବିରୋଧରେ ସ୍ୱରଉତ୍ତୋଳନ କରିଥିଲେ । ଚକ୍ରା ବିଶୋଇଙ୍କୁ ଆତ୍ମଗୋପନରେ ସାହାଯ୍ୟ କରୁଥିବାରୁ ଏବଂ ମେରିଆ ପ୍ରଥାକୁ ସମର୍ଥନ ଦେଉଥିବା ଅଭିଯୋଗରେ ଇଂରେଜମାନେ ରେଣ୍ଡା ମାଝି ଓ ତାଙ୍କର ପୁତ୍ର ପଲାସୋ ମାଝିଙ୍କୁ ଗିରଫ କରି ଦୁଇ ବର୍ଷ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ଏହାର ପ୍ରତିବାଦରେ କୁଟିଆ କନ୍ଧ ଓ ବରକିଆ କନ୍ଧମାନେ ଇଂରେଜ ପ୍ରତିନିଧି ମେକନିଲ୍ ସାହେବଙ୍କ ଶିବିର ଉପରେ ଆକ୍ରମଣ କରିଥିଲେ । ତହସିଲଦାର ଦୀନବନ୍ଧୁ ପଟ୍ଟନାୟକଙ୍କ ଉପସ୍ଥିତ ବୁଦ୍ଧି ପାଇଁ ମେକନିଲଙ୍କ ପ୍ରାଣରକ୍ଷା କରାଯାଇପାରିଥିଲା । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଅମର ଶହୀଦ ବିପ୍ଳବୀ ବିର୍ସା ମୁଣ୍ଡାଙ୍କର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଇଂରେଜ ସରକାରଙ୍କ ନିଦ୍ରା ହଜାଇ ଦେଇଥିଲା । ଇଂରେଜ ସରକାର ଓ ତାଙ୍କ ଅନୁଗତ ଜମିଦାର, ଠିକାଦାରମାନଙ୍କର ନିରୀହ ଆଦିବାସୀମାନଙ୍କ ପ୍ରତି ଶୋଷଣ ଓ ନିର୍ଯ୍ୟାତନା ବିରୋଧରେ ବିର୍ସା ମୁଣ୍ଡା ସଂଗ୍ରାମ ଅବ୍ୟାହତ ରଖିଥିଲେ । ରାଜଗାଙ୍ଗପୁର ରାଣୀ ଅହଂକାରୀ ଇଂରେଜ ଶକ୍ତି ବାହୁଛାୟା ତଳେ ରହି ଶାସନ ଓ କ୍ଷମତାର ଅପବ୍ୟବହାର କରିଥିଲେ । ସରଳ ବିଶ୍ୱାସୀ ଆଦିବାସୀ ସଂପ୍ରଦାୟର ବିକାଶରେ ସହାୟତା ପ୍ରଦାନ କରିବା ପରିବର୍ତ୍ତେ ରାଣୀ ଧ୍ୱଂସର ମୂଳ କାରଣ ରୂପେ ଦଣ୍ଡାୟମାନ ହେଲେ । ରାଣୀଙ୍କ କୁ-ଶାସନରେ ଅତିଷ୍ଠ ହୋଇ ଶହ ଶହ ଆଦିବାସୀ ନିର୍ମଳ ମୁଣ୍ଡାଙ୍କ ନେତୃତ୍ୱରେ ପ୍ରକାଶ୍ୟ ବିଦ୍ରୋହ ପାଇଁ ନିର୍ଭୀକତାର ସହିତ ଆଗେଇ ଆସିଥିଲେ । ଇଂରେଜ ସୈନ୍ୟଙ୍କ ଗୁଳିମାଡ଼ରେ ଶତାଧିକ ଆଦିବାସୀମାନେ ସିମିକୋ ଗ୍ରାମ ନିକଟରେ ମୃତ୍ୟୁବରଣ କଲେ । ପରିଶେଷରେ ନିର୍ମଳ ମୁଣ୍ଡା ଇଂରେଜ ସରକାରଙ୍କ ଦ୍ୱାରା ଗିରଫ ହେଲେ । ପଶ୍ଚିମ ଓଡ଼ିଶାର ଆଦିବାସୀ ସଂପ୍ରଦାୟର ମୁକ୍ତି ଯୁଦ୍ଧରେ ନିଃସ୍ୱାର୍ଥପର ଯୋଗଦାନ ଜାତୀୟ ସଂଗ୍ରାମକୁ ସମୃଦ୍ଧ ତଥା ଶକ୍ତିଶାଳୀ କରିବା ଦିଗରେ ସହାୟତା ହୋଇଥିଲା ।

ପରବର୍ତ୍ତୀ ସମୟରେ ଜାତୀୟ କଂଗ୍ରେସର ନେତୃତ୍ୱ, ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପରିଚାଳିତ ହେଉଥିବା ସମୟରେ ପଶ୍ଚିମ ଓଡ଼ିଶାର ସଂଗ୍ରାମୀମାନେ ପୂର୍ଣ୍ଣ ପ୍ରାଣରେ ସଂଗ୍ରାମରେ ଝାସ ଦେଇଥିଲେ । ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରେ ମହାତ୍ମା ଗାନ୍ଧୀଙ୍କ ଶାନ୍ତିପୂର୍ଣ୍ଣ ସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ଅଧିବେଶନରେ ସମ୍ବଲପୁରର ସୁନାମଧନ୍ୟ ସ୍ୱତନ୍ତ୍ର ସେନାନୀ ଚନ୍ଦ୍ରଶେଖର ବେହେରା, ଦାଶରଥି ମିଶ୍ର ପ୍ରଭୃତି ଅଂଶଗ୍ରହଣ କରି ଓଡ଼ିଶା ଇତିହାସରେ ଏକ କୀର୍ତ୍ତିମାନ ଅଧ୍ୟାୟ ରଚନା କଲେ । ଗାନ୍ଧୀଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ସମ୍ବଲପୁର ଜିଲ୍ଲା ସ୍କୁଲ ଛାତ୍ରମାନେ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଯୋଗଦାନ କରିଥିଲେ । ପଶ୍ଚିମ ଓଡ଼ିଶାର ପ୍ରମୁଖ ଅଞ୍ଚଳ ବରଗଡ଼, କୁଚିଣ୍ଡା, ଅତାବିରା, ଭେଡେନ, ଝାରସୁଗୁଡ଼ା, ବରପାଲି, ପଦ୍ମପୁର, ସୋନପୁର, ଭବାନୀପାଟଣା, ଖରିଆର, ବଲାଙ୍ଗୀର ଓ ପାଟଣାଗଡ଼ ଇତ୍ୟାଦି ଅଞ୍ଚଳରେ ଆନ୍ଦୋଳନପୂର୍ଣ୍ଣ ସମର୍ଥନ ଲାଭ କରିଥିଲା । ସଂଗ୍ରାମୀ ଚନ୍ଦ୍ରଶେଖର ବେହେରାଙ୍କ ଦ୍ୱାରା ସମ୍ବଲପୁର ଝାଡୁଆପଡ଼ାରେ ଏକ ଜାତୀୟ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରାଯାଇଥିଲା । ଉତ୍କଳ ଜନନୀର ବରେଣ୍ୟ ବରପୁତ୍ର ତଥା ଓଡ଼ିଆ ଜାତିର ସ୍ୱର୍ଦ୍ଧିତ ସ୍ୱାଭିମାନର ପ୍ରତୀକ ନୀଳକଣ୍ଠ ଦାସ ଏହି ଶିକ୍ଷାନୁଷ୍ଠାନର ପ୍ରଧାନଶିକ୍ଷକ ଦାୟିତ୍ୱ ନିଷ୍ଠାର ସହିତ ସଂପାଦିତ କରିଥିଲେ । ପଶ୍ଚିମ ଓଡ଼ିଶାର ଅନେକ ସଂଗ୍ରାମୀ ଓ ଉତ୍ସାହୀ ଯୁବକମାନେ ଗ୍ରାମାଞ୍ଚଳରେ କଂଗ୍ରେସ ଓ ଗାନ୍ଧିଜୀଙ୍କର ବାର୍ତ୍ତା ପ୍ରଚାର କରି ଜନସାଧାରଣଙ୍କ ହୃଦୟରେ ଇଂରେଜ ସରକାରଙ୍କ ପ୍ରତି ବିତୃଷ୍ଣା ଓ ସ୍ୱାଧୀନତା ସଂଗ୍ରାମ ପ୍ରତି ଉନ୍ମାଦନା ସୃଷ୍ଟି କରିପାରିଥିଲେ । ନୃସିଂହ ଗୁରୁ, ଜନାର୍ଦ୍ଦନ ସୂପକାର, ହରିହର ପାଣିଗ୍ରାହୀ, ଶିବ ପ୍ରସାଦ ମିଶ୍ର, ଲକ୍ଷ୍ମୀ ନାରାୟଣ ମିଶ୍ର, କୁଞ୍ଜ ମେହେର ପ୍ରଭୃତି ପଶ୍ଚିମ ଓଡ଼ିଶାର ସୁଯୋଗ୍ୟ ସନ୍ତାନମାନେ ଇଂରେଜ ବିରୋଧୀ ସଭା, ସମିତି, ଶୋଭାଯାତ୍ରାମାନ ଆୟୋଜନ କରି ଦେଶ ଓ ଜାତିପ୍ରେମର ପ୍ରକୃତ ପରିଚୟ ପ୍ରଦାନ କରିଥିଲେ । ଇଂରେଜ ବିରୋଧୀ ସଂଗ୍ରାମ ସହିତ ସେମାନେ ଅନେକ ସାମାଜିକ କାର୍ଯ୍ୟକ୍ରମ ମଧ୍ୟ ହାତକୁ ନେଇଥିଲେ । ନିଶା ନିବାରଣ, ଅସ୍ପୃଶ୍ୟତା ବିରୋଧରେ ସଂଗ୍ରାମୀମାନେ ମଧ୍ୟ ନିର୍ଭୀକ ଭାବରେ ସ୍ୱର ଉତ୍ତୋଳନ କରିଥିଲେ । ୧୯୦୨ ଖ୍ରୀଷ୍ଟାବ୍ଦରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସମ୍ବଲପୁର ଗସ୍ତ ସଂଗ୍ରାମୀମାନଙ୍କୁ ଅଧିକ ମାତ୍ରାରେ ଉତ୍ସାହିତ କରିଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନରେ ସମ୍ବଲପୁରର ରାମନାରାୟଣ ମିଶ୍ରଙ୍କ ସଭାପତିତ୍ୱରେ ଏକ ସଭାର ଆୟୋଜନ ହୋଇଥିଲା ।

ଜାତୀୟ ସଂଗ୍ରାମର ମହାନାୟକ ମହାତ୍ମା ଗାନ୍ଧୀ ୧୯୨୮ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୨୩ ତାରିଖରେ ମହାନଦୀ କୂଳରେ ବ୍ରହ୍ମପୁରା ମନ୍ଦିର ନିକଟରେ ଏକ ବିଶାଳ ଜନସଭାକୁ ଉଦ୍‌ବୋଧନ ଦେଇ, ଜନସାଧାରଣଙ୍କୁ ଇଂରେଜ ସରକାରଙ୍କ ବିରୋଧରେ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଚାଲୁ ରଖିବା ନିମନ୍ତେ ଆହ୍ୱାନ ଦେଇଥିଲେ । ୧୯୩୦ ଖ୍ରୀଷ୍ଟାବ୍ଦର ଐତିହାସିକ ଲବଣ ସତ୍ୟାଗ୍ରହରେ ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ରମାନଙ୍କର ବହୁ ଆଗ୍ରହ ପରିଲକ୍ଷିତ ହୋଇଥିଲା । ବାଲେଶ୍ୱର ଇଞ୍ଚୁଡ଼ିଠାରେ ସମୁଦ୍ରରୁ ଲୁଣ ମାରି ଇଂରେଜ ସରକାରଙ୍କର ଆଇନ





ଅମାନ୍ୟ କରିବା ନିମନ୍ତେ ସମ୍ବଲପୁରରୁ ସତ୍ୟାଗ୍ରହୀମାନେ ଚାରି ଦଳରେ ବିଭକ୍ତ ହୋଇ ଇଞ୍ଜୁଡ଼ି ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ପ୍ରଥମ ଦଳରେ ସୁଧାଂଶୁ ଶେଖର ଗୁପ୍ତା, ଦୁର୍ଗା ପ୍ରସାଦ ଗୁରୁ ଓ ରାମପ୍ରସାଦ ସାହୁ ପ୍ରଭୃତି ସତ୍ୟାଗ୍ରହୀମାନେ ଯାତ୍ରା କରିଥିଲେ । ଦ୍ୱିତୀୟ ପର୍ଯ୍ୟାୟରେ ଦୟାନନ୍ଦ ଶତପଥୀ, ପ୍ରେମଶଙ୍କର ପଟ୍ଟନାୟକ ଓ ଭାଗିରଥୀ ପଟ୍ଟନାୟକ ପ୍ରଭୃତି ଅଂଶ ଗ୍ରହଣ କରିଥିଲେ । ତୃତୀୟ ଦଳରେ ମହାବୀର ସିଂହ ଓ ଶିବ ଦେଓ ଏବଂ ଚତୁର୍ଥ ଦଳରେ ଘନଶ୍ୟାମ ପାଣିଗ୍ରାହୀ, ଲକ୍ଷ୍ମଣ ଗିରି ଓ ଗୌରାଙ୍ଗ ମେହେର ପ୍ରଭୃତି ଯୋଗଦାନ କରିଥିଲେ । ପଶ୍ଚିମ ଓଡ଼ିଶାର ଗ୍ରାମାଞ୍ଚଳରେ ଆଇନ ଅମାନ୍ୟ ଆନ୍ଦୋଳନ ବ୍ୟାପକ ରୂପେ ପ୍ରସାରିତ ହୋଇ ଜନସମର୍ଥନ ଲାଭ କଲା । ବରଗଡ଼, ସମ୍ବଲପୁର, ଝାରସୁଗୁଡ଼ା, ବରପାଲି, ରେମଣ୍ଡା, ପାଣିମୋରା ଓ ସମଲାଇ ପଦର ଇତ୍ୟାଦି ଅଞ୍ଚଳରେ ଆଇନ ଅମାନ୍ୟ ଆନ୍ଦୋଳନ ତୀବ୍ରରୂପ ଧାରଣ କରିଥିଲା । ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ୧୯୪୦ ଖ୍ରୀଷ୍ଟାବ୍ଦରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା । ବ୍ୟକ୍ତିଗତ ସତ୍ୟାଗ୍ରହରେ ଯୋଗଦେଇ ଲକ୍ଷ୍ମୀ ନାରାୟଣ ମିଶ୍ର, ଦୟାନନ୍ଦ ଶତପଥୀ, ବୋଧିରାମ ଦୁବେ, ଫକୀର ବେହେରା, ମଙ୍ଗଳୁ ପ୍ରଧାନ, ପ୍ରହଲ୍ଲାଦ ରାୟ ଲାଠ, ଘନଶ୍ୟାମ ପାଣିଗ୍ରାହୀ, ଉପେନ୍ଦ୍ର ପାଣିଗ୍ରାହୀ, ପ୍ରଭାବତୀ ଦେବୀ, ଗଙ୍ଗାଧର ସରାଫ ଓ ଭାଗୀରଥି ନାୟକ ପ୍ରମୁଖ ଗିରଫ ହୋଇଥିଲେ । ଭାରତଛାଡ଼ ଆନ୍ଦୋଳନର ଅବ୍ୟାହତ ପୂର୍ବରୁ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟିରେ ଯୋଗଦେବା ପାଇଁ ସମ୍ବଲପୁରରୁ ଲକ୍ଷ୍ମୀନାରାୟଣ ମିଶ୍ର ଓ ପ୍ରହଲ୍ଲାଦ ରାୟ ଲାଠ ବମ୍ବେ ଯାଇଥିଲେ । କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଭାରତ ଛାଡ଼ ପ୍ରସ୍ତାବ ଗୃହୀତ ହେଲା । ବମ୍ବେରୁ ଫେରିବା ସମୟରେ ଲକ୍ଷ୍ମୀନାରାୟଣ ମିଶ୍ର ଗିରଫ ହେଲେ । ଭାରତଛାଡ଼ ଆନ୍ଦୋଳନ ସମୟରେ ଭାରତ ରକ୍ଷା ଆଇନ ଦ୍ୱାରା ନୃସିଂହ ଗୁରୁ, ଦୟାନନ୍ଦ ଶତପଥୀ, ଦୁର୍ଗାପ୍ରସାଦ ଗୁରୁ, ଓରାମ ରକ୍ଷା ଶୁକ୍ଳ ପ୍ରଭୃତି ଗିରଫ ହେଲେ । ଭାରତଛାଡ଼ ଆନ୍ଦୋଳନର ପ୍ରଭାବ ବଲାଙ୍ଗୀର, ଖରିଆର, କଳାହାଣ୍ଡି, ସୋନପୁର ପ୍ରଭୃତି ଅଞ୍ଚଳରେ ପରିଲକ୍ଷିତ ହୋଇଥିଲା । ଭାରତଛାଡ଼ ଆନ୍ଦୋଳନରେ ଅଂଶଗ୍ରହଣ କରି ବରଗଡ଼ ଜିଲ୍ଲାର ୩୨ ଜଣ ସଂଗ୍ରାମୀ ଗିରଫ ହୋଇଥିଲେ ।

ପଶ୍ଚିମ ଓଡ଼ିଶାର ଅନେକ ମୁକ୍ତି ପ୍ରେମୀ ଓ ସ୍ୱାଧୀନ ଚେତା ମହିୟସୀ ମହିଳା ଆଗେଇ ଆସିଥିଲେ ଅତ୍ୟାଚାରୀ ଇଂରେଜ ସରକାରଙ୍କର ପ୍ରତିରୋଧ କରିବା ପାଇଁ । ଅନେକ ଘାତ, ପ୍ରତିଘାତ ଓ ସଂଘର୍ଷମୟ ପରିସ୍ଥିତିର ସମ୍ମୁଖୀନ ହୋଇ ଦେଶମୁକ୍ତି ପାଇଁ ପ୍ରାଣବଳି ଦେବାକୁ କେବେ ସେମାନେ ପଛଘୁଞ୍ଚା ଦେଇ ନଥିଲେ । ସେହି ବରେଣ୍ୟ ବିପ୍ଳବିନୀ ନାରୀ ସଂଗ୍ରାମୀମାନେ ସମଗ୍ର ଓଡ଼ିଆ ଜାତିର ଚିର ନମସ୍ୟ । ଶ୍ରୀମତୀ ଜାମ୍ବୋବତୀ ପଟ୍ଟନାୟକ, ପ୍ରଭାବତୀ ଦେବୀ ଏବଂ ପାର୍ବତୀ ଗିରି ଥିଲେ ପଶ୍ଚିମ ଓଡ଼ିଶାର ପ୍ରଭାବଶାଳୀ ନାରୀ ସ୍ୱାଧୀନତା ସଂଗ୍ରାମୀ । ସେମାନଙ୍କର ତ୍ୟାଗ, ବଳିଦାନ ଓ ଆଦର୍ଶ ଏ ଜାତି ପାଇଁ ଗର୍ବ ଓ ଗୌରବ । ସୋନପୁର ପ୍ରଜା ଆନ୍ଦୋଳନ ସମୟରେ ବିନିକାର ଗୁରୁବାରୀ ମେହେର ନାମକ ଜଣେ ବୟସ୍କା ନାରୀ ଇଂରେଜ ସମର୍ଥିତ ଅତ୍ୟାଚାରୀ ରାଜାଙ୍କର ପୋଲିସ ଗୁଳିରେ ଶହୀଦ ହୋଇଥିଲେ । ସେ ଥିଲେ ପଶ୍ଚିମ ଓଡ଼ିଶାର ପ୍ରଥମ ଶହୀଦ ।

ପଶ୍ଚିମ ଓଡ଼ିଶାର ଗଡ଼ଜାତ ରାଜ୍ୟ ସମୂହର ପ୍ରଜା ଆନ୍ଦୋଳନ ଏକଛତ୍ରବାଦୀ ଅହଂକାରୀ ରାଜୁଡ଼ା ଶାସନ ଓ ସାମ୍ରାଜ୍ୟବାଦୀ ଇଂରେଜ ସରକାରଙ୍କ ପ୍ରତି ଥିଲା ସତର୍କ ଘଣ୍ଟି । ବେଠି, ବେଗାରୀ, ରସଦ ଓ ମାଜନ ଇତ୍ୟାଦି ଅନ୍ୟାୟ କର ପ୍ରଜାମାନଙ୍କର ଆର୍ଥିକ ମାନଦଣ୍ଡକୁ ବିପର୍ଯ୍ୟସ୍ତ କରୁଥିବା ସମୟରେ ରାଜାମାନଙ୍କର ଅମାନୁଷିକ ଅତ୍ୟାଚାରର ସୀମା ଅତିକ୍ରମ କରିଥିଲା । ପ୍ରଜାମାନଙ୍କ ହୃଦୟରେ ସୃଷ୍ଟି ହୋଇଥିବା ତୀବ୍ର ଅସନ୍ତୋଷ ପରବର୍ତ୍ତୀ ସମୟରେ ପ୍ରଜା ଆନ୍ଦୋଳନ ପାଇଁ ପଥ ଉନ୍ମୁକ୍ତ ହୋଇଥିଲା । ପଶ୍ଚିମ ଓଡ଼ିଶାର ପୂର୍ବତନ ଗଡ଼ଜାତ ରାଜ୍ୟ ବଲାଙ୍ଗୀର-ପାଟଣା, ସୋନପୁର, କଳାହାଣ୍ଡି, ବାମଣ୍ଡା ଇତ୍ୟାଦିରେ ପ୍ରଜାମାନଙ୍କର ଅତ୍ୟାଚାରୀ ରାଜା ଓ ବୈଦେଶିକ ଶତ୍ରୁ ଇଂରେଜ ଶକ୍ତି ବିରୋଧରେ ସଂଗ୍ରାମ ଥିଲା ଅଭୂତପୂର୍ବ ତଥା ଉତ୍ସାହପ୍ରଦ । ପ୍ରଜା ଆନ୍ଦୋଳନର ସତ୍ୟାଗ୍ରହୀ ଓ ସଂଗ୍ରାମୀମାନଙ୍କର ଅସୀମ ତ୍ୟାଗ ଓ ଆତ୍ମୋତ୍ସର୍ଗର କାହାଣୀ ଓଡ଼ିଆ ଜାତିର ଇତିହାସରେ ଏକ କାଳଜୟୀ ଅଧ୍ୟାୟ । ନିରବଚ୍ଛିନ୍ନ ଭାବରେ ସେମାନେ ସଂଗ୍ରାମ ଅବ୍ୟାହତ ରଖି ନିରଙ୍କୁଶ ରାଜତନ୍ତ୍ର ଶାସନ ବିରୋଧରେ ଜନମତକୁ ପ୍ରଭାବିତ କରିଥିଲେ ।

ବଲାଙ୍ଗୀର-ପାଟଣା ଚୌହାଣ ରାଜବଂଶର ଶେଷ ଶାସକ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ବିରୋଧରେ ୧୯୩୮ ଖ୍ରୀଷ୍ଟାବ୍ଦରେ ଏକ ପ୍ରଜା ଆନ୍ଦୋଳନ ଦେଖା ଦେଇଥିଲା । ବିଦ୍ରୋହୀମାନେ ମହାରାଜାଙ୍କ ନିକଟରେ ୧୭ ଦଫା ଦାବି ସମ୍ବଳିତ ଏକ ପତ୍ର ଉପସ୍ଥାପନ କରିଥିଲେ । ଏହି ଦାବିପତ୍ରରେ ପ୍ରଜାମାନେ ଲୋକ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ପ୍ରଚଳନ କରିବା, ଖଜଣା ହାର କମାଇବା, ପ୍ରଜାମାନେ ନିଜର ଜମି ବିକ୍ରି କରିବାର ଅଧିକାର, ବେଠି, ବେଗାରୀ, ରସଦ ଇତ୍ୟାଦି ପ୍ରଥାର ବିଲୋପ ଓ ରାଜ୍ୟର ଶିକ୍ଷିତ ବ୍ୟକ୍ତିମାନଙ୍କୁ ରାଜ କାର୍ଯ୍ୟରେ ନିଯୁକ୍ତି ଦେବା ଇତ୍ୟାଦି ଉଲ୍ଲେଖ ଥିଲା । ବଲାଙ୍ଗୀର-ପାଟଣା ମହାରାଜା ସଂଗଠିତ ପ୍ରଜାମଣ୍ଡଳ ଆନ୍ଦୋଳନକୁ ପ୍ରଶମିତ କରିବା ଉଦ୍ଦେଶ୍ୟରେ ନିଜ ଅନୁଗତ ରାଜଭକ୍ତ ବ୍ୟକ୍ତିମାନଙ୍କୁ ନେଇ ପ୍ରଜାମଣ୍ଡଳ ନାମକ ଏକ ଅନୁଷ୍ଠାନ ଗଠନ କରିଥିଲେ । ଅପରପକ୍ଷରେ କପିଳେଶ୍ୱର ପ୍ରସାଦ ନନ୍ଦଙ୍କ ସଭାପତିତ୍ୱରେ ପ୍ରଜାମାନଙ୍କର ସ୍ୱାର୍ଥର ସୁରକ୍ଷା ପାଇଁ ୧୯୪୬ ମସିହାରେ କୃଷକ ଦଳ ନାମକ ଏକ ପ୍ରଜାମଣ୍ଡଳ ସଂଗଠନ ଆରମ୍ଭ କରାଯାଇଥିଲା । କୃଷକ ଦଳ ସର୍ବଭାରତୀୟ ପ୍ରଜା ସମ୍ମିଳନୀ ଦ୍ୱାରା ସ୍ୱୀକୃତି ଲାଭ କରିଥିଲା । ଏହି ଅନୁଷ୍ଠାନର ଉପସଭାପତି ରୂପେ ଯୁଧିଷ୍ଠିର ମିଶ୍ର ଓ ବଳଭଦ୍ର ପାଣିଗ୍ରାହୀ ସଂପାଦକ ରୂପେ ଦାୟିତ୍ୱ ଗ୍ରହଣ କରି ପ୍ରଜା ଆନ୍ଦୋଳନକୁ ସକ୍ରିୟ ଓ ଗତିଶୀଳ କରିପାରିଥିଲେ । ଏହି





ଆନ୍ଦୋଳନରେ ଦିବାକର ବହିଦାର ଓ ଚିନ୍ତାମଣି ରଥ ପ୍ରମୁଖ ନିଷ୍ଠାପର ତଥା ନିର୍ଭୀକ କର୍ମୀମାନେ ନିଃସ୍ୱାର୍ଥପର ଭାବରେ ପ୍ରଜା ଆନ୍ଦୋଳନରେ ଝାସ ଦେଇଥିଲେ । ପାଟଣା ରାଜ୍ୟରେ ମାଜିଷ୍ଟ୍ରେଟ୍‌ଙ୍କ ନେତୃତ୍ୱରେ ଏକ ପୋଲିସ ଦଳ ସୀମାନ୍ତ ଅଞ୍ଚଳର ବିଦ୍ରୋହକୁ ଦମନ କରିବା ଏବଂ ବିଦ୍ରୋହୀମାନଙ୍କୁ ଗିରଫ କରିବା ଉଦ୍ଦେଶ୍ୟରେ ସେ ଅଞ୍ଚଳରେ ପହଞ୍ଚିଥିଲେ । ସମ୍ବଲପୁରରେ ଅବସ୍ଥାପିତ ଇଂରେଜ କର୍ତ୍ତୃପକ୍ଷଙ୍କଠାରୁ ସାମାଜିକ ସାହାଯ୍ୟ ପାଇଁ ପାଟଣା ରାଜଦରବାର ଅନୁରୋଧ କରିଥିଲେ । ୧୯୪୭ ମସିହା ଫେବୃଆରୀ ୧୯ ତାରିଖରେ ୭୦୦ ବିଦ୍ରୋହୀ ଇଟା ଓ ପଥର ଧରି ଅଗଲପୁର ଥାନା ଆକ୍ରମଣ କରିଥିଲେ । ଥାନା ଉପରେ ଜାତୀୟ କଂଗ୍ରେସର ପତାକା ଉଡ଼ାଇବା ପାଇଁ ଉଦ୍ୟମ କରିଥିଲେ ।

୧୯୪୭ ମସିହା ଫେବୃଆରୀ ୨୩ ତାରିଖ ଦିନ ବଲାଙ୍ଗୀର ସହରରେ କୃଷକ ଦଳର ତତ୍ତ୍ୱାବଧାନରେ ବୃହତ ପ୍ରଜା ସମ୍ମିଳନୀର ଆୟୋଜନ କରାଯାଇଥିଲା । ଉକ୍ତ ସମ୍ମିଳନୀରେ ଓଡ଼ିଶାର ବରିଷ୍ଠ ତଥା ବରେଣ୍ୟ ପ୍ରଜା ଆନ୍ଦୋଳନ ସଂଗ୍ରାମୀ ସାରଙ୍ଗଧର ଦାସ ଓ ମାଳତୀ ଚୌଧୁରୀ ପ୍ରଭୃତି ସଭାରେ ରାଜତନ୍ତ୍ର ସ୍ୱେଚ୍ଛାଚାରୀ ଶାସନର ତୀବ୍ର ସମାଲୋଚନା କରିଥିଲେ । ସୁନାଧର ଭୋଇଙ୍କ ନେତୃତ୍ୱରେ ଅଗଲପୁର ଥାନା ଅନ୍ତର୍ଗତ ବାଇଶଖଣ୍ଡ ଗ୍ରାମର ଜନସାଧାରଣ ରାଜଦରବାରକୁ କୌଣସି କର ନଦେବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଲୋଇଁସିଂହା ଥାନା ଅନ୍ତର୍ଗତ କୋଡ଼ିଏଖଣ୍ଡ ଗ୍ରାମର ଗ୍ରାମବାସୀମାନେ ତ୍ରିପୁରାରୀ କୁଅଁରଙ୍କ ନେତୃତ୍ୱରେ ଅନୁରୂପ ଏକ ନିଷ୍ପତ୍ତି ନେଇଥିଲେ । ପାଟଣା ରାଜଦରବାର ଅନୁରୋଧରେ ଏକ ପ୍ଲାଟୁନ ପୋଲିସ ଫୋର୍ସ ୧୯୪୭ ମସିହା ଫେବୃଆରୀ ୨୪ ତାରିଖରେ ଆସି ପହଞ୍ଚିଲେ । ପାଟଣାର ତତ୍କାଳୀନ ଅତିରିକ୍ତ ମାଜିଷ୍ଟ୍ରେଟ୍ ସର୍ଦ୍ଦାରଅମର ସିଂ ବିଶୃଙ୍ଖଳିତ ଅଞ୍ଚଳର ଦାୟିତ୍ୱରେ ଥିଲେ । ସେ ମଧ୍ୟ ରେଙ୍ଗାଲି ଅଞ୍ଚଳ ପରିଦର୍ଶନରେ ଯାଇ ବିଦ୍ରୋହୀମାନଙ୍କ ସହିତ ଦୁଇଟି ସଭାରେ ମିଳିତ ହୋଇ ଶାନ୍ତି ସ୍ଥାପନ ଓ ଆନ୍ଦୋଳନ ପ୍ରତ୍ୟାହୃତ ପାଇଁ ପରାମର୍ଶ ଦେଇଥିଲେ । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ରାଜଦରବାରର ବହୁ ବରିଷ୍ଠ କର୍ମକର୍ତ୍ତାମାନେ ଲଙ୍ଗସା, ରେଙ୍ଗାଲି, ବୁଢ଼ଲା ପ୍ରଭୃତି ଅଞ୍ଚଳ ପରିଦର୍ଶନ କରି ଶାନ୍ତି ସ୍ଥାପନ କରିବା ସହିତ ଦରବାର ପ୍ରତି ଆନୁଗତ୍ୟ ପ୍ରକାଶ କରିବାକୁ ପରାମର୍ଶ ଦେଇଥିଲେ । ପରିଶେଷରେ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ତାଙ୍କ ମନ୍ତ୍ରିମଣ୍ଡଳରେ କୃଷକ ଦଳ ପ୍ରଜାମଣ୍ଡଳରୁ ଜଣେ ଜଣେ ପ୍ରତିନିଧିଙ୍କୁ ସ୍ଥାନ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ ।

ସୋନପୁର ତତ୍କାଳୀନ ସମୟରେ ପଶ୍ଚିମ ଓଡ଼ିଶାର ଏକ ପ୍ରସିଦ୍ଧ ଗଡ଼ଜାତ ରାଜ୍ୟ ରୂପେ ମାନ୍ୟତା ଲାଭ କରିଥିଲା । ମନ୍ଦିର ସଂସ୍କୃତି, ପ୍ରାଚୀନ ଐତିହ୍ୟ, ସାଂସ୍କୃତିକ ବିଭବ, ଭାଷା, ସାହିତ୍ୟକୁ ଏହି ପୂର୍ବତନ ଦେଶୀୟ ରାଜ୍ୟର ଅବଦାନ ଅତୁଳନୀୟ । କିନ୍ତୁ ବିଂଶ ଶତାବ୍ଦୀରେ ଏଠାରୁ ଆରମ୍ଭ ହୋଇଥିବା ପ୍ରଜା ଆନ୍ଦୋଳନ ଅତ୍ୟାଚାରୀ ରାଜଶକ୍ତି ଶାସନର ନଗ୍ନରୂପ ଲୋକଲୋଚନକୁ ଆଣିଥିଲା । ସୋନପୁର ଗଡ଼ଜାତ ରାଜ୍ୟର ପ୍ରଜାମାନଙ୍କର ନ୍ୟାର୍ଯ୍ୟ ଦାବି ହାସଲ ପାଇଁ ପ୍ରଜାମଣ୍ଡଳ ଗଠନ ନିମନ୍ତେ କେତେଜଣ ଉତ୍ସାହୀ, ସତ୍ୟନିଷ୍ଠ ସଂଗ୍ରାମୀମାନେ ଉଦ୍ୟମ କରିଥିଲେ । ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, ଚତୁର୍ଭୁଜ ମିଶ୍ର, ଗଙ୍ଗା ପ୍ରସାଦ ଅଗ୍ରୱାଲା ଏବଂ ଦାମୋଦର ରଥ ପ୍ରମୁଖ ଦୁଃସାହସୀ କର୍ମୀ ଦୁର୍ଦ୍ଦାନ୍ତ ରାଜତନ୍ତ୍ର ଶାସନ ବିରୋଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ । ଡୁରୁମ ଗ୍ରାମର ଡୋଳାମଣି ଗୌନ୍ତିଆଙ୍କ ଘର ପ୍ରଜାମଣ୍ଡଳ ଆନ୍ଦୋଳନକାରୀଙ୍କ ମୁଖ୍ୟ ଆଲୋଚନାସ୍ଥଳୀ । ଲକ୍ଷ୍ମଣ ଶତପଥୀ ଓ ମୋହନ ମିଶ୍ରଙ୍କୁ ରାଜଦ୍ରୋହ ଅପରାଧରେ ଏକ ବର୍ଷ ଜେଲଦଣ୍ଡ ଓ ହଜାରେ ଟଙ୍କା ଜୋରିମାନା କରାଯାଇଥିଲା । ଅନ୍ୟ ଜଣେ ପ୍ରଜାମଣ୍ଡଳ କର୍ମୀ ବାଞ୍ଛାବଟ ପୂଜାରୀଙ୍କୁ ନିର୍ମମ ମାଡ଼ ମରାଯାଇ ଆଠମାସ ପର୍ଯ୍ୟନ୍ତ ଜେଲ ଦଣ୍ଡରେ ଦଣ୍ଡିତ କରାଗଲା । ପଲିଟିକାଲ ଏଜେଣ୍ଟ ବାଷ୍ଟେଟ ସାହେବ ସୋନପୁର ପରିଦର୍ଶନରେ ଆସିଥିବା ସମୟରେ ସଂଗ୍ରାମୀ ଲକ୍ଷ୍ମଣ ଶତପଥୀଙ୍କୁ ଜେଲ୍‌ରେ ସାକ୍ଷାତ କରିଥିଲେ । ସୋନପୁର ଗଡ଼ଜାତ ରାଜ୍ୟରେ ଅତ୍ୟାଚାରୀ ରାଜତନ୍ତ୍ର ଶାସନର ପ୍ରକୃତ ତଥ୍ୟ ଲକ୍ଷ୍ମଣ ଶତପଥୀ ପଲିଟିକାଲ ଏଜେଣ୍ଟ ବାଷ୍ଟେଟ ସାହେବଙ୍କୁ ଅବଗତ କରାଇ ଅଣାଯାଇ ସୋନପୁର ରାଜଦରବାର ପକ୍ଷରୁ ପେସ୍ କରାଯାଉଥିଲା । ଅଭିଯୁକ୍ତ ପ୍ରଜାମଣ୍ଡଳ କର୍ମୀମାନଙ୍କୁ ଓକିଲ ଦେବାକୁ ଅନୁମତି ଦିଆଯାଉନଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ପ୍ରଜାମଣ୍ଡଳର ଦାବି ସୋନପୁର ରାଜା ସ୍ୱୀକାର କରି ଓକିଲମାନଙ୍କର ସହାୟତା ନେବା ପାଇଁ ମଂଜୁର ପ୍ରଦାନ କରିଥିଲେ । ଯାହାଦ୍ୱାରା ସମ୍ବଲପୁରରୁ ଅନନ୍ତରାମ ଗୁରୁ, ଶ୍ରଦ୍ଧାକର ସୂପକାର ଓ ଈଶ୍ୱର ପ୍ରସାଦ ମିଶ୍ର ପ୍ରଭୃତି ପ୍ରଜାମଣ୍ଡଳ ଓକିଲମାନଙ୍କର କେଶ ପରିଚାଳନା କରିବା ପାଇଁ ସୋନପୁରକୁ ଆସିଥିଲେ ।

୧୯୪୨ ମସିହାର ମହାନ୍ ଭାରତଛାଡ଼ ଆନ୍ଦୋଳନ ସମୟରେ ସୋନପୁରର ପ୍ରଜାମଣ୍ଡଳ କର୍ମୀ ଓ କଂଗ୍ରେସର ସଂଗ୍ରାମୀ ନେତାମାନେ ଆନ୍ଦୋଳନକୁ ସଫଳ କରିବା ନିମନ୍ତେ ସବୁମତେ ଉଦ୍ୟମ କରିଥିଲେ । ଏହି ଆନ୍ଦୋଳନ ସମୟରେ ଭବିଷ୍ୟତ ବିପଦର ଆଶଙ୍କା କରି ରାଜଦରବାର ରାମଚନ୍ଦ୍ର ଶତପଥୀ, ଲକ୍ଷ୍ମଣ ଶତପଥୀ, ମୋହନ ମିଶ୍ର, ଚତୁର୍ଭୁଜ ମିଶ୍ର, ସତ୍ୟାନନ୍ଦ ହୋତା, ଦାମୋଦର ରଥ, ଦାଶରଥି ପ୍ରସାଦ ରଥ ପ୍ରଭୃତିଙ୍କୁ ଦୁଇବର୍ଷ ଦୁଇମାସ ପର୍ଯ୍ୟନ୍ତ ଅଟକ ବନ୍ଦୀ ରଖିଥିଲେ । ବିନିକା ଥାନା ଅନ୍ତର୍ଗତ କଳାପଥର ନିକଟସ୍ଥ ବଗଛେରା ଗ୍ରାମରେ ୧୯୪୬ ମସିହା ମେ ମାସରେ ଏକ ବୃହତ୍ ପ୍ରଜାମଣ୍ଡଳ କର୍ମୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସାରଙ୍ଗଧର ଦାସ ଏହି ଅଧିବେଶନରେ ସଭାପତି ଆସନ ଅଳଙ୍କୃତ କରିଥିଲେ । ଏହି ଅଧିବେଶନରେ ୩୦/୪୦ ହଜାର ଜନସାଧାରଣ ଯୋଗଦାନ କରିଥିଲେ । ସୋନପୁର ଛାତ୍ରମାନଙ୍କ ଦ୍ୱାରା ଛାତ୍ର-କଂଗ୍ରେସ ଗଠନ କରାଗଲା । ଦୁର୍ଯ୍ୟୋଧନ ଶତପଥୀ, ସୁରେଶ





ମିଶ୍ର, ସତ୍ୟନାରାୟଣ ମିଶ୍ର, ପଦ୍ମଲୋଚନ ଡାଙ୍ଗ ପ୍ରଭୃତି ଛାତ୍ରନେତାମାନେ ଏଥିରେ ଅଂଶ ଗ୍ରହଣ କରିଥିଲେ । ତରଭାର ଧନୀ ବ୍ୟକ୍ତିମାନେ କର୍ମୀମାନଙ୍କ ଉପରେ ବାରମ୍ବାର ଆକ୍ରମଣ କରୁଥିବାରୁ ଏହାର ପ୍ରତିବାଦ କରି ଶଶୀଭୂଷଣ ସାହୁ ନୀଳକୁର୍ତ୍ତା ବାହିନୀ ଗଠନ କଲେ । ସୋନପୁର ପ୍ରଜା ଆନ୍ଦୋଳନ ଗଡ଼ଜାତ ଇତିହାସରେ ଏକ ରୋମାଞ୍ଚକର ଅଧ୍ୟାୟ ।

ପୂର୍ବତନ କଳାହାଣ୍ଡି ଗଡ଼ଜାତ ରାଜ୍ୟରେ ଇଂରେଜ ବିରୋଧୀ ଆନ୍ଦୋଳନ ସରଳ ଓ ନିରୀହ ଆଦିବାସୀ ଜନତାଙ୍କୁ ଗଭୀର ଭାବରେ ଆକର୍ଷିତ କରିଥିଲା । ଆଦିବାସୀ ନେତା ଲାଲ ସିଂ ସମସ୍ତ ପ୍ରଲୋଭନ ସତ୍ତ୍ୱେ ସଂଗ୍ରାମୀମାନଙ୍କର ଖାଦ୍ୟପେୟ ଓ ନିରାପତ୍ତା ଦାୟିତ୍ୱ ବହନ କରିଥିଲେ । ଅବିଭକ୍ତ କଳାହାଣ୍ଡି ଜିଲ୍ଲାର ଖରିଆରରେ ଇଂରେଜ ବିରୋଧୀ ତଥା ଦେଶପ୍ରେମୀ ଆଦିବାସୀ ଜମିଦାର ନାରାୟଣ ସାହୁଙ୍କୁ ଇଂରେଜମାନେ ଫାଶୀ ଦେଇଥିଲେ । କଳାହାଣ୍ଡି ଗଡ଼ଜାତ ପ୍ରଜା ଆନ୍ଦୋଳନର ପ୍ରତିଷ୍ଠାତା ଥିଲେ ଲକ୍ଷ୍ମଣ ପ୍ରସାଦ ବେହେରା । ସେ ଗାନ୍ଧିଜୀଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ପୂର୍ବତନ ଦେଶୀୟ ରାଜ୍ୟ କଳାହାଣ୍ଡିରେ କଂଗ୍ରେସ ଆନ୍ଦୋଳନକୁ ସକ୍ରିୟ ତଥା ତ୍ୱରାନ୍ୱିତ କରିଥିଲେ । କଳାହାଣ୍ଡି ଗଡ଼ଜାତ ଆନ୍ଦୋଳନକୁ ସମର୍ଥନ କରି ଏବଂ ସାହାଯ୍ୟ କରିବା ନିମନ୍ତେ ବଲାଙ୍ଗୀରରୁ ଛାତ୍ର ନେତା ନରସିଂହ ପ୍ରସାଦ ନନ୍ଦ, ବିଘ୍ନରାଜ ପଟେଲ, ସ୍ୱପ୍ନାନନ୍ଦ ପାଣିଗ୍ରାହୀ ଓ ସିଦ୍ଧେଶ୍ୱର ରାଏ ସେଠାକୁ ଯାଇଥିଲେ । କିନ୍ତୁ କଳାହାଣ୍ଡିର କେସିଙ୍ଗା ଷ୍ଟେସନରେ ରାଜାଙ୍କ ପୋଲିସ୍ ଛାତ୍ର ନେତାମାନଙ୍କୁ ତଡ଼ି ଦେବାରୁ ସେମାନେ ଫେରି ଆସିଥିଲେ । ପଶ୍ଚିମ ଓଡ଼ିଶାର ସତ୍ୟନିଷ୍ଠ ସଂଗ୍ରାମୀମାନଙ୍କ ଦୁଃସାହସିକ ସଂଗ୍ରାମ ମୁକ୍ତି ଯୁଦ୍ଧକୁ ଗୌରବାନ୍ୱିତ ତଥା ମହିମାମଣ୍ଡିତ କରିଅଛି । ମୁକ୍ତି ଯୁଦ୍ଧର ଅପରାଜିତ ଯୋଦ୍ଧାମାନଙ୍କର ସଂଘର୍ଷମୟ ସଂଗ୍ରାମୀ ଜୀବନ ପଶ୍ଚିମ ଓଡ଼ିଶା ତଥା ସମଗ୍ର ଓଡ଼ିଶା ପାଇଁ ଗର୍ବ ଓ ଗୌରବର ବିଷୟ । ସ୍ୱତନ୍ତ୍ରତା ସେନାନୀମାନଙ୍କର ତ୍ୟାଗପୂତ ଆଦର୍ଶ ଜୀବନ ଉତ୍ତରଦାୟାଦମାନଙ୍କ ହୃଦୟରେ ଦେଶପ୍ରେମ, ଜାତୀୟତା, ସ୍ୱଦେଶବତ୍ସଳତାର ଭାବ ଉଦ୍ରେକ କରିବ ଏଥିରେ କୌଣସି ସନ୍ଦେହ ନାହିଁ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪



ରାଜ୍ୟ ସଚିବାଳୟଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସ୍ୱାସ୍ଥ୍ୟ ଉନ୍ନୟନ ପ୍ରକଳ୍ପ ଓ ଏଡ୍‌ସ ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ସମୀକ୍ଷା କରୁଛନ୍ତି । ନିକଟରେ ସ୍ୱାସ୍ଥ୍ୟ ତଥା ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ବିଜୟଶ୍ରୀ ରାଉତରାୟ ଓ ଅନ୍ୟାନ୍ୟ ଉଚ୍ଚପଦସ୍ଥ ଅଧିକାରୀମାନେ ଉପସ୍ଥିତ ଅଛନ୍ତି । ୨୪.୧୨.୦୪





# କେନ୍ଦୁଝର ଗଡ଼ଜାତ ଓ ଅସହଯୋଗ ଆନ୍ଦୋଳନ

ଦୈତାରୀ ପୁହାଣ

ମଣିଷ ସମାଜର ଗଣତାନ୍ତ୍ରିକ ଚିନ୍ତା ଓ ଚେତନାକୁ ସମୁଜ୍ଜ୍ୱଳ କରିବାର ବହୁ ମହନୀୟ ଦୃଷ୍ଟାନ୍ତମାନ ସୃଷ୍ଟି କରିଥିବା ଇତିହାସରେ ଗୌରବାବହ ସ୍ଥାନର ଅଧିକାରୀ ଏହି କେନ୍ଦୁଝର ଦେଶର ଅଗ୍ରଗଣ୍ୟ ଭୂଖଣ୍ଡ ଭାବରେ ମଧ୍ୟ ପରିଚିତ । ଅଧୁନାତନ କେନ୍ଦୁଝର ଜିଲ୍ଲାଟି ୧୯୪୮ ମସିହା ଜାନୁଆରୀ ମାସ ପହିଲା ତାରିଖ ପୂର୍ବରୁ ଗୋଟିଏ ଗଡ଼ଜାତ ରାଜ୍ୟ ଭାବରେ ନିଜର ସ୍ୱତନ୍ତ୍ର ସ୍ଥିତିକୁ ନେଇ ପ୍ରତିଷ୍ଠିତ ଥିଲା । ପ୍ରାୟ ଏକ ହଜାର ବର୍ଷ ଧରି ତା'ର ଏହି ସ୍ଥିତି ଅପରିବର୍ତ୍ତିତ ଅବସ୍ଥାରେ ରହିଥିଲା । ଭାରତବର୍ଷର ଅନୁରୂପ ବହୁଅଞ୍ଚଳ ଭଳି ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଭାରତବର୍ଷକୁ ନିଜ ଅଧିକାରରେ ରଖିଥିବା ସାମ୍ରାଜ୍ୟବାଦୀ ଇଂରେଜ ସରକାରଙ୍କର ମିତ୍ର କରଦ ରାଜ୍ୟ ଭାବରେ ପରିଗଣିତ ହେଉଥିଲା । ରାଜନୈତିକ ଦୃଷ୍ଟିକୋଣରୁ ଏହା ପ୍ରକୃତରେ ଏକ ଉଦ୍ଭଟ ବ୍ୟବସ୍ଥା ।

ଦଶମ ଶତାବ୍ଦୀର ପ୍ରାରମ୍ଭରୁ ଏହି ରାଜ୍ୟର ସ୍ୱାଭିମାନୀ ଅଧିବାସୀମାନେ ନିଜ ପସନ୍ଦ ଅନୁଯାୟୀ ଏକ ରାଜବଂଶର ପ୍ରତିଷ୍ଠା ପୂର୍ବକ ମୟୂରଭଞ୍ଜ ରାଜ୍ୟରୁ ପୃଥକ୍ ଏହି ଅଞ୍ଚଳକୁ ନେଇ ଗୋଟିଏ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ ଏବଂ ବହୁକାଳ ଧରି ତା'ର ଶାସନ ବ୍ୟବସ୍ଥାରେ ଜନଶକ୍ତି ଏବଂ ଗଣତାନ୍ତ୍ରିକ ଐତିହ୍ୟର ସୁରକ୍ଷାକୁ ଏକ ପାରମ୍ପରିକ ପଦ୍ଧତି ଦ୍ୱାରା ସୁନିୟନ୍ତ୍ରିତ କରି ଆସୁଥିଲା । କୌଣସି ଶାସନ ମୁଖ୍ୟ ରାଜା ବା ମହାରାଜାଙ୍କର ମୃତ୍ୟୁପରେ ତାଙ୍କର ପରବର୍ତ୍ତୀ ଉତ୍ତରାଧୀକାରୀଙ୍କର ରାଜ୍ୟାଭିଷେକକୁ ପ୍ରଜା ସମ୍ମତି ଦ୍ୱାରା ସୁନିୟନ୍ତ୍ରିତ କରିବା ହିଁ ଏକ ଚିରାଚରିତ ପ୍ରଥା ଭାବରେ ପ୍ରଚଳିତ ଥିଲା । ଏହା ମାମୁଲି ଐତିହାସିକ କିମ୍ବଦନ୍ତୀ ମାତ୍ର ନୁହେଁ, ତାହା ହିଁ ପ୍ରକୃତରେ ନିରାଟ ସତ୍ୟ ଉପରେ ଆଧାରିତ ପାରମ୍ପରିକ କାର୍ଯ୍ୟାନୁଷ୍ଠାନ ଯାହାକି ମଣିଷ ସଭ୍ୟତାର ପ୍ରାକ୍ ଉନ୍ମେଷ କାଳରୁ ଅନୁଷ୍ଠିତ ଗଣତାନ୍ତ୍ରିକ ଚିନ୍ତାଧାରାର ଏକ ବଳିଷ୍ଠ ପଦକ୍ଷେପ ।

ଭାରତବର୍ଷ ମଧ୍ୟରେ ଇଂରେଜମାନଙ୍କର ନିରଙ୍କୁଶ କର୍ତ୍ତୃତ୍ୱ ରହିଥିବା ସମୟରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପ୍ରାରମ୍ଭରେ ପ୍ରଥମେ ରତ୍ନାକର ନାୟକ ଏବଂ ଉଲ୍ଲିଖିତ ଶତାବ୍ଦୀର ଶେଷ ଭାଗରେ ଧରଣୀଧର ନାୟକଙ୍କ ଭଳି ଜନନେତାମାନେ ଦୁଇଗୋଟି ସଫଳ ପ୍ରଜା ବିଦ୍ରୋହର ନେତୃତ୍ୱ ନେଇ ଜନଶକ୍ତିର ସାମର୍ଥ୍ୟକୁ ପ୍ରଦର୍ଶନ କରିଥିଲେ । ସଂଗ୍ରାମୀ ନନ୍ଦକିଶୋର ରାଜ୍ୟର ରାଜସ୍ୱ ବିଭାଗରେ ଜଣେ ପଦସ୍ଥ ଅଧିକାରୀ ଭାବରେ କାର୍ଯ୍ୟରତ ଥିଲେ । ତାଙ୍କର ବଡ଼ଭାଇଙ୍କର ବଡ଼ପୁଅକୁ ନେଇ ଉତ୍କଳମଣିଙ୍କ ଦ୍ୱାରା ପ୍ରତିଷ୍ଠିତ ସତ୍ୟବାଦୀ ବନ ବିଦ୍ୟାଳୟରେ ଅଧ୍ୟୟନ ପାଇଁ ନାମ ଲେଖାଇ ଥିଲେ । ସେହି ସୂତ୍ରରେ ଓଡ଼ିଶାର ପରମ ସମ୍ମାନାସ୍ପଦ ବରେଣ୍ୟ କଂଗ୍ରେସ ନେତା ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହ ତାଙ୍କର ସଂପର୍କ ନିବିଡ଼ ହୋଇଥିଲା ଏବଂ ସେ ଏହି ଐତିହାସିକ ଆନ୍ଦୋଳନରେ ନିଜକୁ ସାମିଲ କରିବାକୁ ଏକାନ୍ତ ଭାବେ ଅନୁପ୍ରାଣିତ ହୋଇଥିଲେ ।

ସଂଗ୍ରାମୀ ନନ୍ଦକିଶୋର ଥିଲେ ଜଣେ ଅସାଧାରଣ ପ୍ରତିଭା ସଂପନ୍ନ ଓ ଦୂରନ୍ତ ସଂଗ୍ରାମୀ ମନୋଭାବାପନ୍ନ ବ୍ୟକ୍ତିବିଶେଷ । ମଉକା ଆସିବା ସଂଗେସଂଗେ ସେ ତତ୍‌କ୍ଷଣାତ୍ ନିଜର ବ୍ୟକ୍ତିଗତ ସ୍ୱାର୍ଥ ଓ ପଦ ମର୍ଯ୍ୟାଦାକୁ ଜଳାଞ୍ଜଳି ଦେଇ ଆନ୍ଦୋଳନ ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ଅନେକ ସହକର୍ମୀଙ୍କୁ ନେଇ ସିଏ ନିଜେ କର୍ମରତ ଥିବା ଅଞ୍ଚଳର ବଡ଼ ବଡ଼ ଗ୍ରାମମାନଙ୍କରେ ସଭାସମିତି କରି ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ନିର୍ଦ୍ଦେଶିତ ଅସହଯୋଗ ଆନ୍ଦୋଳନର ମହତ୍ ଉଦ୍ଦେଶ୍ୟ ଓ ତା'ର ସାରବତ୍ତା ବିଷୟରେ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବାରେ ଲାଗିଗଲେ । ମହାତ୍ମା ଗାନ୍ଧୀଙ୍କୁ ଜଣେ ଦେବଦୂତ ଭାବରେ ମାନ୍ୟତା ପ୍ରଦାନକରି ତାଙ୍କର ଫଟୋଚିତ୍ରକୁ ଫୁଲ, ଚନ୍ଦନ, ଧୂପ, ଦୀପ ଦ୍ୱାରା ପୂଜା କରୁଥିଲେ ଏବଂ ତାଙ୍କର ମହନୀୟ ବାଣୀକୁ ଲୋକମାନଙ୍କୁ ପ୍ରାଞ୍ଜଳ ଭାବରେ ବୁଝାଉଥିଲେ । ଫଳରେ ତାଙ୍କୁ ସରକାର କାର୍ଯ୍ୟରୁ ବହିଷ୍କାର କଲେ ଏବଂ ଗିରଫ କରି ଆନନ୍ଦପୁର ଜେଲ୍ ହାଜତରେ ବନ୍ଦୀ କରି ରଖିଲେ । ତାଙ୍କ ସହ ତାଙ୍କର ଜଣେ ସହକର୍ମୀ ଶ୍ରୀ ମଧୁସୂଦନ ମିଶ୍ର ମଧ୍ୟ ଧରା ହୋଇ ବନ୍ଦୀ ହୋଇଥିଲେ ।

ଏହି ଘଟଣାର କିଛିଦିନ ପରେ କେନ୍ଦୁଝରଗଡ଼ର ଅଧିବାସୀ ବିଶିଷ୍ଟ ବ୍ୟକ୍ତି ଶ୍ରୀ ଜଗବନ୍ଧୁ ଚକ୍ରବର୍ତ୍ତୀଙ୍କ ନେତୃତ୍ୱରେ କେନ୍ଦୁଝରଗଡ଼ ଓ ତା'ର ଆଖପାଖରେ ମଧ୍ୟ ଏହି ଆନ୍ଦୋଳନ ଅତି ତୀବ୍ର ଭାବରେ ସଂଗଠିତ ହେଲା । ଓଡ଼ିଶା ଗଡ଼ଜାତ ଅଞ୍ଚଳର ଶାସନ ଦାୟିତ୍ୱରେ ଥିବା ପଲିଟିକାଲ୍ ଏଜେଣ୍ଟଙ୍କର କେନ୍ଦୁଝରଗଡ଼ ପରିଦର୍ଶନ କାର୍ଯ୍ୟକ୍ରମକୁ





ବିରୋଧ କରି ଶ୍ରୀ ଚକ୍ରବର୍ତ୍ତୀଙ୍କ ନେତୃତ୍ୱରେ ବହୁ ସଂଗ୍ରାମୀନେତା ଗୋଟିଏ ବିରାଟ ହରତାଳର ଆୟୋଜନ କରିଥିଲେ । ଏହାଦ୍ୱାରା ପଲିଟିକାଲ୍ ଏଜେଣ୍ଟ ତାଙ୍କର କାର୍ଯ୍ୟକ୍ରମ ଠିକ୍ ଭାବରେ ପାଳନ କରି ପାରିନଥିଲେ । ଫଳତଃ ସ୍ଥାନୀୟ ସରକାରୀ କର୍ମକର୍ତ୍ତା ଆନ୍ଦୋଳନକାରୀମାନଙ୍କ ଉପରେ ଖୁବ୍ ବେଶୀ ଖପ୍‌ପା ହୋଇ ଯାଇଥିଲେ ।

ଆନ୍ଦୋଳନକାରୀମାନଙ୍କୁ ଗିରଫ କରାଗଲା ଏବଂ ଅତି ନିର୍ମମ ଅମାନୁଷିକ ଭାବରେ ସେମାନଙ୍କ ଉପରେ ଶାରୀରିକ ଅତ୍ୟାଚାର କରାଗଲା ଯାହାକୁ ବର୍ଣ୍ଣନା କରିବାକୁ ଏହି ପ୍ରବନ୍ଧର ପରିସର ଆଦୌ ଯଥେଷ୍ଟ ନୁହେଁ ।

ଆନନ୍ଦପୁର ଜେଲ୍ ହାଜତରୁ ସଂଗ୍ରାମୀ ନନ୍ଦକିଶୋର ଏବଂ ତାଙ୍କର ସହକର୍ମୀ ମଧୁସୂଦନ ମିଶ୍ରଙ୍କୁ କେନ୍ଦୁଝରଗଡ଼ କେନ୍ଦ୍ର ଜେଲକୁ ଅଣାଯାଇ ରଖାଯିବା ପରେ ସଂଗ୍ରାମୀ ଜଗବନ୍ଧୁ ଚକ୍ରବର୍ତ୍ତୀ, ବଳରାମ ଦାଶ, ଚେମା ତ୍ରିପାଠୀ, ବୈକୁଣ୍ଠନାଥ ରଣା, ରାମଚନ୍ଦ୍ର ପାଣିଗ୍ରାହୀ, ନିଶାକର ମିଶ୍ର, ଦୈତାରୀ ସାହୁ ଏହିପରି ନଅଜଣଙ୍କ ନାମରେ ଭାରତୀୟ ଦଣ୍ଡବିଧି ଆଇନର ତିନିଶହ ଚବିଶ (କ) ଦଫା ଅନୁଯାୟୀ ଏକ ରାଜଦ୍ରୋହ ମୋକଦ୍ଦମା ରୁଜୁ କରାଯାଇଥିଲା । ଏଥିରେ ପଦଚ୍ୟୁତ ରାଜା ଗୋପୀନାଥ ଭଞ୍ଜଙ୍କର ରାଣୀ ସଂପୃକ୍ତ ଥିଲେ ମଧ ବ୍ୟାପକ ପ୍ରଜା ବିଦ୍ରୋହର ଆଶଙ୍କା କରି ତାଙ୍କୁ ଅଭିଯୋଗରୁ ବାଦ୍ ଦିଆଯାଇଥିଲା । ତତ୍କାଳୀନ ଦେବୋତ୍ତର ବିଭାଗର ମ୍ୟାନେଜର ଏବଂ ରାଜ୍ୟର ଅନ୍ୟାନ୍ୟ କେତେ ମାନ୍ୟଗଣ୍ୟ ଲୋକ ମଧ ଆନ୍ଦୋଳନ ସହ ଜଡ଼ିତ ଥିଲେ, ମାତ୍ର ସେମାନେ ଲିଖିତ କ୍ଷମା ପ୍ରାର୍ଥନା କରିବାରୁ ସେମାନଙ୍କୁ ମୋକଦ୍ଦମାରୁ ଅବ୍ୟାହତି ମିଳିଥିଲା । ଘଟଣା କ୍ରମରେ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ସଂଗ୍ରାମୀ ନନ୍ଦକିଶୋରଙ୍କର ଭ୍ରାତୃଷ୍ପୁତ୍ର ଭିକାରୀ ଚରଣ ପୁହାଣ ଏବଂ ଘଟଗାଁ ଥାନା ନୁଖୁରୀପଶି ଗ୍ରାମର ବଂଶୀଧର ବେହେରା ଏହି ଘଟଣାରେ ଧରା ହୋଇ ଜେଲ୍ ହାଜତରେ ଥିଲେ ଏବଂ ସେମାନଙ୍କୁ ପ୍ରମାଣ ଅଭାବରୁ ବିଚାର ପୂର୍ବରୁ ଛାଡ଼ି ଦିଆଯାଇଥିଲା ।

ବହୁଦିନ ଧରି ମୁଦାଲାମାନେ ଜେଲ ହାଜତରେ ବନ୍ଦୀ ହୋଇ ରହିବା ପରେ ସେସନ୍‌ସ ଜଜ ପାଓ୍ୱାର ଥିବା ଅନୁଗୋଳର ଡେପୁଟୀ ସୁପରିନ୍‌ଟେଣ୍ଡେଣ୍ଟ ମିଷ୍ଟର ଏଲ୍.ଜି. ଲୁକ୍‌ସେ ଏହି ମୋକଦ୍ଦମାକୁ କେନ୍ଦୁଝରଗଡ଼ଠାରେ ଥିବା ରାଜ୍ୟ ଅତିଥିଭବନ ପରିସରରେ ଏକାନ୍ତରେ ବିଚାର କଲେ । ପ୍ରକାଶ୍ୟ ବିଚାରାଳୟରେ ମୋକଦ୍ଦମା ବିଚାର କଲେ, ବଡ଼ ଧରଣର ଗଣ୍ଡଗୋଳର ସୂତ୍ରପାତ ହୋଇପାରେ ଏପରି ଆଶଙ୍କା ସ୍ଥାନୀୟ କର୍ତ୍ତୃପକ୍ଷଙ୍କର ଥିଲା । ଏଥିରେ ସରକାରୀ କର୍ମଚାରୀଙ୍କ ସମେତ ସରକାରଙ୍କ ଦ୍ୱାରା ବାଧ ବାଧକତା ଏବଂ ପ୍ରଲୋଭିତ ହୋଇଥିବା ଶତାଧିକ ବ୍ୟକ୍ତି ଅଭିଯୋଗକୁ ସୁହାଇଲା ଭଳି ମିଛ, ସତ ସାକ୍ଷ୍ୟ ପ୍ରଦାନ କରିଥିଲେ । ପ୍ରାୟ ସତର ଦିନ ଧରି ଅବିଶ୍ରାନ୍ତ ବିଚାରର ପ୍ରହସନ ଚାଲିଲା । ପରିଶେଷରେ ଜଜ୍ ସାହେବ ତାଙ୍କର ରାୟ ପ୍ରଦାନ କଲେ ।

ଏହି ରାୟ ସବୁ ଦିଗରୁ ଐତିହାସିକ ଥିଲା । ଜଜ୍ ଜଣକ ରାଜଦ୍ରୋହୀମାନଙ୍କୁ ନିର୍ମମ ଭାବରେ ଦଣ୍ଡ ଦେବାରେ ଜଣେ ପ୍ରବୀଣ ବ୍ୟକ୍ତି ଭାବରେ ପୂର୍ବରୁ ଜଣାଶୁଣା ଥିଲେ ଏବଂ ସେହି ବିଶିଷ୍ଟ ଗୁଣ ଯୋଗୁଁ ତାଙ୍କୁ ହିଁ ଏହି ମୋକଦ୍ଦମା ବିଚାର ପାଇଁ ବିଚାରପତି ନିଯୁକ୍ତ କରାଯାଇଥିଲା ।

ନାନାପ୍ରକାର ଯୁକ୍ତି ଦର୍ଶାଇ ଜଜ୍ ଏହି ମୋକଦ୍ଦମାର ଆସାମୀମାନଙ୍କୁ ଅତି ନିର୍ମମ ଭାବରେ ଦଣ୍ଡାଦେଶ ପ୍ରଦାନ କରିଥିଲେ । ନନ୍ଦକିଶୋରଙ୍କୁ ସାତବର୍ଷ ଦ୍ୱୀପାନ୍ତର ଓ ପାଞ୍ଚବର୍ଷ ଜେଲ ଏବଂ ଜଗବନ୍ଧୁଙ୍କୁ ସାତବର୍ଷ ଦ୍ୱୀପାନ୍ତର ଓ ଅନ୍ୟ ଆସାମୀମାନଙ୍କୁ ତିନିବର୍ଷ ଲେଖାଏଁ ଜେଲ ଦଣ୍ଡର ଆଦେଶ ହୋଇଥିଲା । ପରେ ଅପିଲ୍ କୋର୍ଟ ନନ୍ଦକିଶୋର ଓ ଜଗବନ୍ଧୁଙ୍କର ଦ୍ୱୀପାନ୍ତର ଦଣ୍ଡକୁ ଜେଲ୍ ଦଣ୍ଡରେ ପରିବର୍ତ୍ତନ କରିଦେବା ସହ ଅନ୍ୟ ଆସାମୀମାନଙ୍କର ଜେଲ ଦଣ୍ଡରେ କିଛି ପରିବର୍ତ୍ତନ କରି ଦେଇଥିଲେ ।

ଧରା ହେବା ଦିନଠାରୁ ଜେଲ ଭୋଗର ବହୁଦିନ ପର୍ଯ୍ୟନ୍ତ ଏହି ସଂଗ୍ରାମୀ ମାତୃଭୂମିର ପ୍ରିୟ ସନ୍ତାନମାନଙ୍କ ଉପରେ ଯାହା ଯାହା ଶାରୀରିକ ଓ ମାନସିକ ଅତ୍ୟାଚାର କରାଯାଇଥିଲା, ତାହା ଶୁଣିଲେ ପ୍ରତ୍ୟେକ ବ୍ୟକ୍ତିର ଲୋମହର୍ଷଣ ଜାତ ହେବ । ସେସବୁର ବର୍ଣ୍ଣନା ପାଇଁ ମଧ ଏ ପ୍ରବନ୍ଧର ପରିସର ଯଥେଷ୍ଟ ନୁହେଁ ।

ଏହି ସଂଗ୍ରାମୀମାନଙ୍କର ସ୍ୱଦେଶ ବତ୍ସଳତା ଓ ସାହସିକ ବୀରତ୍ୱର ପ୍ରଶଂସା କରି ନିଖିଳ ଭାରତ କଂଗ୍ରେସ କମିଟି ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ ଗୋଟିଏ ଅଭିନନ୍ଦନ ପ୍ରସ୍ତାବ ଗ୍ରହଣ କରିଥିଲେ ଏବଂ ସ୍ୱୟଂ ମହାତ୍ମା ଗାନ୍ଧୀ ବଡ଼ଲାଟ ଲର୍ଡ଼ ଇର୍‌ୱଇନ୍‌ଙ୍କ ନିକଟକୁ ଗୋଟିଏ ପତ୍ର ଲେଖିଥିଲେ । ମାତ୍ର ଆଜି ଏହି ବୀର ସଂଗ୍ରାମୀମାନଙ୍କର ସୁପ୍ରସିଦ୍ଧ ଆଦର୍ଶ ଐତିହାସିକ କାର୍ଯ୍ୟାବଳୀକୁ ସ୍ୱାଧୀନତାର ସ୍ୱାଦକୁ ଉପଭୋଗ କରୁଥିବା ସ୍ୱାଧୀନ ଭାରତର ଉତ୍ତର ପୁରୁଷକୁ ଯଥୋଚିତ ଭାବରେ ଅବଗତ କରାଯାଇ ନାହିଁ, ଯାହାକି ଏକ ଅକ୍ଷମଣୀୟ ଅପରାଧ ।

ଭଣ୍ଡାରିଡିହା, କୁଶଳେଶ୍ୱର
ଆନନ୍ଦପୁର, କେନ୍ଦୁଝର

■ ■ ■





# ମହାନ ବିପ୍ଳବୀ ବୀର ସୁରେନ୍ଦ୍ର ସାଏ

ଶ୍ରୀନିବାସ ଆଚାର୍ଯ୍ୟ

୧୮୦୩ ମସିହା ଥିଲା ଓଡ଼ିଶା ପାଇଁ ଏକ କଳଙ୍କମୟ ଇତିହାସ । ଏହା ପୂର୍ବରୁ ଓଡ଼ିଶାରେ ମୋଗଲ ଓ ମରହଟ୍ଟାମାନେ ଶାସନ କରି ଭୌଗୋଳିକ, ରାଜନୈତିକ, ସାମାଜିକ ଓ ଆର୍ଥିକ ମାନଦଣ୍ଡକୁ ଶୋଚନୀୟ କରିଥିବାବେଳେ, ୧୮୦୩ ମସିହାରେ ଇଂରେଜ ସରକାର ଆଣି ଦେଇଥିଲା ସ୍ୱେଚ୍ଛାଚାରୀ, ଅନ୍ୟାୟ ଓ ଅତ୍ୟାଚାରର ଶାସନ । ଏହାକୁ ପ୍ରତିହତ କରାଇବା ପାଇଁ ଓଡ଼ିଶାର କୋଣ ଅନୁକୋଣରେ ମୁଣ୍ଡ ଟେକିଥିଲା ଅଗ୍ନିଶିଖା ପରି ବିଦ୍ରୋହ । ବିଶେଷତଃ ୧୮୦୪ ମସିହାରେ ଜୟୀ ରାଜଗୁରୁଙ୍କର ବିଦ୍ରୋହ, ୧୮୧୬ ମସିହାରେ ପାରଳାଖେମୁଣ୍ଡି କନ୍ଧମାନଙ୍କର ବିଦ୍ରୋହ, ୧୮୧୭ ମସିହାରେ ଖୋର୍ଦ୍ଧାର ପାଇକ ବିଦ୍ରୋହ, ୧୮୨୭ ମସିହାରେ ସମ୍ବଲପୁରର ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ, ୧୮୩୫ ମସିହାରେ ଘୁମୁସରର ବିଦ୍ରୋହ ଓ ୧୮୫୭ ମସିହାରେ ସିପାହୀ ବିଦ୍ରୋହଗୁଡ଼ିକ ଆଣି ଦେଇଥିଲା ଭାରତ ସ୍ୱାଧୀନତାର ସୁଗମ ପଥ ଓ ଏଥିରେ ନିହିତ ଥିଲା ଓଡ଼ିଆ ଜାତିର ସ୍ୱାଭିମାନ । ଏହିସବୁ ବିଦ୍ରୋହ ମଧ୍ୟରେ ସମ୍ବଲପୁରର ଚୌହ୍ୱାନବଂଶୀୟ ରାଜପୁତ୍ର ତଥା ଓଡ଼ିଶାର ବରପୁତ୍ର, ମହାନ ବିପ୍ଳବୀ ଓ ଯୋଦ୍ଧା ବୀର ସୁରେନ୍ଦ୍ର ସାଏଙ୍କର ଦୀର୍ଘ ୫୭ ବର୍ଷର (୧୮୨୭ରୁ ୧୮୮୪) ବିଦ୍ରୋହ ଓଡ଼ିଶାରେ ଥିଲା ଭିନ୍ନ ।



ଇଂରେଜ ସରକାରର ଦମନଲୀଳାରୁ ମୁକ୍ତି ପାଇବା ନିମନ୍ତେ ସମ୍ବଲପୁରର ରାଜସିଂହାସନର ଗର୍ବ ଓ ଗୌରବକୁ ଅକ୍ଷୁଣ୍ଣ ରଖିବା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ ଭାରତମାତାର ସୁଯୋଗ୍ୟ ସନ୍ତାନ ବୀର ସୁରେନ୍ଦ୍ର ସାଏ । ୧୮୨୭ ମସିହାରୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ସିଂହ ଗର୍ଜନ ପରି ବିଦ୍ରୋହକୁ ତେଜି ରଖିଥିଲେ ଜୀବନର ଶେଷ ମୁହୂର୍ତ୍ତ ୧୮୮୪ ମସିହା ଫେବୃଆରୀ ମାସର ୨୮ ତାରିଖ ମଧ୍ୟାହ୍ନ ପର୍ଯ୍ୟନ୍ତ । ଏହିପରି ମହାନ ସ୍ୱାଧୀନତା ସଂଗ୍ରାମୀ, ସାହସୀ ବୀର ଓ ବିପ୍ଳବୀ ଭାରତରେ ଜନ୍ମଲାଭ କରିଥିବା ବିରଳ ଅଟେ । ସୁତରାଂ ଇଂରେଜ ସରକାରଙ୍କୁ ବ୍ୟସ୍ତ ବିବ୍ରତ କରାଇବା ସଂଗେସଂଗେ ସରକାରଙ୍କର ମେରୁଦଣ୍ଡକୁ ଦୋହଲାଇ ଅସ୍ତବ୍ୟସ୍ତ କରାଇ ଦେଇଥିଲେ । ଦୃଢ଼ ମନୋବଳ ସହିତ ନିଜ ଜିଦ୍‌ରେ ଅଟଳ ରହି, କେବେହେଲେ ଗୋଟିଏ ଅପାରଗ ସରକାର ପାଖରେ ମୁଣ୍ଡ ନୁଆଁଇ ନଥିଲେ । ଏହି ମହାନ ତ୍ୟାଗୀ, ନିଷ୍ଠାପର ସାଧକ ତଥା ସାମରିକବାଦୀ ବୀର ପୁରୁଷ ସମଗ୍ର ଭାରତବାସୀଙ୍କର ଦେଶ ସ୍ୱାଧୀନ ପାଇଁ ଆଖି ଖୋଲି ଦେଇଥିଲେ । ଆଉ ମଧ୍ୟ ହଜାର ହଜାର ଶହୀଦ, କାରାବରଣକାରୀ ଓ ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସେ ଦିଗଦର୍ଶନ ଦେଇଥିଲେ ।

୧୮୦୯ ମସିହା ଜାନୁଆରୀ ୨୩ ତାରିଖରେ ସମ୍ବଲପୁର ଜିଲ୍ଲା ମହକୁମାଠାରୁ ୩୫ କିଲୋମିଟର ଦୂରରେ ଥିବା ଖିଣ୍ଡା ଗ୍ରାମର ବିଖ୍ୟାତ ରାଜବଂଶ ଛତ୍ରୀ ଚୌହ୍ୱାନ ବଂଶୋଦ୍ଭବ ଧର୍ମ ସିଂହଙ୍କର ଜ୍ୟେଷ୍ଠ ପୁତ୍ର ଥିଲେ ସୁରେନ୍ଦ୍ର ସାଏ । ତାଙ୍କର ଛଅ ଭାଇ ଓ ଗୋଟିଏ ଭଉଣୀ ଥିଲେ । ଏମାନେ ହେଲେ ଉଦନ୍ତ ସାଏ, ଧ୍ରୁବ ସାଏ, ଛବିଳ ସାଏ, ଜାଜ୍ୱଲ ସାଏ, ମେଦିନୀ ସାଏ ଓ ଭଉଣୀ ଅଂଜନା । ତତ୍କାଳୀନ ଗାଙ୍ଗପୁର ରାଜ୍ୟର ଜମିଦାରଙ୍କ କନ୍ୟାକୁ ସେ ବିବାହ କରିଥିଲେ । ଦାମ୍ପତ୍ୟ ଜୀବନର ସାର୍ଥକ ସ୍ୱରୂପ ସେ ପାଇଥିଲେ ଗୋଟିଏ ପୁତ୍ର ରତ୍ନ । ତାଙ୍କର ନାମ ଥିଲା ମିତ୍ରଭାନୁ ସାଏ ଓ ସେ ବୀର ବିପ୍ଳବୀ ମନୋଭାବାପନ୍ନ ଥିଲେ ।

୧୮୨୭ ମସିହାରେ ସମ୍ବଲପୁର ରାଜ୍ୟର ରାଜା ଅପୁତ୍ରିକ ଥିବା ଅବସ୍ଥାରେ ଦେହତ୍ୟାଗ କରିଥିଲେ । କିନ୍ତୁ ବୀର ସୁରେନ୍ଦ୍ର ସାଏ ହେଉଛନ୍ତି ଏହି ବଂଶର ସନ୍ତାନ । ତେଣୁ ନୀତିଗତ ଭାବରେ ଓ ରାଜବଂଶର





ପରମ୍ପରା ଅନୁଯାୟୀ ବୀର ସୁରେନ୍ଦ୍ର ସାଏ ରାଜଗାଦୀ ଅଳଂକୃତ କରିବା କଥା । ଇଂରେଜ ସରକାରଙ୍କୁ ସୁହାଇଲା ପରି ଓ ନ୍ୟସ୍ତ ସ୍ୱାର୍ଥ ପାଇଁ ନ୍ୟାୟୋଚିତ ଦାବୀକୁ ଉପେକ୍ଷା କରି ବିଧବା ରାଣୀ ମୋହନ କୁମାରୀଙ୍କୁ ସିଂହାସନରେ ବସାଇଥିଲେ । କିନ୍ତୁ ରାଣୀଙ୍କର ବିଫଳତା ଯୋଗୁଁ ପୁନରାୟ ବରଗଡ଼ ରାଜ୍ୟର ରାଜା ନାରାୟଣ ସିଂହଙ୍କୁ ଗାଦିସୀନ କରାଇଥିଲେ ।

ବୀର ସୁରେନ୍ଦ୍ର ସାଏ ଗୋଲାମି ଓ ବଣିକ ସରକାରର ଏହି ଅନ୍ୟାୟ କାର୍ଯ୍ୟକୁ କଠୋର ଭାବରେ ବିରୋଧ କରିଥିଲେ । ପୂର୍ବରୁ ସୁରେନ୍ଦ୍ର ସାଏଙ୍କ ସହିତ ବରଗଡ଼ର ରାଜା ନାରାୟଣ ସିଂହଙ୍କର ସେତେ ମିତ୍ରତା ନଥିଲା । ଆଉ ମଧ ଇଂରେଜ ସରକାର ହୀରା ବ୍ୟବସାୟ ଉଦ୍ଦେଶ୍ୟରେ ସମ୍ବଲପୁର ରାଜ୍ୟକୁ ପ୍ରବେଶ କରିଥିଲେ । ହୀରା ବ୍ୟବସାୟରେ ବାଧା ସୃଷ୍ଟି ହେବାର ଆଶା କରି ସୁରେନ୍ଦ୍ର ସାଏଙ୍କୁ ରାଜସିଂହାସନରେ ଅଧିଷ୍ଠିତ କରିନଥିଲେ । କ୍ରମଶଃ ସମ୍ବଲପୁରର ପ୍ରଜାମାନଙ୍କ ମନରେ ସରକାରଙ୍କ ଉଦ୍ଦେଶ୍ୟ ପ୍ରଣୋଦିତ ଭୁଲ ନିଷ୍ପତ୍ତିର କ୍ଷୋଭ ଓ ଅଶାନ୍ତିର ବହ୍ନି ପ୍ରଜ୍ୱଳିତ ହୋଇଥିଲା । ଏହି ଅନ୍ୟାୟର ପ୍ରତିବାଦ ସ୍ୱରୂପ ଶତ ସହସ୍ର ପ୍ରଜାମାନଙ୍କ ସମର୍ଥନରେ ସମ୍ବଲପୁର ଜାତୀୟ ଜାଗରଣର ପଞ୍ଚ ପୁରୋଧା ବୀର ସୁରେନ୍ଦ୍ର ସାଏ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହର ଡାକରା ଦେଇଥିଲେ ।

୧୮୨୭ ମସିହାରୁ ୧୮୪୦ ମସିହା ପର୍ଯ୍ୟନ୍ତ ବୀର ସୁରେନ୍ଦ୍ର ସାଏଙ୍କର ଥିଲା ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରଥମ ପର୍ଯ୍ୟାୟ ବିଦ୍ରୋହ । ଏହି ବିଦ୍ରୋହରେ ବୀର ସୁରେନ୍ଦ୍ର ସାଏଙ୍କ ସମେତ ବହୁ ସହଯୋଗୀ ସଂଗ୍ରାମୀ ବନ୍ଧୁ ଓ ଭାଇମାନଙ୍କର ରଣକୌଶଳରେ ଇଂରେଜ ସରକାର ଭୀତତ୍ରସ୍ତ ହୋଇଥିଲେ । ଏହାର ପରିଣାମ ସ୍ୱରୂପ ଶତଶତ ସଂଗ୍ରାମୀ ତଥା କୁଶଳୀ ଯୋଦ୍ଧା କାରାବରଣ କରିଥିଲେ ଓ ଫାଶୀ ଖୁଣ୍ଟରେ ଝୁଲିଥିଲେ । ଇତିହାସ ପ୍ରସିଦ୍ଧ ଘଟଣାବଳୀ ମଧ୍ୟରେ ରାମପୁର ଯୁଦ୍ଧ, ଗଡ଼ପାଟୀ ଯୁଦ୍ଧ, ଝରଘାଟୀ ଯୁଦ୍ଧ, ଶିରିଗିଡ଼ିଆ ଯୁଦ୍ଧ ଓ ସିଂଘରା ଘାଟୀ ଯୁଦ୍ଧ ଇତ୍ୟାଦି ସ୍ଥାନରେ ଇଂରେଜ ସରକାରଙ୍କ ଯୁଦ୍ଧର ପଟ୍ଟାନ୍ତର ନାହିଁ । ଏହିସବୁ ଘଟଣାବଳୀରେ ତୁଙ୍ଗବୀର ଓ ସାହସୀ ଯୋଦ୍ଧା ରୂପରେ ନେତୃତ୍ୱ ନେଇଥିବା ସଂଗ୍ରାମୀ ଥିଲେ ଉଦନ୍ତ ସାଏ, ଛବିଳ ସାଏ, ଉଜ୍ଜ୍ୱଳ ସାଏ, ଧ୍ରୁବ ସାଏ, ବଳଭଦ୍ର ସିଂହ, କମଳ ସିଂହ, ହାତୀ ସିଂହ, ବୈରୀ ସିଂହ, କୁଜେଲ ସିଂହ, ଲୋକନାଥ ଗୌନ୍ତିଆ, ଗଣେଶ ଉପାଧ୍ୟାୟ ଓ ମିତ୍ରଭାନୁ ସାଏ ଇତ୍ୟାଦି ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଏହିସବୁ ପ୍ରତିଭାବାନ ସଂଗ୍ରାମୀମାନେ ବୀର ସୁରେନ୍ଦ୍ର ସାଏଙ୍କ ଇଙ୍ଗିତରେ ଭିନ୍ନ ଭିନ୍ନ ବିଦ୍ରୋହ ଘାଟୀରେ ମୁଖ୍ୟ ସେନାପତି ରୂପେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ସଂଗ୍ରାମ କରୁଥିଲେ । ଆଉମଧ ସୁରେନ୍ଦ୍ର ସାଏଙ୍କର କିଏ ଥିଲେ ପରାମର୍ଶଦାତା ତ କିଏ ଥିଲେ ଅଙ୍ଗ ରକ୍ଷକ । ଗୋଟିଏ ସୁଦୃଢ଼ ଓ ବଳିଷ୍ଠ ସୈନ୍ୟ ଛାଉଣୀ ଗଢ଼ି ଦୀର୍ଘ ୧୩ ବର୍ଷ ବିଦ୍ରୋହ ଚଳାଇ ୧୮୪୦ ମସିହାରେ ଇଂରେଜ ସରକାରଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ଦୀର୍ଘ ୧୭ ବର୍ଷ କାଳ (୧୮୪୦ରୁ ୧୮୫୭) ତାଙ୍କ ଭାଇ ଉଦନ୍ତ ସାଏଙ୍କ ସହିତ ସେ ରହିଥିଲେ ହଜାରିବାଗ ଜେଲରେ । ବୀର ସୁରେନ୍ଦ୍ର ସାଏଙ୍କର ବିପ୍ଳବୀ ସହଯୋଗୀମାନେ ଭିନ୍ନ ଭିନ୍ନ ସମୟ ଓ ସ୍ଥାନରେ ଗିରଫ ହୋଇ କାରାବରଣ କରିଥିଲେ । କେତେଜଣଙ୍କୁ ନିର୍ମମ ଓ ନିଷ୍ଠୁର ଇଂରେଜ ସରକାର ଫାଶୀ ଦେଇଥିଲେ ।

୧୮୫୭ ମସିହାରେ ସମଗ୍ର ଭାରତବର୍ଷରେ ପ୍ରଥମ ସର୍ବବୃହତ୍ ସ୍ୱାଧୀନତା ଆନ୍ଦୋଳନ 'ସିପାହୀ ବିଦ୍ରୋହ' ଆରମ୍ଭ ହୋଇଥିଲା । ଏହାଥିଲା ଭାରତର ପ୍ରଥମ ମୁକ୍ତି ସଂଗ୍ରାମ । ଇଂରେଜ ସରକାରଙ୍କର ନିର୍ମମ ଅତ୍ୟାଚାର ଓ କୁବ୍ୟବହାରରେ ଅତିଷ୍ଠ ହୋଇ ସର୍ବପ୍ରଥମେ ଭାରତର ସିପାହୀମାନେ ବିଦ୍ରୋହ ଡାକରା ଦେଇଥିଲେ । ଚାହୁଁ ଚାହୁଁ ଏହି ବିଦ୍ରୋହ ପ୍ରଜ୍ୱଳିତ ଅଗ୍ନିଶିଖା ପରି ସମଗ୍ର ଭାରତରେ ବିସ୍ତାରିତ ହୋଇଥିଲା । ସର୍ବଭାରତୀୟ ସ୍ତରରେ ଏହାର ନେତୃତ୍ୱ ନେଇଥିଲେ ନାନା ସାହେବ, ତାନ୍ତିଆ ଟୋପେ, ଝାନ୍‌ସୀ ରାଣୀ, ଲକ୍ଷ୍ମୀବାଈ ଇତ୍ୟାଦି । ଏହାର ପ୍ରଭାବରେ ଓଡ଼ିଶାର ବୀରମାନେ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୮୫୮ ମସିହାରେ ସିପାହୀମାନେ ହଜାରିବାଗ ଜେଲରେ ପ୍ରାଚୀର ଭାଙ୍ଗି ଦେବାରୁ ସମସ୍ତ ବନ୍ଦୀ ଖସି ପଳାଇଥିଲେ । ସୁରେନ୍ଦ୍ର ସାଏ, ଭାଇ ଉଦନ୍ତ ସାଏଙ୍କ ସମେତ ୩୨ ଜଣ ବନ୍ଦୀ ଖସି ଲୁଚି ଛପି ସମ୍ବଲପୁର ପଳାଇ ଆସିଥିଲେ । ସେଥିମଧ୍ୟରୁ ୧୬ ଜଣ ବନ୍ଦୀ ଧରା ପଡ଼ିଥିଲେ ଓ ଅନ୍ୟ ୧୬ ଜଣ ପୁନରାୟ ବିଦ୍ରୋହର ଡାକରା ଦେଇଥିଲେ ।

ପାହାଡ଼, ପର୍ବତ ଘେରା ଘଞ୍ଚ ବଣ ଜଙ୍ଗଲରେ ରହି ଗୁପ୍ତ ଭାବରେ ପୁନରାୟ ବିଦ୍ରୋହର ମଞ୍ଜି ବୁଣିବାରେ ସୁରେନ୍ଦ୍ର ସାଏ ୧୮୫୮ରୁ ୧୮୬୨ ପର୍ଯ୍ୟନ୍ତ ସମସ୍ତ ସମୟ ଉତ୍ସର୍ଗ କରିଥିଲେ । ଏହି ସମୟରେ ସମ୍ବଲପୁରର ସମସ୍ତ ଗଡ଼ଜାତ ଅଞ୍ଚଳର ଜମିଦାରମାନେ ପ୍ରକାଶ୍ୟ ଭାବେ ସୁରେନ୍ଦ୍ର ସାଏଙ୍କୁ ସାହାଯ୍ୟ କରିଥିଲେ । ଆଉ ମଧ ସୁରେନ୍ଦ୍ରଙ୍କର ଆବିର୍ଭାବ ଦେଖି ଲୁକ୍କାୟିତ ଭାବରେ ଥିବା ସହଯୋଗୀ ଓ ଭାଇମାନେ ଏକତ୍ର ମିଶି ଶହ ଶହ ଆଦିବାସୀ ଯୋଦ୍ଧା ଓ ବୀରକର୍ମୀଙ୍କୁ ଏହି ବିଦ୍ରୋହରେ ସାମିଲ କରାଇଥିଲେ । ଏହି ବିଦ୍ରୋହରେ ଶହ ଶହ ଇଂରେଜ ସୈନ୍ୟ ଆଘାତ ପାଇବା ସଂଗେସଂଗେ ମୃତ୍ୟୁବରଣ କରିଥିଲେ । ଏହି ବିଦ୍ରୋହକୁ ଦମନ କରିବା ପାଇଁ ଚତୁରତା ସହ ଇଂରେଜ ସରକାର ଘୋଷଣା କଲେ ଯେ, ଯେଉଁମାନେ ବିନା ସର୍ତ୍ତରେ ତାଙ୍କ ପାଖରେ ଆତ୍ମ ସମର୍ପଣ କରିବେ ସେମାନଙ୍କୁ କ୍ଷମା ଦିଆଯିବ । ପ୍ରାୟ ୧୮୬୧ ମସିହାରୁ ୧୮୬୨ ମସିହାର ପ୍ରାରମ୍ଭ ପର୍ଯ୍ୟନ୍ତ ସୁରେନ୍ଦ୍ରଙ୍କର ଜନସମର୍ଥନ ଅଧିକ ଥିଲା, କିନ୍ତୁ ଆର୍ଥିକ ଓ ଶାରୀରିକ ଶକ୍ତି ଦୁର୍ବଳ ହୋଇଯାଇଥିଲା ।

ସରକାରଙ୍କର ଘୋଷଣାକୁ ଗଭୀର ଭାବରେ ବିଚାର କରି ସୁରେନ୍ଦ୍ର ଚିନ୍ତା କଲେ । ଯଦି ସେ ଆତ୍ମ ସମର୍ପଣ ନକରନ୍ତି, ତେବେ ଇଂରେଜ ସରକାର ସମ୍ବଲପୁରର ନିରୀହ ପ୍ରଜାମାନଙ୍କ ଉପରେ





ଦମନଲୀଳାର ଜୁଲମ୍ ଲଗାଇ ରଖିବେ । ଫଳରେ ସମ୍ବଲପୁରର ଅପୂରଣୀୟ ଆର୍ଥିକ, ସାମାଜିକ ଓ ରାଜନୈତିକ କ୍ଷତି ଘଟିବ । ଜନସାଧାରଣଙ୍କ ଅନେକ କଷ୍ଟ, ଦୁଃଖ ଓ ଦାରିଦ୍ର୍ୟ ଅବସ୍ଥା ଦେଖି ତାଙ୍କ ହୃଦୟରେ ପରିବର୍ତ୍ତନ ଆସିଲା । ବିଦ୍ରୋହୀମାନଙ୍କ ମଧ୍ୟରୁ କେତେଜଣ ମୁଖିଆ ଆତ୍ମସମର୍ପଣ କଲେ । ସେତେବେଳର ଶାସକ ମେଜର ଇମ୍ପେ ସୁରେନ୍ଦ୍ରଙ୍କ ଭାଇ ଓ ପୁଅକୁ ଜଣାଇ ଦେଲେ ଯେ, ଯଦି ସେମାନେ ଆତ୍ମସମର୍ପଣ କରନ୍ତି, ତେବେ ସେମାନଙ୍କୁ ସରକାରୀ କ୍ଷମା ଦିଆଯିବା ସଂଗେସଂଗେ ଭରଣପୋଷଣର ବ୍ୟବସ୍ଥା କରାଯିବ । ଏହି ସର୍ତ୍ତ ଅନୁଯାୟୀ ୧୮୬୨ ମସିହା ଜାନୁଆରୀ ୧୮ ତାରିଖରେ ଭାଇ ଉଦନ୍ତ ଓ ଧ୍ରୁବ ଆତ୍ମସମର୍ପଣ କଲେ ।

୧୮୬୨ ମସିହା ମେ ମାସ ୪ ତାରିଖରେ ସୁରେନ୍ଦ୍ରଙ୍କର ଏକ ସର୍ତ୍ତମୂଳକ ଦାବୀପତ୍ର ମେଜର ଇମ୍ପେ ପାଇଥିଲେ । ସର୍ତ୍ତଗୁଡ଼ିକୁ କାଏମ ରଖି ମେଜର ସାହେବ ସୁରେନ୍ଦ୍ର ସାଏଙ୍କୁ ଆତ୍ମସମର୍ପଣ କରିବା ପାଇଁ ଅନୁରୋଧ କରିଥିଲେ । ସର୍ତ୍ତର ପ୍ରଧାନ ଦାବୀଟି ଥିଲା, ସରକାର ସମ୍ବଲପୁରର ରାଜଗାଦୀଟି ସୁରେନ୍ଦ୍ର ସାଏଙ୍କର ବୋଲି ସ୍ୱୀକାର କରିବେ । ବ୍ରିଟିଶ ସରକାରଙ୍କର ପରିବର୍ତ୍ତନ ନୀତି ଯୋଗୁଁ ସୁରେନ୍ଦ୍ର ସାଏ ୧୮୬୨ ମସିହାରେ ସର୍ତ୍ତ ମୁତାବକ ଆତ୍ମସମର୍ପଣ କରିବାକୁ ଇଚ୍ଛା କରିଥିଲେ ।

୧୮୬୩ ମସିହାରେ ଇଂରେଜ ସରକାର ସମ୍ବଲପୁରକୁ ଓଡ଼ିଶାରୁ ନେଇ ମଧ୍ୟପ୍ରଦେଶରେ ମିଶାଇ ଦେଲେ । ସମଗ୍ର ଓଡ଼ିଶାବାସୀ ଇଂରେଜ ସରକାରର ଏହି ମନମୁଖୀ ଶାସନର ପ୍ରତିବାଦ କରିଥିଲେ । ଏହାକୁ କେନ୍ଦ୍ରକରି ପୁନଶ୍ଚ ବିଦ୍ରୋହର ବହ୍ନି ଜାଗ୍ରତ ହୋଇଥିଲା । ଆଉ ମଧ୍ୟ ସମ୍ବଲପୁରର ରାଜଗାଦୀ ସୁରେନ୍ଦ୍ର ସାଏଙ୍କୁ ଦେବାପାଇଁ ବିଭିନ୍ନ ମହଲରୁ ଦାବି ହୋଇଥିଲା । ଆଉ ମଧ୍ୟ ସମ୍ବଲପୁରର ରାଜଗାଦୀ ସୁରେନ୍ଦ୍ର ସାଏଙ୍କୁ ଦେବା ପାଇଁ ବିଭିନ୍ନ ମହଲରୁ ଦାବି ହୋଇଥିଲା । ୧୮୬୪ ମସିହା ଜାନୁଆରୀ ମାସରେ ତାଙ୍କୁ ଏହି ବିଦ୍ରୋହର ସୂତ୍ରଧର ବୋଲି ଆଶଙ୍କା କରି ଅନ୍ୟାନ୍ୟ ସହଯୋଗୀଙ୍କ ସହିତ ପୁଣି ବନ୍ଦୀ କରାଇଥିଲେ । ଦୀର୍ଘ ୨୦ ବର୍ଷ ଧରି ଅସୁରଗଡ଼ ଜେଲରେ ଜଣେ ବନ୍ଦୀ ଅବସ୍ଥାରେ ୭୫ ବର୍ଷ ବୟସରେ ୧୮୮୪ ମସିହା ଫେବୃଆରୀ ୨୮ ତାରିଖ ମଧ୍ୟାହ୍ନ ସମୟରେ ମୃତ୍ୟୁବରଣ କରିଥିଲେ ।

ପ୍ରିୟ ଜନ୍ମଭୂମି ଓଡ଼ିଶା ମାଟିର ଗର୍ବ ଓ ଗୌରବର ପ୍ରତୀକ ଭାରତ ସ୍ୱାଧୀନତାର ଅଦ୍ୱିତୀୟ ମହାରଥୀ ବୀର ସୁରେନ୍ଦ୍ର ସାଏ, ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର ଅମ୍ଳାନ ଆତ୍ମାଟି ଭାରତବର୍ଷରେ ଚିର ସ୍ମରଣୀୟ ହୋଇ ରହିଗଲା । ତାଙ୍କର ସାହସିକତା, ବୀରତ୍ୱ, ନିଷ୍ଠାପର ତ୍ୟାଗ ଓ ସାଧନାର ମହତ୍ ଗୁଣଗୁଡ଼ିକରେ ଅନୁପ୍ରାଣିତ ହୋଇଥିବାରୁ ଆଜି ଆମ୍ଭେମାନେ ସ୍ୱାଧୀନ ଭାରତର ନାଗରିକ ହୋଇପାରିଛୁ । ତେଣୁ ଆଜି ଜନସମାଜ ସେହି ମହାନ ପ୍ରତିଭାବାନ ମହାପୁରୁଷ ପାଖରେ ଚିରଋଣୀ ।

ଘ.ନଂ.- ଟୁ.ଆର୍.ଏ. ୩୫/୭
ଆଠ ନମ୍ବର, ଭୁବନେଶ୍ୱର

# ଆଧୁନିକ ମନୁ

ବସନ୍ତ କୁମାର ଦେବ

ଭାରତ ରତ୍ନ ଭୀମରାଓ ରାମଜୀ ଆମ୍ବେଦକର
ଇତିହାସ ଗାଏ ସଦା ପ୍ରତିଭା ତୁମର ।
ବାଲ୍ୟଶିକ୍ଷା କାଳେ କେତେ ଅପମାନ ଭୋଗି
ତଥାପି ବିଦ୍ୱାନ ହେଲ ଅତୀତ ନିରେଖି ।
ସେକାଳ ସମାଜେ ଦେଖି ଉଚ୍ଚନୀଚ ଭେଦଭାବ
ଉତ୍କଟ ବର୍ଣ୍ଣ ବିଦ୍ୱେଷ ଅହମିକା ଗର୍ବ ।
ଚାହିଁଥିଲା ତୁମେ ସବୁ ମଣିଷ ଭିତରେ
ସମାନତା ରହୁ ସଦା ନାରୀ ପୁରୁଷରେ ।
ଦୁଃଖ ଦୁର୍ଦ୍ଦଶା ଅଜ୍ଞତା ଅସ୍ପୃଶ୍ୟ ଜନର
ମୋଚନ କରିବା ପଣେ ହେଲ ଆଗଭର ।
ଦଳିତ ଜାତିର ମହା ଅଭ୍ୟୁତ୍ଥାନ ପାଇଁ
ସଂକଳ୍ପ ସାଧନ ଲକ୍ଷ୍ୟେ ସଦା ଥିଲ ଚେଇଁ ।
ଆରମ୍ଭିଲ ଅଭିଯାନ ମନ୍ଦିର ପ୍ରବେଶ
ପୀଡ଼ିତର ମନେ ଭରି ଆଶା ଓ ବିଶ୍ୱାସ ।



ଅର୍ଥନୀତି ରାଜନୀତି ଆଇନ ବିଚାର
ସମାଜ ବିଜ୍ଞାନେ ଲଭି ଜ୍ଞାନ ଅସୁମାର ।
ସ୍ୱାଧୀନ ଭାରତ ପାଇଁ ରଚି ସମ୍ବିଧାନ
ଗଣତନ୍ତ୍ର ପଥେ କଲ ସଭିଙ୍କୁ ସମାନ ।
ସମାଜବାଦର ଦୃଢ଼ ପ୍ରବକ୍ତା ସାଜିଲ
'ଆଧୁନିକ ମନୁ' ରୂପେ ସମ୍ବୋଧିତ ହେଲ ।
ଚିର ପ୍ରେରଣାର ଉତ୍ସ ଆହେ ରାଷ୍ଟ୍ରନେତା
ଅକାଳେ ଲିଭିଲା ତୁମ୍ଭ ଜୀବନ ସଳିତା ।
ଆଜୀବନ ତ୍ୟାଗପୂତ ହେ ପୁଣ୍ୟପୁରୁଷ
କୋଟିହୃଦ ସ୍ମରୁଥିବ ତବ କୃତି ଯଶ ।

ଘର ନଂ-ଇ/୭୫
ୟୁନିଟ୍-୮, 'ଇ' କଲୋନୀ
ଭୁବନେଶ୍ୱର-୧୨

# ସାମ୍ୟବାଦର ଗାନ୍ଧିବାଦୀ ବ୍ୟାଖ୍ୟା

ଆଚାର୍ଯ୍ୟ ଭାବାନନ୍ଦ

ଏବେ ଭାରତବର୍ଷରେ ଓ ପୃଥିବୀର ବହୁରାଷ୍ଟ୍ରରେ 'ସାମ୍ୟବାଦ' ଚିନ୍ତାଧାରା ସଂପର୍କରେ ବିତର୍କ ଆରମ୍ଭ ହୋଇଛି । ଏହି ପରିପ୍ରେକ୍ଷୀରେ 'ବଜାର ସାମ୍ୟବାଦ' (Market Communism) କଥା ମଧ୍ୟ ଉଲ୍ଲେଖ ହେଲାଣି । ଆଧୁନିକ ବସ୍ତୁତାନ୍ତ୍ରିକ ସଭ୍ୟତାରେ 'ବଜାର ଅର୍ଥନୀତି' ଗତ ଦଶକରେ ଅନେକ ରାଷ୍ଟ୍ରର ଘୋଷିତ ନୀତି ହୋଇସାରିଲାଣି । ଗାନ୍ଧିଜୀ 'ପୃଥିବୀର ରାଜନୈତିକ ଆଦର୍ଶବାଦ' ସଂପର୍କରେ ଯେଉଁ ମନ୍ତବ୍ୟମାନ ଦେଇଥିଲେ, ତାହା ଏବେ ସଂକଳିତ ହୋଇସାରିଛି । ସେହି ସଂକଳନରୁ ଗାନ୍ଧିଜୀଙ୍କର 'ସାତଟି ମନ୍ତବ୍ୟ' ଏଠାରେ ଉଲ୍ଲେଖ କରାଯାଉଛି । ଏହି ମନ୍ତବ୍ୟଗୁଡ଼ିକ ୧୯୨୪ ମସିହାରୁ ୧୯୪୬ ମସିହା ମଧ୍ୟରେ ୟଙ୍ଗ ଇଣ୍ଡିଆ, ହରିଜନ ପତ୍ରିକାରେ ଛଅଟି ପ୍ରକାଶ ପାଇଥିଲା । ଆଉ ଗୋଟିଏ CWMG, XV, 168 ପୃଷ୍ଠାରେ ପ୍ରକାଶିତ (ଏହାର ତାରିଖ ଜଣାନାହିଁ) କିନ୍ତୁ ସଂକଳକ ସେଥିରୁ ହିଁ ଗାନ୍ଧିଜୀଙ୍କ ବ୍ୟାଖ୍ୟା ଆରମ୍ଭ କରିଛନ୍ତି ।

ଏପରି ଆଲୋଚନାର ଉଦ୍ଦେଶ୍ୟ ହେଉଛି ଏହି ପରିବର୍ତ୍ତିତ ସମାଜରେ, ରାଷ୍ଟ୍ର ଓ ବିଶ୍ୱରେ 'ରାଜନୈତିକ ଆଦର୍ଶବାଦ' କ୍ଷେତ୍ରରେ 'ଶୂନ୍ୟତା' ଦେଖା ଦେଇଛି । ସେଥିପାଇଁ 'ସାମ୍ୟବାଦୀ'ମାନେ ମଧ୍ୟ ସେମାନଙ୍କର ଲକ୍ଷ୍ୟ ଓ ପନ୍ଥାରେ ପରିବର୍ତ୍ତନ କରିବାର ସୂଚନା ମିଳୁଛି । ଯେଉଁମାନେ ସାମ୍ରାଜ୍ୟବାଦ ଆମେରିକାର କଠୋର ସମାଲୋଚକ ଥିଲେ, ସେହିମାନେ ହିଁ ବର୍ତ୍ତମାନ 'ପୁଞ୍ଜି ସଂଗ୍ରହ' ପାଇଁ ଆମେରିକା ବା ପୁଞ୍ଜିବାଦୀ ରାଷ୍ଟ୍ରର ଦ୍ୱାରସ୍ଥ ହେଉଛନ୍ତି । ସ୍ୱାଧୀନତା ପ୍ରାପ୍ତିର ୫୭ ବର୍ଷ ପରେ ଭାରତରେ ଏ ପରିବର୍ତ୍ତନ କାହିଁକି ଘଟୁଛି, ସରକାରମାନେ କାହିଁକି ଦେବାଳିଆ ହେଉଛନ୍ତି, ନିଗମ/ଆୟୋଗମାନେ କାହିଁକି 'ଲାଲବତୀ' ଜାଳୁଛନ୍ତି ? ଏ ସବୁର କାରଣ ଅନୁସନ୍ଧାନ ଏ ପ୍ରବନ୍ଧର ଲକ୍ଷ୍ୟ ନୁହେଁ । ବରଂ ଦେଖିବା କଥା 'ସାମ୍ୟବାଦ'ର ତାତ୍ତ୍ୱିକ ବିକାଶ କ୍ଷେତ୍ରରେ ପଶ୍ଚିମୀ ଚିନ୍ତାଧାରା ଗାନ୍ଧିଜୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ? କାରଣ ସେ ସମୟରେ ଏହି ରାଜନୈତିକ ଆଦର୍ଶବାଦ 'ଚିନ୍ତକ'ମାନଙ୍କର ଆକର୍ଷଣୀୟ ତତ୍ତ୍ୱ ଥିଲା । ସେହି 'ତାତ୍ତ୍ୱିକ' ଦିଗଟି ପ୍ରୟୋଗବାଦୀ ଭୂମିକା ନେଲାବେଳେ ଅସଫଳ ହେଲା କାହିଁକି ?



ତେଣୁ ଏଠାରେ ଗାନ୍ଧିଜୀଙ୍କର ମନ୍ତବ୍ୟଗୁଡ଼ିକ କ୍ରମାନ୍ୱୟରେ ଉପସ୍ଥାପନ କରାଯିବ ଓ ସେ ସଂପର୍କରେ ଏ ଲେଖକଙ୍କର ମନ୍ତବ୍ୟ 'ସର୍ବୋଦୟ ରାଜନୀତି' ଦୃଷ୍ଟିରୁ ପ୍ରଦାନ କରାଯିବ । ଯେଉଁ ସାମ୍ୟବାଦୀ ବନ୍ଧୁମାନେ 'ଗାନ୍ଧିଜୀଙ୍କର ମନ୍ତବ୍ୟ' ଓ 'ମୋର ସୂଚନା' ସହିତ ଏକମତ ନ ହେବେ, ସେମାନେ ଏ ସଂପର୍କରେ ନିଜର ମତାମତ ବ୍ୟକ୍ତ କରିପାରନ୍ତି । କିନ୍ତୁ ଏଠାରେ 'ମୌଳିକ ଉପାଦାନ' ହେଉଛି 'ଗାନ୍ଧିଜୀଙ୍କର ମନ୍ତବ୍ୟ' । ତାହା ହିଁ ପାଠ ବା Text । ତାହାର ବ୍ୟାଖ୍ୟା କିପରି ହେବ ତାହା ସାମ୍ୟବାଦୀ ବନ୍ଧୁମାନେ କରିପାରନ୍ତି - ଆଉ ମୁଁ ବି ସେ ବ୍ୟାଖ୍ୟା କରିବି । ସେହି ବିଚାରରୁ 'ସାଂପ୍ରତିକ ସମାଜରେ' ଗାନ୍ଧିଜୀଙ୍କର ଚିନ୍ତାଧାରାର ପ୍ରାସଙ୍ଗିକତାକୁ ଜନସାଧାରଣ ବିଚାର କରିବେ । କିନ୍ତୁ ଏଠାରେ ସ୍ମରଣ ରଖିବାକୁ ହେବ ଯେ 'ନିର୍ବାଚନ ରାଜନୀତି'କୁ ଏ ଆଲୋଚନାର ପରିସରକୁ ମୁଁ ଆଣୁ ନାହିଁ ।

୧. Collected Works of Mahatma Gandhi (CWMG), 168 ପୃଷ୍ଠାରେ ଗାନ୍ଧିଜୀଙ୍କର ମନ୍ତବ୍ୟ : 'ବଲସେଭବାଦ ଆଧୁନିକ ବସ୍ତୁତାନ୍ତ୍ରିକ ସଭ୍ୟତାର ଏକ ଆବଶ୍ୟକୀୟ ଫଳ । ଏମାନେ 'ବସ୍ତୁ'କୁ ଏପରି ଆଗ୍ରହବିହୀନ ଉପାସନା କରି ଆସିଛନ୍ତି ଯେ ସେହି ଚିନ୍ତାଧାରାର ଅନୁଗାମୀ ଅନୁଷ୍ଠାନ - 'ବସ୍ତୁତାନ୍ତ୍ରିକ ପ୍ରଗତି'କୁ ଏକମାତ୍ର ଲକ୍ଷ୍ୟ ଭାବରେ ବିଚାର କରି ଆସିଛନ୍ତି । ଫଳରେ ଏହା ଜୀବନର ସୂକ୍ଷ୍ମ ଅନୁଭୂତି ସହିତ ସମ୍ପର୍କ ରକ୍ଷା କରିପାରି ନାହିଁ ।'

(ଗାନ୍ଧିଜୀ ସାମ୍ୟବାଦ ସଂପର୍କରେ ନିଜର ମନ୍ତବ୍ୟ ଦେଲାବେଳେ ଏକଥା ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି ଯେ ସାମ୍ୟବାଦୀ





ରାଜନୈତିକ ଆଦର୍ଶବାଦରେ 'ବସ୍ତୁତାନ୍ତ୍ରିକତା' ବ୍ୟତୀତ ଅନ୍ୟ ବିଷୟର ଉଲ୍ଲେଖ ନାହିଁ । ତେଣୁ ଯେଉଁସବୁ ସାମାଜିକ ସମସ୍ୟାମାନ ଉପୁଜୁଛି, ତାହା ଅର୍ଥନୈତିକ ପରିବର୍ତ୍ତନ ଦ୍ୱାରା ସମ୍ଭବ ବୋଲି ସାମ୍ୟବାଦୀମାନେ ବିଚାର କରି ଆସିଛନ୍ତି । ତେଣୁ ଜୀବନର ଅନ୍ୟାନ୍ୟ ବିଭବ ଯେ 'ରାଜନୈତିକ ଆଦର୍ଶବାଦ' ପରିସର ଭିତରକୁ ଆସିବା ଉଚିତ, ସେମାନେ ହୁଏତ ଅସ୍ୱୀକାର କରିଛନ୍ତି କିମ୍ବା ସେଭଳି ପ୍ରାଧାନ୍ୟ ଦେଇ ନାହାନ୍ତି - ମୋର ବ୍ୟାଖ୍ୟା) ।

୨. Young India, 11-12-24ରେ ଗାନ୍ଧିଜୀ 'ବଲସେଭବାଦ' ସଂପର୍କରେ ତାଙ୍କର ଅଜ୍ଞତା ପ୍ରକାଶ କରି ମଧ ତାତ୍ତ୍ୱିକ ଦିଗରୁ ନିଜର ମତ ସାବ୍ୟସ୍ତ କରିଛନ୍ତି ।

'ବଲସେଭବାଦ କ'ଣ ସେ ସଂପର୍କରେ ମୁଁ ଅଜ୍ଞ । ମୁଁ ଏହାକୁ ଅଧ୍ୟୟନ କରିବାକୁ ସମର୍ଥ ହୋଇନାହିଁ । ମୁଁ ଜାଣେ ନାହିଁ ଶେଷରେ ଏହା ରୁଷ ପାଇଁ ଭଲ ହେବ କି ନାହିଁ । କିନ୍ତୁ ମୁଁ ନିଶ୍ଚିତ ଭାବରେ ଜାଣିଛି ଯେ ଯେହେତୁ ଏହା ହିଂସା ଉପରେ ପ୍ରତିଷ୍ଠିତ ଓ 'ଭଗବଦ୍ ସତ୍ତା'ରେ ବିଶ୍ୱାସ କରେ ନାହିଁ, ତେଣୁ ତାହା ମତେ ଆକୃଷ୍ଟ କରିପାରିନାହିଁ । ମୁଁ ସଫଳତା ପାଇଁ ସହଜ-ହିଂସାର ମାର୍ଗରେ ବିଶ୍ୱାସ କରେ ନାହିଁ । ଯେଉଁ ବଲସେଭିକ ବନ୍ଧୁମାନେ ମୋ ଉପରେ ତାଙ୍କର ଦୃଷ୍ଟି ରଖିଛନ୍ତି, ସେମାନଙ୍କର ଉତ୍ତମ ଉଦ୍ଦେଶ୍ୟ ପ୍ରତି ମୁଁ ଯେତେ ସମର୍ଥନ ପ୍ରକାଶ କଲେ ବା ତାହାର ପ୍ରଶଂସା କଲେ ମଧ, ମୁଁ ହିଂସାର ମାର୍ଗକୁ ଗ୍ରହଣ କରିବାକୁ କେବେ ହେଲେ ସମର୍ଥନ କରିପାରିବି ନାହିଁ । ଏହା ଯେତେ ମହତ୍ତର କାରଣ ପାଇଁ ବ୍ୟବହୃତ ହେଉଥିଲେ ମଧ ଏ ମାର୍ଗର ମୁଁ ବିରୋଧୀ ।'

(ଏହି ମନ୍ତବ୍ୟରୁ ମନେ ହେଉଛି ସାମ୍ୟବାଦୀ ବନ୍ଧୁମାନେ ଗାନ୍ଧିଜୀଙ୍କ ସହିତ ସଂପର୍କ ରକ୍ଷା କରିଥିଲେ । କିନ୍ତୁ ସେମାନଙ୍କର ଉଦାର ଉଦ୍ଦେଶ୍ୟ ବା ଲକ୍ଷ୍ୟ ସଂପର୍କରେ ଗାନ୍ଧିଜୀଙ୍କର କୌଣସି ଦ୍ୱିଧା ନଥିଲେ ମଧ ସେହି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ 'ହିଂସାର ମାର୍ଗ'କୁ ସେ ବିରୋଧ କରୁଥିଲେ - ମୋର ବ୍ୟାଖ୍ୟା) ।

୩. Young India, 15-11-28 - ମୁଁ ସ୍ୱୀକାର କରୁଛି ଯେ 'ବଲସେଭବାଦ'ର ସଂପୂର୍ଣ୍ଣ ଅର୍ଥ ଗ୍ରହଣ କରିବାକୁ ମୁଁ ସମର୍ଥ ହୋଇନାହିଁ । ମୁଁ ଏତିକି ଜାଣିଛି ଯେ ଏହା 'ଘରୋଇ ସମ୍ପତ୍ତି' ବାତିଲ୍ କରିବାକୁ ଲକ୍ଷ୍ୟ ରଖି ଆସିଛି । ଅର୍ଥନୀତି କ୍ଷେତ୍ରରେ ସମ୍ପତ୍ତି ନ ରଖିବାର (ଅପରିଗ୍ରହ) ଏହା 'ନୀତିଧର୍ମ' ( Ethical ଏହି 'ପରିଭାଷା' ଗାନ୍ଧିଜୀ କରିଥିଲେ) ସମ୍ବଳିତ ଏକ ଆଦର୍ଶ । ଯଦି ଏହାକୁ ଲୋକମାନେ ସ୍ୱଇଚ୍ଛାରେ କିମ୍ବା ଶାନ୍ତିପୂର୍ଣ୍ଣ ପ୍ରରୋଚନାରେ କରାଯିବ ତେବେ ଏହାଠାରୁ ଅଧିକ କାର୍ଯ୍ୟ କରାଯାଇ ପାରିବ ନାହିଁ । କିନ୍ତୁ ବଲସେଭବାଦ ସଂପର୍କରେ ମୁଁ ଯେତିକି ଜାଣିଛି ଏହା ବଳପ୍ରୟୋଗ କରି, ଏହି କାର୍ଯ୍ୟ ହାସଲ କରିବାକୁ ଚାହେଁ । ଏହାଛଡ଼ା ଏପରି ଉପାୟରେ ସଂଗୃହୀତ ଜମିକୁ ରାଜ୍ୟର/ରାଷ୍ଟ୍ରର ମାଲିକାନା ସ୍ୱତ୍ତ୍ୱରେ ପରିଣତ କରିବାକୁ ଚାହେଁ । ଏହା ଯଦି ସତ୍ୟ ହୋଇଥାଏ, ତେବେ ବଲସେଭର-ପ୍ରଶାସନରେ ସାଂପ୍ରତିକ କାର୍ଯ୍ୟକ୍ରମ ଖୁବ୍ ବେଶୀ ଦିନ ତିଷ୍ଠି ରହିପାରିବ ନାହିଁ । ଏହା ମୋର ଦୃଢ଼ ବିଶ୍ୱାସ ଯେ କୌଣସି ସ୍ଥାୟୀ କାର୍ଯ୍ୟକୁ ହିଂସା ଜରିଆରେ କରିବା ସମ୍ଭବ ନୁହେଁ । କିନ୍ତୁ ସେ ଯାହା ହେଉନା କାହିଁକି, ଏହି ବଲସେଭିକ ଆଦର୍ଶବାଦ ଅନ୍ତରାଳରେ ଅଗଣିତ ନରନାରୀଙ୍କର ତ୍ୟାଗ ରହିଛି । ତା'ଛଡ଼ା ଏହି ତ୍ୟାଗ ଲେନିନ୍‌ଙ୍କ ଭଳି ମହାନ୍ ଆତ୍ମାଙ୍କର ତ୍ୟାଗ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଏହା ସଂପୂର୍ଣ୍ଣ ବିଫଳ ହେବ ନାହିଁ । ସେମାନଙ୍କର ଉଦାତ୍ତ ତ୍ୟାଗର ଦୃଷ୍ଟାନ୍ତ ଚିରଦିନ ଭାସ୍ୱର ରହିବ ଓ କାଳକ୍ରମେ ଏହା ଯଥାଶୀଘ୍ର ଶୁଦ୍ଧପୂତ ହୋଇପାରିବ ।

(ଏହି ମନ୍ତବ୍ୟରେ ଗାନ୍ଧିଜୀ 'ବଲସେଭବାଦ'ର ଲକ୍ଷ୍ୟ ସଂପର୍କରେ ଦ୍ୱିମତ ନହୋଇଥିଲେ ମଧ 'ପନ୍ଥା' ସଂପର୍କରେ ଆଶଙ୍କା ପ୍ରକାଶ କରିଛନ୍ତି । କିନ୍ତୁ ଆଶାବାଦୀ ଗାନ୍ଧିଜୀ ସୂଚନା ଦେଇଛନ୍ତି ଯେ କାଳକ୍ରମେ 'ବଲସେଭବାଦ'ରୁ 'ହିଂସା' ଦୂର ହେବ ଓ ଏହା ଏକ ପବିତ୍ର ରାଜନୈତିକ ଆଦର୍ଶବାଦରେ ପରିଣତ ହେବ - ମୋର ବ୍ୟାଖ୍ୟା)

୪. Young India, 26-3-31 - 'ଶ୍ରମିକମାନଙ୍କର ସମସ୍ୟାକୁ ମୁଁ ନିଜର ସମସ୍ୟା ଭାବରେ ବିଚାର କରି ଆସିଛି । ଯୁବ ସାମ୍ୟବାଦୀମାନେ ଜନ୍ମ ହେବା ପୂର୍ବରୁ ମୁଁ ଏହା କରି ଆସିଛି । ମୋର ଜୀବନର ଏକ ବଡ଼ ଭାଗ ମୁଁ ଦକ୍ଷିଣ ଆଫ୍ରିକାର ଶ୍ରମିକମାନଙ୍କ ସହିତ କଟାଇଛି । ମୁଁ ସେମାନଙ୍କ ସହିତ ଏକାଠି ରହୁଥିଲି ଓ ସେମାନଙ୍କର ସୁଖ ଦୁଃଖରେ ଭାଗୀ ହୋଇଥିଲି । ତେଣୁ ଆପଣମାନେ ବୁଝିବା ଦରକାର ଯେ କେଉଁଥିପାଇଁ ମୁଁ ଶ୍ରମିକମାନଙ୍କ ସଂପର୍କରେ କହିବାକୁ ଦାବୀ କରିପାରେ । ଅନ୍ୟ କିଛି ନ ହେଲେ ମଧ ମୁଁ ଆପଣମାନଙ୍କଠାରୁ (ସାମ୍ୟବାଦୀ) ସୌଜନ୍ୟମୂଳକ ବ୍ୟବହାର ଆଶା କରୁଛି । ମୋ ସହିତ ଆପଣମାନେ ଖୋଲାଖୋଲି ଭାବରେ ଆଲୋଚନା କରିବାକୁ, ମୁଁ ଆପଣମାନଙ୍କୁ ନିମନ୍ତ୍ରଣ କରୁଛି ।

ଆପଣମାନେ ସାମ୍ୟବାଦୀ ବୋଲି ଦାବୀ କରନ୍ତି । କିନ୍ତୁ ଆପଣମାନେ ସାମ୍ୟବାଦୀର ଜୀବନ ଗ୍ରହଣ କରିବାକୁ ରାଜି ନୁହନ୍ତି । ମୁଁ ଆପଣମାନଙ୍କୁ ଜଣେଇ ଦେବାକୁ ଚାହେଁ ଯେ 'ସାମ୍ୟବାଦୀ ଆଦର୍ଶ' ଅନୁରୂପ ଜୀବନଯାପନ କରିବାକୁ ମୁଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଆସୁଛି । ମୋର ମନେ ହେଉଛି 'ସାମ୍ୟବାଦ'ରେ ସୌଜନ୍ୟକୁ ପ୍ରତ୍ୟାଖ୍ୟାନ କରାଯାଇ ନାହିଁ । ମୁଁ ଆଜି ଆପଣମାନଙ୍କ ଗହଣରେ ଅଛି, କିନ୍ତୁ ଅଳ୍ପ କେତେ ସମୟ ଭିତରେ ମୁଁ ଆପଣଙ୍କୁ ଛାଡ଼ି ଚାଲିଯିବି । ଯଦି ଆପଣମାନେ ସାରା ଦେଶକୁ ଆପଣଙ୍କ ସହିତ ନେବାକୁ ଚାହାନ୍ତି, ଆପଣମାନେ ମୋ ମନ୍ତବ୍ୟ ସଂପର୍କରେ ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି ଓ ଏହି ପ୍ରତିକ୍ରିୟା ଯୁକ୍ତିଯୁକ୍ତ ହେବା ଆବଶ୍ୟକ । ଆପଣମାନେ ସଂଘର୍ଷ ଜରିଆରେ ତାହା କରିପାରିବେ ନାହିଁ । ଆପଣମାନେ ଆପଣଙ୍କର ମତାମତ ସହିତ ଏକମତ କରିବାକୁ ଦେଶକୁ ଧ୍ୱଂସ କରିପାରନ୍ତି । କିନ୍ତୁ ଆପଣମାନେ କେତେ ଲୋକଙ୍କର ଜୀବନ ନାଶ କରିପାରିବେ । ନିଶ୍ଚିତ





ଭାବରେ ଏହା କୋଟି କୋଟି ଲୋକ ନୁହନ୍ତି । ଯଦି ଆପଣଙ୍କ ସଂଗଠନରେ ଲକ୍ଷ ଲକ୍ଷ ଲୋକ ଥାନ୍ତି, ତେବେ ଆପଣମାନେ ହଜାର ହଜାର ଲୋକଙ୍କୁ ମାରି ଦେଇପାରନ୍ତି । କିନ୍ତୁ ବର୍ତ୍ତମାନ ଆପଣମାନଙ୍କର ସଂଖ୍ୟା ମାତ୍ର ମୁଷ୍ଟିମେୟ । ମୋ ବିଚାରରେ ଆପଣମାନେ କଂଗ୍ରେସକୁ ପରିବର୍ତ୍ତିତ କରିବାକୁ ଚେଷ୍ଟା କରନ୍ତୁ ଓ ଏହାର ଦାୟିତ୍ୱ ମଧ୍ୟ ନେଇପାରନ୍ତି । କିନ୍ତୁ ଆପଣମାନେ ସର୍ବନିମ୍ନ ସୌଜନ୍ୟ ପ୍ରକାଶ ନକରି ତାହା କରିପାରିବେ ନାହିଁ । ସେପରି କୌଣସି କାରଣ ନାହିଁ ଯେ ଆପଣମାନେ ସାଧାରଣ ସୌଜନ୍ୟମୂଳକ ବ୍ୟବହାର ଦେଖାଇ ପାରିବେ ନାହିଁ । କାରଣ ଆପଣମାନଙ୍କୁ ଆପଣଙ୍କର ମନଖୋଲା ମତ ପ୍ରକାଶ କରିବାକୁ ସୁଯୋଗ ଦିଆଯାଉଛି । ଭାରତ ଯେକୌଣସି ଲୋକର କଥା ଶୁଣିବାକୁ ଧୈର୍ଯ୍ୟର ସହିତ ସୁଯୋଗ ଦେଇ ଆସିଛି ।'

(ଏହି ମନ୍ତବ୍ୟରେ 'କଂଗ୍ରେସ' ଓ 'ସାମ୍ୟବାଦୀ'ମାନଙ୍କ ମଧ୍ୟରେ ଥିବା ତୀବ୍ର ବିରୋଧଭାବ ସ୍ପଷ୍ଟ । କିନ୍ତୁ ଗାନ୍ଧିଜୀ 'ଗଣତନ୍ତ୍ରର ମାନ ରକ୍ଷା କରି ସେମାନଙ୍କ ସହିତ ସୌଜନ୍ୟମୂଳକ ଆଲୋଚନାର ପନ୍ଥା ଗ୍ରହଣ କରିବାକୁ ସେମାନଙ୍କୁ ପରାମର୍ଶ ଦେଇଛନ୍ତି । ଯେକୌଣସି ଆଦର୍ଶର ଅନୁଗାମୀ ହେବା ପୂର୍ବରୁ ସେହି ଆଦର୍ଶର ଅନୁରୂପ ବ୍ୟକ୍ତିତ୍ୱ ଗଠନ ପାଇଁ ମଧ୍ୟ ସେ ପରାମର୍ଶ ଦେଇଛନ୍ତି - ମୋ ବ୍ୟାଖ୍ୟା)

୫. ହରିଜନ, ୧୩.୨.୩୭ - 'ଆପଣ ସାମ୍ୟବାଦ ସଂପର୍କରେ କ'ଣ ଚିନ୍ତା କରୁଛନ୍ତି ? ଆପଣ କ'ଣ ଭାବୁଛନ୍ତି ଯେ ଏହା ଭାରତ ପକ୍ଷରେ ଭଲ ହେବ ?'

'ରୁଷ ଦେଶ ଭଳି ସାମ୍ୟବାଦ ଅର୍ଥାତ୍ ଯେଉଁ ସାମ୍ୟବାଦକୁ ଲୋକଙ୍କ ଉପରେ ଚାପି ଦିଆଯାଉଛି, ତାହା ଭାରତରେ ଆଦର ପାଇବ ନାହିଁ । ମୁଁ 'ଅହିଂସ-ସାମ୍ୟବାଦ'ରେ ବିଶ୍ୱାସ କରେ ।'

ଯଦି ହିଂସାର ଆଶ୍ରୟ ନ ନେଇ ସାମ୍ୟବାଦ ଆସେ, ତେବେ ମୁଁ ତାକୁ ସ୍ୱାଗତ କରିବି । ତାହା ହେଲେ ସମ୍ପତ୍ତିର କେହି ମାଲିକ ହୋଇ ପାରିବେ ନାହିଁ । ବରଂ ଏହା ଲୋକଙ୍କ ପକ୍ଷରୁ, ଲୋକଙ୍କ ପାଇଁ ହିଁ କରାଯାଇପାରିବ । ଜଣେ ଲକ୍ଷପତି ପାଖରେ ଲକ୍ଷ ଲକ୍ଷ ଟଙ୍କା ଥାଇପାରେ । କିନ୍ତୁ ସେ ସର୍ବସାଧାରଣଙ୍କ ପକ୍ଷରୁ ଏହାର ପରିଚାଳକ ରହିବ । ରାଷ୍ଟ୍ର କେବଳ ସେତିକିବେଳେ ଏହାର ଦାୟିତ୍ୱ ନେଇପାରିବ, ଯେତେବେଳେ ଏହା ହେବ ସର୍ବସାଧାରଣଙ୍କର ।

'ଆପଣ ଓ ଜବାହରଲାଲଙ୍କ ମଧ୍ୟରେ 'ସମାଜବାଦ ସଂପର୍କରେ' କୌଣସି ମତ ପାର୍ଥକ୍ୟ ରହିଛି କି ?

ହଁ ଅଛି । କିନ୍ତୁ ଏହା କେବଳ ପ୍ରୟୋଗ କ୍ଷେତ୍ରରେ ଥିବା ପ୍ରାଧାନ୍ୟଗତ ପାର୍ଥକ୍ୟ । ବୋଧହୁଏ ସେ ଫଳାଫଳ (ଲକ୍ଷ୍ୟ) ଉପରେ ଅଧିକ ପ୍ରାଧାନ୍ୟ ଦେଉଛନ୍ତି ଓ ମୁଁ ପନ୍ଥା ଉପରେ ଅଧିକ ପ୍ରାଧାନ୍ୟ ଦେଉଛି । ବୋଧହୁଏ ତାଙ୍କ ମତରେ ମୁଁ 'ଅହିଂସା' ଉପରେ ଅତ୍ୟଧିକ ପ୍ରାଧାନ୍ୟ ଦେଉଛି । କିନ୍ତୁ ସେ ଯଦିଓ ଅହିଂସାରେ ବିଶ୍ୱାସ କରନ୍ତି, ତଥାପି ଅନ୍ୟ ଉପାୟରେ 'ସମାଜବାଦ' ଆଣିବାକୁ ଚାହାନ୍ତି - ଯଦି ଏହା ଅହିଂସା ମାର୍ଗରେ ସମ୍ଭବ ନ ହୁଏ । ଅବଶ୍ୟ 'ଅହିଂସା' ଉପରେ ପ୍ରାଧାନ୍ୟ ଦେବା ହେଉଛି ଏକ 'ନୀତି' । ଯଦି ବି ମତେ କେହି ଆଶ୍ୱାସନା ଦିଅନ୍ତି ଯେ ହିଂସା ଜରିଆରେ ଆମେ ସ୍ୱାଧୀନତା ହାସଲ କରିପାରିବା, ତେବେ ମୁଁ ତାହା ଗ୍ରହଣ କରିବାକୁ ରାଜି ହେବି ନାହିଁ । ଏହା ପ୍ରକୃତ ସ୍ୱାଧୀନତା ଦେବ ନାହିଁ ।

(ଏଠାରେ ଭାରତର ସ୍ୱାଧୀନତା ଆନ୍ଦୋଳନ ପରିପ୍ରେକ୍ଷୀରେ 'ରାଜନୈତିକ ଆଦର୍ଶବାଦ'ର ପ୍ରୟୋଗ ପରୀକ୍ଷା ଆରମ୍ଭ ହୋଇଥିଲା । ସେହି ଦୃଷ୍ଟିରୁ ଗାନ୍ଧିଜୀ 'ସାମ୍ୟବାଦ', ଅହିଂସା ମାର୍ଗରେ ବିଶ୍ୱାସ କରୁ ନଥିବାରୁ, 'ଅହିଂସ ସାମ୍ୟବାଦୀ' ହେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଘୋଷଣା କରିଥିଲେ । ଏଠାରେ 'ଗାନ୍ଧିବାଦ'ର ପ୍ରାଧାନ୍ୟ 'ଅହିଂସା' ବୋଲି ସେ ସୂଚେଇ ଦେଇଛନ୍ତି - ମୋ ବ୍ୟାଖ୍ୟା)

୬. ହରିଜନ, ୧୩.୩.୩୭ - 'ଶେଷ ବିଶ୍ଳେଷଣରେ 'ସାମ୍ୟବାଦ'ର ଅର୍ଥ କ'ଣ ? ଏହାର ଅର୍ଥ ହେଉଛି ଏକ ଶ୍ରେଣୀ ବିହୀନ ସମାଜ - ଏହା ଏକ ଭଲ ଆଦର୍ଶ ଯାହାକୁ କାର୍ଯ୍ୟରେ ପରିଣତ କରିବା ଆବଶ୍ୟକ ସେତେବେଳେ, ଯେତେବେଳେ ଏହା ହିଂସାର ଆଶ୍ରୟ ନ ନେଇ ଏକ ଆଦର୍ଶରେ ପହଁଚିବାକୁ ଚାହୁଁଛି । ଅସମତାର ଭାବଧାରା ବା 'ଉଚ୍ଚ ଓ ନୀଚ' ଧାରଣା ନିଶ୍ଚିନ୍ତ ଭାବରେ ନୀଚ ମନୋଭାବରେ ପରିଚାଳିତ । କିନ୍ତୁ ମଣିଷର ହୃଦୟରୁ ଏହି ବଦ୍ଧାରଣାକୁ ସଙ୍ଗୀନ୍ ମୁନରେ ମୁଁ ଦୂର କରିବାକୁ ଚାହେଁ ନାହିଁ ।'

(ଶ୍ରେଣୀହୀନ ସମାଜ ଗଠନର ଉଚ୍ଚ ଆଦର୍ଶକୁ ଗାନ୍ଧିଜୀ ଗ୍ରହଣ କରିଥିଲେ ମଧ୍ୟ ଏହା କୌଣସି ପ୍ରକାର 'ବଳ ପ୍ରୟୋଗ' ଦ୍ୱାରା ସାଧିତ ହେଉ ବୋଲି ସେ ଚାହୁଁ ନଥିଲେ - ମୋ ବ୍ୟାଖ୍ୟା)

୭. ହରିଜନ, ୬.୧୦.୪୬ - 'ଗୋଳମାଳିଆ ପରିସ୍ଥିତିରୁ ଫାଇଦା ଉଠାଇବା 'ସାମ୍ୟବାଦୀ'ମାନଙ୍କର ବୃତ୍ତି ହୋଇଯାଇଛି ବୋଲି ମନେ ହୁଏ । ସାମ୍ୟବାଦୀମାନଙ୍କ ମଧ୍ୟରେ ମୋର ବହୁତ ବନ୍ଧୁ ଅଛନ୍ତି । ସେମାନଙ୍କ ଭିତରୁ ଅନେକ ମୋର ପୁଅମାନଙ୍କ ଭଳି । କିନ୍ତୁ ମନେ ହେଉଛି ସେମାନେ ଭଲ ଓ ମନ୍ଦ, 'ସତ୍ୟ ଓ ମିଥ୍ୟା' ମଧ୍ୟରେ ପ୍ରଭେଦ କଥା ଭାବୁ ନାହାନ୍ତି । ସେମାନେ ମୋର ଏକତା ସହିତ ଏକମତ ନୁହନ୍ତି, କିନ୍ତୁ ସେମାନଙ୍କର ପ୍ରକାଶିତ କାର୍ଯ୍ୟାବଳୀ ମୋର କଥାକୁ ସମର୍ଥନ କରୁଛି । ପୁଣି, ସେମାନେ ଭାରତବର୍ଷ ଅପେକ୍ଷା ରୁଷକୁ ନିଜର 'ଆଧ୍ୟାତ୍ମିକ ଗୃହ' ବୋଲି ଗ୍ରହଣ କରି ନେଇଛନ୍ତି । କୌଣସି ବହିର୍ଦ୍ଦେଶୀୟ ଶକ୍ତି ଉପରେ ମୁଁ ନିର୍ଭର କରିବାର ପକ୍ଷପାତି ନୁହେଁ । ମୁଁ ଏକଥା ମଧ୍ୟ କହିଛି ଯେ ବର୍ତ୍ତମାନ ଖାଦ୍ୟ ସଙ୍କଟବେଳେ ଆମେ 'ରୁଷର କୃଷିରୁ ଉତ୍ପନ୍ନ' ଖାଦ୍ୟ ଉପରେ ନିର୍ଭର କରି ରହିବା ବରଂ ଶ୍ରେୟସ୍କର । ବିଦେଶର ଅନୁଦାନ ଗ୍ରହଣ କରିବାର ଆବଶ୍ୟକତା ନାହିଁ । ଅନ୍ୟଥା ଆମେ ଏକ ସ୍ୱାଧୀନ ଦେଶ ଭାବରେ ରହି ପାରିବା ନାହିଁ । 'ବିଦେଶୀ ରାଜନୈତିକ ଆଦର୍ଶବାଦ' କ୍ଷେତ୍ରରେ ବାଧ ଆମକୁ ସେହି କଥା ମନେ ରଖିବାକୁ ହେବ । ମୁଁ ସେହି ଭଳି 'ରାଜନୈତିକ ଆଦର୍ଶବାଦ' କେବଳ ସେତିକି ପରିମାଣରେ ଗ୍ରହଣ କରିବାକୁ ପ୍ରସ୍ତୁତ ଯାହା ଆମେ 'ଆତ୍ମସ୍ଥ'





କରିପାରିବା ଓ ଭାରତୀୟ ପରିବେଶରେ ଯାହା ଗ୍ରହଣ କରିବା ସମ୍ଭବ ।

ତେଣୁ 'ସାମ୍ୟବାଦୀ'ମାନଙ୍କ ପ୍ରତି ମୋର ବକ୍ତବ୍ୟ ହେଉଛି ଯେ ବରଂ ମୁଁ ସେମାନଙ୍କ ହାତରେ ମରିବାକୁ ପ୍ରସ୍ତୁତ ଅଛି, କିନ୍ତୁ ମୁଁ ପ୍ରତିଶୋଧ ପରାୟଣ ହୋଇ ପାରିବି ନାହିଁ ।

(ଏହି ଉକ୍ତିରେ ଗାନ୍ଧିଜୀ 'ଭାରତର ରାଜନୈତିକ ଆଦର୍ଶବାଦ'କୁ 'ଭାରତୀୟତା'ର ମୂଳମନ୍ତ୍ର ଉପରେ ପ୍ରତିଷ୍ଠା କରିବାକୁ ଆବେଗ ପ୍ରକାଶ କରିଥିଲେ । ଏହି 'ଭାରତୀୟତା' ତାଙ୍କ ଚିନ୍ତାଧାରାନୁଯାୟୀ ସତ୍ୟର ଅନ୍ୱେଷଣ ଓ ଅହିଂସ ଆଚରଣ । ଏହି ପରିପ୍ରେକ୍ଷୀରେ ହିଁ ତାଙ୍କ 'ସର୍ବୋଦୟ ରାଜନୈତିକ ଆଦର୍ଶବାଦ'ର ଜନ୍ମ । ସେଇଥିପାଇଁ ସ୍ୱାଧୀନତା ଆନ୍ଦୋଳନ ପରେ 'ଲୋକ ସେବକ ସଂଘ' - ଯାହାର ଅର୍ଥ ହେଉଛି ଜନସାଧାରଣ (ସର୍ବ)ଙ୍କର ସେବକ ଭାବରେ ରାଜନୈତିକ କାର୍ଯ୍ୟକଳାପ ଗ୍ରହଣ କରିବା । ତେଣୁ 'ଲୋକ ସେବକ ସଂଘ' ପାଇଁ ସେ ଯେଉଁ ସମ୍ବିଧାନର ଚିଠା ପ୍ରସ୍ତୁତ କରିଥିଲେ - ତାହାକୁ ହିଁ 'ସର୍ବୋଦୟ ରାଜନୈତିକ ଆଦର୍ଶବାଦ'ର ଭିତ୍ତିଭୂମି ବୋଲି ବିଚାର କରାଯାଇପାରେ । ସେହି 'ଭିତ୍ତିଭୂମି'କୁ ସୁଦୃଢ଼ କରିବାର ଅବସ୍ଥା ସୃଷ୍ଟି ହୋଇ ନଥିବାରୁ ଗାନ୍ଧିଜୀଙ୍କ ଭାଷାରେ ଆମେ ଏବେ ବି 'ବିଦେଶୀ ରାଜନୈତିକ ଆଦର୍ଶବାଦ'ର ଚକ୍ରବ୍ୟୂହ ମଧ୍ୟରେ ରହିଛୁ । ଆଉ ସେହି ଭିତ୍ତିଭୂମିକୁ ସୁଦୃଢ଼ କରିବାର ଅର୍ଥ, ଲୋକଙ୍କ ପାଇଁ, ଲୋକଙ୍କ ଦ୍ୱାରା, ଲୋକଙ୍କର 'ଗ୍ରାମ-ସ୍ୱରାଜ' ଗଠନ କରିବା ଓ ଏହାକୁ ମଧ୍ୟ ଏକ 'ସହମତିମୂଳକ ଅନୁଷ୍ଠାନ' ଭାବରେ ପ୍ରତିଷ୍ଠା ଦେବା - ମୋର ବ୍ୟାଖ୍ୟା)

ଏକବିଂଶ ଶତାବ୍ଦୀରେ ରାଜନୈତିକ ଆଦର୍ଶବାଦ କ୍ରମଶଃ ବିଭିନ୍ନ ଭାବରେ ରୂପାନ୍ତରିତ ହେଉଛି । ତାତ୍ତ୍ୱିକ ବିଚାରଣା ମଧ୍ୟ ବଦଳିବାରେ ଲାଗିଛି । ଏହି ପରିବର୍ତ୍ତନକୁ ଆଖି ଆଗରେ ରଖି ରାଷ୍ଟ୍ରର ଜନକ ମହାତ୍ମା ଗାନ୍ଧୀଙ୍କ ବିଚାର ଧାରାକୁ ଅନୁଧ୍ୟାନ କରିବା ଆବଶ୍ୟକ । ଏ ଦିଗରେ ଯୁବ ସମାଜ ଅଧିକ ଆଗ୍ରହୀ ହେବେ ବୋଲି ଆଶା କରୁଛି ।

ସି/୫, ୟୁନିଟ୍-୩
ଖାରବେଳ ନଗର, ଭୁବନେଶ୍ୱର - ୭୫୧୦୦୧

---

# ଗର୍ଜି ଉଠୁ ଅଗ୍ନି କ୍ଷେପଣାସ୍ତ୍ର

ସନ୍ତୋଷ କୁମାର ଦାସ

ସ୍ୱାଗତଂ ସାଧାରଣତନ୍ତ୍ର ଦିବସ
ପ୍ରାଣେ ପ୍ରାଣେ ଭରି ଦିଅ
ସ୍ୱାଧୀନତାର ସ୍ୱାଦ
ତ୍ରିରଂଗା ପତାକା ଉଡୁ
ଭାରତ ଅମ୍ବରେ
ଗର୍ଜି ଉଠୁ ବ୍ରହ୍ମେସ, ତ୍ରିଶୂଳ-ଅଗ୍ନି କ୍ଷେପଣାସ୍ତ୍ର
ଶତ୍ରୁ ଶଂକିତ ହେଉ
ଭାରତ ଜବାନଙ୍କ
ବୀରତ୍ୱ ପ୍ରଭାରେ - ଜାଗୁ ପ୍ରାଣେ ଜାତୀୟତାର ଉନ୍ମେଷ ।
ଯୁଗେ ଯୁଗେ ଭାରତ
ବଢ଼ାଇ ଆସିଛି
ଶାନ୍ତି ମୈତ୍ରୀର ହାତ
ବିଶ୍ୱର ଶାନ୍ତି ସ୍ୱସ୍ତି ପାଇଁ
ଦୁର୍ବଳ ନୁହେଁ ଏ ଭାରତ
ସତ୍ୟ-ଧର୍ମ-ନ୍ୟାୟରେ
ସଦା ପ୍ରତିଷ୍ଠିତ ।
ବନ୍ଦେ ମାତରଂ ସ୍ୱରେ
ପ୍ରକମ୍ପିତ ଗଗନ ପବନ ଆଜି
ଇନ୍‌କିଲାବ ଜିନ୍ଦାବାଦ

କାଶ୍ମିରୀଠାରୁ କନ୍ୟାକୁମାରୀରେ
ଭାରତର ଜବାନ ଜାଗ୍ରତ
ସନ୍ତ୍ରାସବାଦୀଙ୍କୁ ଦଳି ଦେବା ପାଇଁ
ଆଗେଇ ଆସ ହେ ବୀର ଦେଶଭକ୍ତ
ଆଗରେ ପଡ଼ିଛି ପଥ ବହୁଦୂର
ଏ ଦେଶକୁ ସମୃଦ୍ଧ କରିବା
ନେବା ଆମେ ବଜ୍ର ଶପଥ ।
ଜନ୍ମଭୂମି କର୍ମଭୂମି
ମୋ ଦେଶ ପୁଣ୍ୟ ଭାରତ
ଭାରତର ଉନ୍ନତିରେ
ମୋର ଉନ୍ନତି
ସାଗର ସରିତା ଧୁଏ
ମା'ର ଶ୍ରୀପଦ
ବିଜ୍ଞାନ, କୃଷି, କାରିଗରୀ
ପ୍ରଯୁକ୍ତି ବିଦ୍ୟା ଜ୍ଞାନ କୌଶଳରେ
ଉନ୍ନତ ହେବ ଏ ଭାରତବର୍ଷ ।

ଏମ୍.ଆଇ.ଜି.-୧-୮/୧୩
ବି.ଡି.ଏ. କଲୋନୀ, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର-୧୬





# ସ୍ୱାମୀ ବିବେକାନନ୍ଦ ଓ ମୁକ୍ତି

ସୌରୀବନ୍ଧୁ କର

**ସ୍ୱା**ମୀ ବିବେକାନନ୍ଦଙ୍କର ସ୍ୱାଧୀନତା ବା ମୁକ୍ତିର ଭାବନା କେବଳ ଏକ ସାଧାରଣ ଧାରଣା ନୁହେଁ ବରଂ ଚିରନ୍ତନ ସତ୍ୟର ଗଭୀର ଅବବୋଧ । ତାଙ୍କ ବିଚାରରେ ମୁକ୍ତି ଚିରନ୍ତନ, ଅସୀମ, ଅହସ୍ତାନ୍ତରଣୀୟ ଓ ଅପରିବର୍ତ୍ତନୀୟ । ମୁକ୍ତି ଓ ଈଶ୍ୱରଙ୍କର ସଂଜ୍ଞା ଏକ । ସ୍ୱାମୀଜୀଙ୍କର ମୁକ୍ତିର ଧାରଣା ସଂପର୍କରେ ଉପନିଷଦର ପ୍ରଭାବ ସୁସ୍ପଷ୍ଟ । ଉପନିଷଦରେ ବର୍ଣ୍ଣିତ ମୁକ୍ତିର ଆଦର୍ଶ ପ୍ରତି ସ୍ୱାମୀଜୀଙ୍କର ଥିଲା ଗଭୀର ଅନୁରକ୍ତି । କାରଣ ଉପନିଷଦର ଋଷିଗଣ ମୁକ୍ତିର ପ୍ରକୃତି ସଂପର୍କରେ ଗଭୀର ଅନୁଧ୍ୟାନ କରିଥିଲେ । ସେମାନେ ଅନୁଭବ କରିଥିଲେ ଯେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ମୁକ୍ତିରେ ଉଦ୍‌ଧୃତ ହୁଏ, ମୁକ୍ତିରେ ସହାବସ୍ଥାନ କରେ ଓ ଶେଷରେ ମୁକ୍ତିରେ ହିଁ ବିଲୀନ ହୁଏ ।

ପଣ୍ଡିତ ନେହରୁଙ୍କ ମତରେ, 'ଉପନିଷଦର ସ୍ରଷ୍ଟାମାନେ ଅତ୍ୟନ୍ତ ଆବେଗପୂର୍ଣ୍ଣ ଭାବେ ମୁକ୍ତି ଭାବନା ସହିତ ଜଡ଼ିତ ଥିଲେ ଏବଂ ସବୁ କଥାକୁ ସେଇ ଭାବରେ ଦେଖିବାକୁ ଚାହୁଁଥିଲେ । ସ୍ୱାମୀ ବିବେକାନନ୍ଦ ଏହି ଭାବନାକୁ ଗୁରୁତ୍ୱ ଦେଉଥିଲେ ।' ଭଗିନୀ ନିବେଦିତା ଉଲ୍ଲେଖ କରିଛନ୍ତି, 'ସେ (ସ୍ୱାମୀ ବିବେକାନନ୍ଦ) ସ୍ୱର୍ଗ ଅପେକ୍ଷା ମୁକ୍ତି ଓ ମୋକ୍ଷ ଅପେକ୍ଷା ଜ୍ଞାନୋଦୟ ଉପରେ ଗୁରୁତ୍ୱ ଆରୋପ କରୁଥିଲେ ।'

ସ୍ୱାମୀ ବିବେକାନନ୍ଦଙ୍କର ମୁକ୍ତିର ଏହି ଧାରଣାକୁ ଆମେ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ କରିବା (୧) ଆଧ୍ୟାତ୍ମିକ ମୁକ୍ତି, (୨) ବ୍ୟକ୍ତିଗତ ମୁକ୍ତି, (୩) ସାମାଜିକ ମୁକ୍ତି ଓ (୪) ଅର୍ଥନୈତିକ ମୁକ୍ତି । ଯେହେତୁ ତାଙ୍କର ମୁକ୍ତି ସବୁଗୁଡ଼ିକର ସମଷ୍ଟି, ସେ ବ୍ୟକ୍ତି ଓ ସାମାଜିକ ସ୍ୱାଧୀନତାର ସମନ୍ୱୟ, ବସ୍ତୁ ଓ ଆଧ୍ୟାତ୍ମିକ ମୁକ୍ତିର ସମନ୍ୱୟ ପାଇଁ ଉପଦେଶ ଦେଇଥିଲେ ।

ସମସ୍ତଙ୍କର ଜୀବନ ପାଇଁ ଆଧ୍ୟାତ୍ମିକ ସ୍ୱାଧୀନତା ଏକ ଅନ୍ତଃସ୍ଥ ଆବଶ୍ୟକତା । ସେ ଜୀବନ ସଚେତନ ହେଉ କିମ୍ବା ଅସଚେତନ । 'ଯେଉଁଠାରେ ଜୀବନ ରହିଛି, ସେଠାରେ ମୁକ୍ତି ପାଇଁ ରହିଛି ଅନୁସନ୍ଧାନ ଏବଂ ସେହି ମୁକ୍ତି ଓ ଈଶ୍ୱର ସମାନ । ଏହି ମୁକ୍ତି ହେତୁ ପ୍ରକୃତି ଉପରେ ସବୁପ୍ରକାର ପ୍ରଭୁତ୍ୱ ମିଳେ ଏବଂ ଜ୍ଞାନ ନଥିଲେ ଏହା ସମ୍ଭବ ହୁଅନ୍ତା ନାହିଁ ।' ତାଙ୍କ ମତରେ ସ୍ୱାଧୀନତା ବା ମୁକ୍ତି ମନୁଷ୍ୟର ଅନ୍ତଃ ପ୍ରକୃତି ଓ ବାହ୍ୟ ପ୍ରକୃତି ମଧ୍ୟରେ ହେଉଥିବା ସଂଘର୍ଷରୁ ଉତ୍ପନ୍ନ । ସେ କହିଛନ୍ତି, 'ଯାହା ଆମେ ଆମର ଚତୁଃପାର୍ଶ୍ୱରେ ଅନୁଭବ କରୁଛୁ ତାହା ମୁକ୍ତି ଆଡ଼କୁ ସଂଘର୍ଷ କରି ଧାଉଁଛି, ଅଣୁଠାରୁ ମନୁଷ୍ୟ ପର୍ଯ୍ୟନ୍ତ, ତାହା ଅଚେତନ, ଜୀବନ ଶୂନ୍ୟ ବସ୍ତୁ କଣାଠାରୁ ସର୍ବଶ୍ରେଷ୍ଠ ସ୍ଥିତି ମନୁଷ୍ୟର ଆତ୍ମା ପର୍ଯ୍ୟନ୍ତ । ବାସ୍ତବରେ ଏହି ସମଗ୍ର ସଂସାର ମୁକ୍ତି ପାଇଁ ସଂଗ୍ରାମର ଫଳ ।'

ମୁକ୍ତି ଅସୀମ, ପରିବର୍ତ୍ତନ ରହିତ, ଗୁଣହୀନ । ଏହି ସମ୍ପୂର୍ଣ୍ଣ ମୁକ୍ତି ପ୍ରତ୍ୟେକ ବ୍ୟକ୍ତି ପୋଷଣ କରେ । ସ୍ୱାମୀଜୀଙ୍କ ମତରେ ପ୍ରକୃତିଗତ ଭାବେ ମନୁଷ୍ୟ ସଂପୂର୍ଣ୍ଣ ପବିତ୍ର ଓ ମୁକ୍ତ । ବ୍ୟକ୍ତିଗତ ମୁକ୍ତି ମନୁଷ୍ୟର ନିମ୍ନତମ ଜୀବନଠାରୁ ଉଚ୍ଚତମ ଜୀବନ ପ୍ରତି ଏକ ଯାତ୍ରା । ବ୍ୟକ୍ତିଗତ ଜୀବନ ପରବର୍ତ୍ତୀ ସମୟରେ ଜନ୍ମ ଜନ୍ମାନ୍ତର ଦେଇ ଶେଷ ସୀମାରେ ପହଞ୍ଚେ । ଏହି ପୁନର୍ଜନ୍ମ ତତ୍ତ୍ୱ ମାନବ ଆତ୍ମାର ମୁକ୍ତିକୁ ଅଗ୍ରସର କରାଏ । ସ୍ୱାମୀଜୀ ମନୁଷ୍ୟର ଆଧ୍ୟାତ୍ମିକ ବିକାଶ ପାଇଁ ମୁକ୍ତି ଅପରିହାର୍ଯ୍ୟ ବୋଲି ବିଚାର କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତି ପାଇଁ ମୁକ୍ତି ସ୍ୱୟଂ ସଂପୂର୍ଣ୍ଣ । ଏହା ମନୁଷ୍ୟର ସ୍ୱାଭାବିକ ଅବିଚ୍ଛେଦ୍ୟ ଅଧିକାର ଏବଂ ମନୁଷ୍ୟ ନିଜ ଭିତରେ ଏହାକୁ ପୁନଃ ଆବିଷ୍କାର କରିବା ଉଚିତ । 'ତୁମେ ମୁକ୍ତିର ସେହି ଆଦର୍ଶକୁ ଯେପରି କଳନା କରୁଛ, ତାହା ଠିକ୍ କିନ୍ତୁ ଯେହେତୁ ତୁମେ ତାକୁ ତୁମ ବାହାରେ ଉପସ୍ଥାପିତ କରୁଛ, ତାହା ହିଁ ତୁମର ଭୁଲ । ତୁମେ ତାହାକୁ ଅଧିକ ଭାବରେ ନିଜ ସମୀପକୁ ଆଣ ଯେପର୍ଯ୍ୟନ୍ତ ତୁମେ ପାଇ ନାହିଁ ଯେ ତାହା ସବୁବେଳେ ତୁମ ଭିତରେ ରହିଛି । ତାହା ତୁମ ନିଜର ସ୍ୱରୂପ । ସେହି ମୁକ୍ତି ହିଁ ତୁମର ପ୍ରବୃତ୍ତି ଏବଂ ମାୟା ତୁମକୁ କେବେହେଲେ ବାନ୍ଧି ପାରିବ ନାହିଁ ।' ସ୍ୱାମୀଜୀଙ୍କର ଏହି ପ୍ରକାର ଆଧ୍ୟାତ୍ମିକ ମୁକ୍ତିର ବିଚାରରୁ ଜଣାଯାଏ ଯେ ଏହା ସମାଜ ଦ୍ୱାରା ନିର୍ଣ୍ଣୟ ଉପାୟ ନୁହେଁ ବରଂ ବ୍ୟକ୍ତିର ଅନ୍ତର ମଧ୍ୟରେ ସଂରକ୍ଷିତ । ସମ୍ପୂର୍ଣ୍ଣ ମୁକ୍ତି ହେଉଛି ଜୀବର ପ୍ରକୃତି । ଏହା ମନୁଷ୍ୟଠାରୁ ବିଚ୍ଛିନ୍ନ ନୁହେଁ ।

ରାଜନୈତିକ ଦର୍ଶନରେ ମନୁଷ୍ୟକୁ କେବଳ ମାତ୍ର ଜଣେ ସାମାଜିକ ଏକକ ଭାବେ ଗ୍ରହଣ କରାଯାଇଛି । ବ୍ୟକ୍ତିର ବିକାଶ ଓ ସ୍ୱାଧୀନତା ବା ମୁକ୍ତି ସମାଜ ଦ୍ୱାରା ସ୍ଥିରୀକୃତ ହେବ । କିନ୍ତୁ ମଣିଷ





ଯେ ଜଣେ ଏହାଠାରୁ ଅଧିକ କିଛି ଯାହା ରାଜନୈତିକ ଓ ସାମାଜିକ ଚିନ୍ତାଶୀଳ ବ୍ୟକ୍ତିମାନେ ଭାବନ୍ତି ନାହିଁ । ବାସ୍ତବ ଭାବେ ପ୍ରତ୍ୟେକ ମନୁଷ୍ୟ ଆଧାତ୍ମିକ ବ୍ୟକ୍ତିର ସାମଗ୍ରିକ ଜୀବନର ଏକ କ୍ଷୁଦ୍ର ଅଂଶ ହେଉଛି ତା'ର ସାମାଜିକ ଜୀବନ । ବ୍ୟକ୍ତି ଜୀବନରେ ଅଧିକ କିଛି ପାଇବାକୁ ଆଗ୍ରହ ରଖେ ଯାହାକୁ ସମାଜ ଦେଇପାରିବା ସମ୍ଭବ ନୁହେଁ । ମନୁଷ୍ୟ ଜୀବନର ପୂର୍ଣ୍ଣତା ମିଳିବ ଯଦି ମୁକ୍ତିର ସମ୍ପୂର୍ଣ୍ଣ ଆଦର୍ଶକୁ ମନୁଷ୍ୟ ପାଇବାକୁ ଚେଷ୍ଟା କରେ । ବାସ୍ତବରେ ଦେଖିବାକୁ ଗଲେ ସମାଜ ସେତେବେଳେ ସଭ୍ୟ ହୁଏ ଯେତେବେଳେ ଏହା ମନୁଷ୍ୟ ମଧ୍ୟରେ ଦେବତ୍ୱର ବିକାଶକୁ ଉତ୍ସାହିତ କରେ ଏବଂ ବ୍ୟକ୍ତିଗତ ମୁକ୍ତିର ପରିଧିକୁ ବ୍ୟାପକ କରେ । ତେଣୁ ମନୁଷ୍ୟର ଆପେକ୍ଷିକ ମୁକ୍ତି ଅସଂପୂର୍ଣ୍ଣ ରହେ ଯେପର୍ଯ୍ୟନ୍ତ ବ୍ୟକ୍ତିର ଆଧାତ୍ମିକ ମୁକ୍ତି ନ ହୋଇଛି ।

ସ୍ୱାମୀ ବିବେକାନନ୍ଦଙ୍କର ମୁକ୍ତି ମନୁଷ୍ୟର ଶାରୀରିକ ଆବଶ୍ୟକତା କେବଳ ନୁହେଁ ବରଂ ଜୀବନର ଆଧାତ୍ମିକ ଉପାଦାନ । ମୁକ୍ତି ବଞ୍ଚିବା ପାଇଁ ସଂଗ୍ରାମରୁ ଉତ୍ପନ୍ନ ନୁହେଁ ବରଂ ଏହା ଏକକୀତ୍ୱ ଜୀବନ ପାଇଁ ଆଧାତ୍ମିକ ଅନୁସନ୍ଧାନ । ଆଧାତ୍ମିକ ମୁକ୍ତି ସାମାଜିକ ମୁକ୍ତିର ବାଧକ ନୁହେଁ ବୋଲି ତାଙ୍କର ମତ । ସ୍ୱାମୀଜୀଙ୍କ ମତରେ ବ୍ୟକ୍ତିର ଆପେକ୍ଷିକ ସ୍ୱାଧୀନତା ମଧ୍ୟ ସଂପୂର୍ଣ୍ଣ ମୁକ୍ତି ପରି ଅତି ପବିତ୍ର । ପ୍ରତ୍ୟେକ ମନୁଷ୍ୟ କାୟ, ମନ ଓ ବାକ୍ୟରେ ମୁକ୍ତ ହେବାକୁ ଆହରଣ କରିବା ଉଚିତ । ତେଣୁ ସେ ବ୍ୟକ୍ତିଗତ ମୁକ୍ତି ସଂପର୍କରେ ଉଲ୍ଲେଖ କରି କହିଛନ୍ତି, 'ମୁକ୍ତିର ଅର୍ଥ ନୁହେଁ ଯେ ସମ୍ପତ୍ତି ଇତ୍ୟାଦି ଆତ୍ମସାତ କରିବା ମାର୍ଗରେ ବାଧା ସୃଷ୍ଟି କରିବାର ଅନୁପସ୍ଥିତି କିନ୍ତୁ ଏହା ଆମର ପ୍ରକୃତ ଅଧିକାର ଯେ ଆମେ ଆମର ଶରୀର, ବୁଦ୍ଧି ଏବଂ ସମ୍ପତ୍ତିକୁ ଆମର ଇଚ୍ଛାନୁଯାୟୀ ବ୍ୟବହାର କରିବା, ଅନ୍ୟ କାହା ପ୍ରତି କ୍ଷତି ନ ପହଞ୍ଚାଇ । ମୁକ୍ତ ହୁଅ, ମୁକ୍ତ ଶରୀର, ମୁକ୍ତ ମନ, ମୁକ୍ତ ଆତ୍ମା । ତାହା ହିଁ ମୁଁ ଚାହେଁ । ମୁଁ ହୁଏତ ମନ୍ଦ କାର୍ଯ୍ୟ ମୁକ୍ତ ଭାବରେ କରିପାରେ ବରଂ ଦାସତ୍ୱରେ ରହି ଭଲ କାର୍ଯ୍ୟ କରିବା ପରିବର୍ତ୍ତେ ।' ସ୍ୱାମୀଜୀ ବିଶ୍ୱାସ କରୁଥିଲେ ଯେ ବ୍ୟକ୍ତି ନିଜକୁ ମୁକ୍ତ ଭାବରେ କାର୍ଯ୍ୟକରି ସ୍ୱୟଂ ସଂପୂର୍ଣ୍ଣ କରିପାରେ ଏବଂ ଏକ ପୂର୍ଣ୍ଣାଙ୍ଗ ବ୍ୟକ୍ତି ସମାଜକୁ ମଧ୍ୟ ପୂର୍ଣ୍ଣାଙ୍ଗ କରିପାରେ । ସମାଜର ଶକ୍ତି ଓ ଶୌର୍ଯ୍ୟ ବ୍ୟକ୍ତିର ପ୍ରଚେଷ୍ଟା ଦ୍ୱାରା ହିଁ ସମ୍ଭବ । ତେଣୁ ସ୍ୱାମୀଜୀ ବ୍ୟକ୍ତିର ସ୍ୱାଧୀନତା ଓ ବିକାଶ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତେଣୁ ବ୍ୟକ୍ତି ସ୍ୱାଧୀନତା ଉପରେ କୌଣସି ଅଙ୍କୁଶ ରହୁ, ତାହା ସେ ଚାହିଁ ନାହାନ୍ତି । କାରଣ ବାହ୍ୟ ଚାପ ଦ୍ୱାରା ବ୍ୟକ୍ତିର ବିକାଶ ସମ୍ଭବ ନୁହେଁ । ସ୍ୱାମୀଜୀ କହିଛନ୍ତି ଯେ ଯଦି ତୁମେ ଅନ୍ୟର ବିକାଶରେ ସାହାଯ୍ୟ କରୁଥାଅ, ନିର୍ଦ୍ଦେଶ ଦେଉଁଥାଅ, ପଥ ପ୍ରଦର୍ଶକ ହେଉଥାଅ, ତାହା କେବେହେଲେ କୋଟି କୋଟି ଲୋକଙ୍କର ବିକାଶରେ ସାହାଯ୍ୟ କରିବ ନାହିଁ । ପ୍ରତ୍ୟେକ ମଣିଷକୁ ନିଜର ମୁକ୍ତିର ଆଲୋକ ମିଳିବା ଆବଶ୍ୟକ । ତାହା ହିଁ ବିକାଶ ପାଇଁ ଏକ ମାତ୍ର ଅବସ୍ଥା । ମନୁଷ୍ୟକୁ ମୁକ୍ତି ଦିଗରେ ଅଗ୍ରସର ହେବା ପାଇଁ ସହଯୋଗ କରାଯିବା ଉଚିତ କିନ୍ତୁ ତା'ଉପରେ ପ୍ରଭୁତ୍ୱ ଜାହିର କରିବା ଠିକ୍ ନୁହେଁ । ସମାଜ ବ୍ୟକ୍ତି ସ୍ୱାଧୀନତାକୁ ସଂକୁଚିତ କରି ଦେବା ଠିକ୍ ହେବ ନାହିଁ । ବ୍ୟକ୍ତି ସ୍ୱାଧୀନତା ଥିବା ହେତୁ ସମାଜରେ ବ୍ୟକ୍ତିର ଅଧିକାର ସ୍ଥିରୀକୃତ ହୁଏ । ସମାଜରେ ସମାନ ଅଧିକାର ନରହିଲେ ସ୍ୱାଧୀନତା ବା ମୁକ୍ତିର କୌଣସି ଅର୍ଥ ନଥାଏ । ଯଦି ସମସ୍ତଙ୍କୁ ସମାନ ଅଧିକାର ଓ ସୁଯୋଗ ନମିଳେ ତେବେ ସେମାନେ ନିଜର ବିକାଶକୁ ପରିପ୍ରକାଶ କରିପାରିବେ ନାହିଁ । ସମାଜର କୌଣସି ଗୋଷ୍ଠୀ ସ୍ୱାଧୀନତା ଉପରେ ନିଜର ଏକଚାଟିଆ ଅଧିକାର ଜାହିର କରିବା ଠିକ୍ ନୁହେଁ । କେତେକ ମୁଷ୍ଟିମେୟ ସୁବିଧା ଉପଭୋଗ କରୁଥିବା ଗୋଷ୍ଠୀ ସମାଜରେ ଅସମାନତା ଓ ଅନ୍ୟାୟ ବୃଦ୍ଧି କରିବାରେ ସାହାଯ୍ୟ କରିବାକୁ ସ୍ୱାମୀଜୀ ସଂପୂର୍ଣ୍ଣଭାବେ ନାପସନ୍ଦ କରିଛନ୍ତି । ସମାଜ ସହିତ, ସଂପର୍କ ସହିତ ବ୍ୟକ୍ତି ସ୍ୱାଧୀନତାକୁ ବିଚାର କରିବାକୁ ସ୍ୱାମୀଜୀ ମତ ଦେଇଛନ୍ତି ।

ସମାଜ ଓ ବ୍ୟକ୍ତି ସଂପର୍କରେ ମଧ୍ୟ ସେ ଗଭୀର ଅନୁଧ୍ୟାନ କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତି ହେଉଛି ବ୍ୟଷ୍ଟି ଓ ବ୍ୟକ୍ତି ବିଶେଷ ହେଉଛନ୍ତି ସମଷ୍ଟି । ବ୍ୟଷ୍ଟିର ବ୍ୟକ୍ତିଗତ ସ୍ୱାଧୀନତା ରହିଛି । ତେବେ ବ୍ୟଷ୍ଟି କ'ଣ ସମଷ୍ଟି ସମ୍ମୁଖରେ ନିଜର ସମସ୍ତ ସ୍ୱାଧୀନତାକୁ ଜଳାଞ୍ଜଳି ଦେବ ଏହା ମଧ୍ୟ ପ୍ରତ୍ୟେକ ସମାଜରେ ରହିଛି । ସ୍ୱାମୀଜୀଙ୍କ ମତରେ ସମାଜ ହେଉଛି ଏକ ସାମାଜିକ ଏଜେଣ୍ଟ ଏବଂ ଏହା ବ୍ୟକ୍ତିର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବା ଠିକ୍ ନୁହେଁ । ବ୍ୟକ୍ତି ପାଇଁ ସମାଜ, ସମାଜ ପାଇଁ ବ୍ୟକ୍ତି ନୁହେଁ, ଏହା ହେଉଛି ତାଙ୍କର ବିଶ୍ୱାସ ।

ବିବେକାନନ୍ଦଙ୍କର ବ୍ୟକ୍ତି ଓ ସମାଜର ବିଚାରର ମୂଳଉତ୍ସ ଭାରତୀୟ ବେଦାନ୍ତ ଦର୍ଶନ । କାରଣ ସେ ମନୁଷ୍ୟର ଦେବତ୍ୱ ଉପରେ ବିଶ୍ୱାସ କରିଛନ୍ତି । ପ୍ରତ୍ୟେକ ମନୁଷ୍ୟ ଭିତରେ ଦେବତ୍ୱ ବିଦ୍ୟମାନ । ଏଣୁ ସ୍ୱାଧୀନତା ଦେବତ୍ୱ । ସ୍ୱାମୀଜୀ ବ୍ୟକ୍ତିକୁ ପ୍ରାଥମିକତା ଦେବାବେଳେ ସମାଜକୁ ଦ୍ୱିତୀୟ ସ୍ଥାନରେ ରଖିଛନ୍ତି । ତାଙ୍କ ନିକଟରେ ସମାଜ ଗୋଟିଏ ସାମାଜିକ ଅନୁଷ୍ଠାନ, ଏହା ରାଜନୈତିକ ଅନୁଷ୍ଠାନ ନୁହେଁ । ସ୍ୱାମୀଜୀ ବ୍ୟକ୍ତିଗତ ସ୍ୱାଧୀନତାକୁ ସମାଜଠାରୁ ଊର୍ଦ୍ଧ୍ୱରେ ରଖିଥିଲେ ମଧ୍ୟ ବ୍ୟକ୍ତିଗତ ସ୍ୱାର୍ଥକୁ ସମାଜ ଉପରେ ରଖି ନାହାନ୍ତି । ବ୍ୟକ୍ତିଗତ ଜୀବନର ସୁଖସୁବିଧା ସମଷ୍ଟିଗତ ଜୀବନର ସୁଖସୁବିଧାର ଅଂଶ ହୋଇଥିବା ହେତୁ ବ୍ୟକ୍ତି ସମାଜର ସେବା କରି, ତା' ସହିତ ଏକ ହୋଇଯିବା ଉଚିତ ବୋଲି ତାଙ୍କର ମତ । କାରଣ ବ୍ୟକ୍ତିର ଜୀବନ ସମାଜଠାରୁ ଅଭିନ୍ନ ନୁହେଁ । ମନୁଷ୍ୟ ବ୍ୟକ୍ତି ହେବା ସହିତ ମଧ୍ୟ ସାର୍ବଜନୀନ । ଏଣୁ ବ୍ୟକ୍ତି ନିଜର ପ୍ରବୃତ୍ତିକୁ ଜାଣିପାରିଲେ ଜାତୀୟ ଓ ବିଶ୍ୱ ସଂସାରକୁ ମଧ୍ୟ ଜାଣିପାରିବ ।

ଗଜପତିନଗର
ଭୁବନେଶ୍ୱର-୭୫୧୦୦୫

# ଫକୀର ମୋହନଙ୍କୁ ସାରସ୍ୱତ ଶ୍ରଦ୍ଧାଞ୍ଜଳି

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ମହାଶୟ,

ଓଡ଼ିଆ ସାହିତ୍ୟ ଜଗତର ସଂକ୍ରାନ୍ତି ପୁରୁଷ (ଜନ୍ମ ୧୮୪୩ ମସିହା ମକର ସଂକ୍ରାନ୍ତି, ଶୁକ୍ରବାର ଓ ମୃତ୍ୟୁ ୧୯୧୮ ମସିହା ମିଥୁନ ସଂକ୍ରାନ୍ତି, ଶୁକ୍ରବାର) ଫକୀର ମୋହନ ସେନାପତିଙ୍କୁ ଆମର ଭକ୍ତିପୂତ ପ୍ରଣାମ । ଆପଣ ଥିଲେ ଦରପାଠୁଆ । ଆପଣଙ୍କ ପଛରେ ନଥିଲା କୌଣସି ବିଶ୍ୱବିଦ୍ୟାଳୟର ଡିଗ୍ରୀ ବା ଉପାଧି । କିନ୍ତୁ ଆଜି ଆପଣଙ୍କ ନାମରେ ନାମିତ ଫକୀର ମୋହନ ବିଶ୍ୱବିଦ୍ୟାଳୟ ଏକ ଜାତୀୟ ଅନୁଷ୍ଠାନ । ଆପଣଙ୍କ ସାହିତ୍ୟ ଉପରେ ଗବେଷଣା କରି ଛାତ୍ରମାନେ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଡିଗ୍ରୀ ହାସଲ କରିଛନ୍ତି । ସମସାମୟିକ ବ୍ୟକ୍ତି ଯଥା ଉତ୍କଳଗୌରବ ମଧୁସୂଦନ, ଗୌରୀଶଙ୍କର ରାୟ, ରାଧାନାଥ ରାୟ ଅଥବା ଭକ୍ତକବି ମଧୁସୂଦନ ରାଓଙ୍କ ପରି ଆପଣ ଆନୁଷ୍ଠାନିକ ଉଚ୍ଚଶିକ୍ଷା ଲାଭରୁ ହୋଇଥିଲେ ବଞ୍ଚିତ । ସ୍କୁଲରେ ପ୍ରଥମ ବର୍ଷ ଶେଷରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲାପରେ ମାସକୁ ଚାରି ଅଣା ବେତନ ଦେଇ ନପାରିବାରୁ ଆନୁଷ୍ଠାନିକ ଭାବେ ବିଦ୍ୟା ଶିକ୍ଷାର ପରିସମାପ୍ତି । ବ୍ରିଟିଶ୍ ସରକାରଙ୍କ ଦ୍ୱାରା କୌଣସି ସି.ଆଇ. ଅଥବା ରାୟ ବାହାଦୂର ଉପାଧିରେ ଆପଣ ଭୂଷିତ ହୋଇନଥିଲେ । କେବଳ ଯାହା ବାମଣ୍ଡା ରାଜ ଦରବାରର ପୃଷ୍ଠପୋଷକତାରେ ସୁରଙ୍ଗିଣୀ ସାରସ୍ୱତ ସମିତି ଦ୍ୱାରା ସମ୍ମାନିତ ହୋଇ ଆପଣ ପାଇଥିଲେ ସରସ୍ୱତୀ ଉପାଧି ଏବଂ ମଧ୍ୟ ପାଇଥିଲେ ଜନ୍ ବିମ୍ସଙ୍କ ପରି ପଣ୍ଡିତଙ୍କ ସାନ୍ନିଧ୍ୟ ।

ଆପଣ ବିଶ୍ୱକବି ନୁହଁନ୍ତି ସତ, କିନ୍ତୁ ସତ୍ୟର କବି-ବ୍ୟାସକବି । ଆଧୁନିକ ଓଡ଼ିଆ ଗଳ୍ପ ଓ ଉପନ୍ୟାସର ସ୍ରଷ୍ଟା ଭାବରେ ଆପଣ ନିଶ୍ଚିନ୍ତ ଭାବେ ଓଡ଼ିଶା ସାହିତ୍ୟ କ୍ଷେତ୍ରରେ ଏକ ଅପ୍ରତିଦ୍ୱନ୍ଦୀ ସମ୍ରାଟ । ଯଥାର୍ଥରେ ଓଡ଼ିଶାର ଜାତୀୟ କଥାକାର ।

'ଘୋର ତିମିରିତ ଉଆଁସୀ ଆକାଶେ
ଜାଳି ଚନ୍ଦ୍ରମା ବତୀ
ବାସ୍ତବେ ତୁମେ ବୋଲାଇଛ ଆଜି
ଏ ଜାତିର ସେନାପତି ।'



ଏହାଥିଲା ଶତାବ୍ଦୀ ପୁରୁଷ ଫକୀର ମୋହନ ସେନାପତିଙ୍କୁ ନାରୀକବି ବିଦ୍ୟୁତପ୍ରଭା ଦେବୀଙ୍କ ସାରସ୍ୱତ ଶ୍ରଦ୍ଧାଞ୍ଜଳି । ଆପଣ ହିଁ ହେଉଛନ୍ତି ଓଡ଼ିଆ ଭାଷା ଓ ସାହିତ୍ୟର ଯଥାର୍ଥ ସେନାପତି ।

ଏକଥା ସର୍ବଜନବିଦିତ ଯେ, ଆପଣ ହିଁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଐତିହାସିକ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ ଅଣ୍ଟାଭିଡ଼ି ବାହାରିଥିଲେ । ଏଥିପାଇଁ ଆପଣଙ୍କୁ ପ୍ରତିପକ୍ଷ ବଙ୍ଗାଳୀମାନେ 'ଶାଲା ରିଂ ଲିଡର' ବୋଲି ଡାକୁଥିଲେ । କାରଣ ସେମାନେ ଆପଣଙ୍କ ନାଁ ଧରି ଡାକିବାକୁ କୁଣ୍ଠାବୋଧ କରୁଥିଲେ ।

ମାତ୍ର ଆପଣ ଥିଲେ ଏକନିଷ୍ଠ କର୍ମୀ । ଯେ ଏକନିଷ୍ଠ କର୍ମୀ, ସେ ଜୀବନ ଯନ୍ତ୍ରଣାରେ ଲକ୍ଷ୍ୟଚ୍ୟୁତ ହୁଏ ନାହିଁ । ଦୁଃଖ ଓ ଗ୍ଲାନି ମଧ୍ୟରେ ସେ ଗାଇ ଚାଲେ ଜୀବନର ଗୀତ । ସେଇଥିରେ ହିଁ ତା'ର ଆନନ୍ଦ, ଜୀବନ ତଥା ପ୍ରଶଂସା । କେବଳ କବି ଯଶଃପ୍ରାର୍ଥୀ ହୋଇ ଆପଣ ଲେଖନୀ ଧାରଣ କରିନଥିଲେ । ସାହିତ୍ୟ ସେବା ଆପଣଙ୍କ ପାଇଁ ଥିଲା ଏକ ମିଶନ ।





ଆପଣଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ର ଗଳ୍ପ ନଥିଲା କହିଲେ ଚଳେ । ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀ, ପୌରାଣିକ ଉପାଖ୍ୟାନ ଓ ରାଜାରାଣୀ କାହାଣୀ ଇତ୍ୟାଦି କ୍ଷୁଦ୍ରଗଳ୍ପର ସ୍ଥାନ ଗ୍ରହଣ କରିଥିଲା । ଆପଣ ସର୍ବପ୍ରଥମେ କୋଡ଼ିଏଟି କ୍ଷୁଦ୍ରଗଳ୍ପ ରଚନାକରି ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ ଭାବେ ବିବେଚିତ ହେଲେ । ଆପଣ ପ୍ରଥମ କରି ଏ ଜାତିକୁ ହୃଦୟ ଖୋଲା ହସ ଶିଖାଇଲେ । କେବଳ ଏଇଥିପାଇଁ ନୁହେଁ ଫକୀର ମୋହନୀୟ (ଆପଣଙ୍କ) ପ୍ରତିଭାର ମୁଖ୍ୟ ଦିଗ ହେଲା କଥାଶିଳ୍ପର ଉପାଦାନ ଆହରଣ । ଆପଣ ଗଳ୍ପ ବା ଉପନ୍ୟାସ ପାଇଁ ଚରିତ୍ରଟିଏ ସାଉଁଟି ଆଣିଛନ୍ତି ରାଜପଥର ଅତି ନଗଣ୍ୟ ଏବଂ ପତିତ ଜନଜୀବନରୁ । ସମଗ୍ର ଓଡ଼ିଆ ସାହିତ୍ୟରେ ଆପଣଙ୍କ କୃତିର ଏହି ଦିଗଟି ନୂତନତାର ଦିଗ୍‌ଦର୍ଶନ ଯେ କରାଇଛି - ଏଥିରେ ସନ୍ଦେହର ଅବକାଶ ନାହିଁ ।

ଆପଣ କେବଳ ଓଡ଼ିଆ ଗଳ୍ପ- ଉପନ୍ୟାସର ଜନକ ନୁହନ୍ତି । ଆପଣ ହିଁ ପ୍ରଥମେ ଓଡ଼ିଆରେ ଆତ୍ମଜୀବନୀ ଲେଖିଛନ୍ତି । ତେଣୁ ଆପଣ ହେଉଛନ୍ତି ଓଡ଼ିଆ ଆତ୍ମଚରିତର ଯଥାର୍ଥ ଜନକ । ଆପଣ ଲେଖିଥିବା ଆତ୍ମଜୀବନୀ ଓଡ଼ିଆରେ ପ୍ରଥମ ହେଲେ ହେଁ, ଉଭୟ ଭାଷା ଓ ବର୍ଣ୍ଣନା ଦୃଷ୍ଟିରୁ ଏହା ବର୍ତ୍ତମାନ ସୁଦ୍ଧା ଅନତିକ୍ରମଣୀୟ ହୋଇ ରହିଛି କହିଲେ କିଛି ଭୁଲ୍ ହେବ ନାହିଁ ।

ପରିଣତ ବୟସରେ ଅର୍ଥାତ୍ ପ୍ରାୟ ୫୭ ବର୍ଷ ବୟସରେ ଆପଣ ଗଳ୍ପ - ଉପନ୍ୟାସ ରଚନାରେ ବ୍ରତୀ ହେଲେ । ବ୍ୟକ୍ତିଗତ ଜୀବନରେ ଆପଣ ଏକ ଶିକ୍ଷକ ଓ ପ୍ରଶାସକ (ବିଭିନ୍ନ ରାଜଦରବାରରେ ଦେବାନ୍) ଥିଲେ । ତେଣୁ ମାନବ ଚରିତ୍ର ସମ୍ପର୍କରେ ଆପଣଙ୍କର ବିପୁଳ ଅଭିଜ୍ଞତା ହିଁ କ୍ଷୁଦ୍ରଗଳ୍ପଗୁଡ଼ିକରେ ପ୍ରତିଫଳିତ ହୋଇ ଏହାକୁ ରସୋତୀର୍ଣ୍ଣ କରିପାରିଛି । ଚରିତ୍ର ଆହରଣର କୌଶଳ, ବାସ୍ତବ ଅନୁଭୂତିମୂଳକ ଅନ୍ତଃଦୃଷ୍ଟିର ବ୍ୟବହାର, ହାସ୍ୟରସ୍ୟର ଅବତାରଣା, ଆଦର୍ଶବାଦ, ସମାଜରେ ସଂସ୍କାର ଆନୟନର ପ୍ରଚେଷ୍ଟା ଓ ଚରିତ୍ରମାନଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦୃଷ୍ଟିରୁ ଆପଣଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଏଥିରେ ସଂକଳିତ 'ରେବତୀ', 'ପେଟେଣ୍ଟ ମେଡ଼ିସିନ', 'ରାଣ୍ଡିପୁଅ ଅନନ୍ତା' ଭଳି ଗଳ୍ପ ଭାରତୀୟ ସାହିତ୍ୟରେ ମଧ୍ୟ ଦୁର୍ଲଭ । 'ସଭ୍ୟ ଜମିଦାର', 'ବୀରେଇ ବିଶାଳ', 'ଅଧର୍ମବିତ୍ତ' ଓ 'ଡାକମୁନ୍‌ସି' ପ୍ରଭୃତି କେବଳ ରସୋତୀର୍ଣ୍ଣ ନୁହନ୍ତି, ସମୟ ଓ ସମାଜର ପ୍ରଚଣ୍ଡ ପ୍ରତିଧ୍ୱନି ।

ପୁତ୍ର ମୋହିନୀ ମୋହନଙ୍କ ବ୍ୟବହାରରେ ଆପଣ ସନ୍ତୁଷ୍ଟ ନଥିଲେ । ଘର କଥା କାହା ଆଗରେ ବା ପ୍ରକାଶ କରିବେ ! କଥାରେ ଅଛି, 'ଅଯାଗା ଘା ଦେଖି ହୁଏ ନାହିଁ କି ଦେଖାଇ ହୁଏ ନାହିଁ । କେବଳ ଯାହା ମନ ସନ୍ତୁଳିତ ହେବା କଥା । ଏହାର ପରିପ୍ରକାଶ ଘଟିଛି ବୋଧହୁଏ 'ଡାକମୁନ୍‌ସି' ଗଳ୍ପରେ । ପୁତ୍ର ଗୋପାଳର ପିତା ହରି ସିଂହଙ୍କ ପ୍ରତି ଦୁର୍ବ୍ୟବହାର ଏବଂ ହରି ସିଂହଙ୍କ ଅସହାୟତା ସହ ଆପଣ ସତେ ଯେପରି ନିଜ ଜୀବନର ଅସହାୟତାକୁ ପରଖି ନେଇଛନ୍ତି !

କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ରଚନା କ୍ଷେତ୍ରରେ ଆପଣଙ୍କ ପ୍ରତିଭା ଅନନ୍ୟ ସାଧାରଣ । ଆପଣଙ୍କ ସାହିତ୍ୟ କୃତିଦ୍ୱାରା ଏ ଯୁଗର ପ୍ରତିଥଯଶା ଗାଳ୍ପିକ ସୁରେନ୍ଦ୍ର ମହାନ୍ତି ଓ ମନୋଜ ଦାସଙ୍କଠାରୁ ଆରମ୍ଭ କରି ଛୋଟ ବଡ଼ ବହୁ କଥାକାର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଅନୁପ୍ରାଣିତ ।

ଆପଣ ଯେ କେବଳ ଗାଳ୍ପିକ ବା ଉପନ୍ୟାସିକ ଭାବେ ସର୍ବଜନାଦୃତ ତାହା ନୁହେଁ, ଆପଣ ହେଉଛନ୍ତି ସତ୍ୟର କବି ବ୍ୟାସକବି । ପତ୍ନୀ କୃଷ୍ଣ କୁମାରୀଙ୍କ ପ୍ରେରଣାରେ ଆପଣ ରାମାୟଣ, ମହାଭାରତ, ଉପନିଷଦ ଆଦି ଅନୁବାଦ କରିବା ସହ 'ବୌଦ୍ଧାବତାର' କାବ୍ୟ ତଥା ଅନେକ ଛୋଟବଡ଼ କବିତା ମଧ୍ୟ ରଚନା କରିଛନ୍ତି । ଆପଣଙ୍କ କାବ୍ୟ କବିତାର ବିଶେଷତ୍ୱ ହେଉଛି - ଏଥିରେ ଥିବା ଦାର୍ଶନିକ ଚିନ୍ତାଧାରା, ଈଶ୍ୱର ବିଶ୍ୱାସ, ସାମାଜିକ କୁସଂସ୍କାର ବିରୁଦ୍ଧରେ ଥିବା ସ୍ପଷ୍ଟ ନିର୍ଘୋଷ, ଜାତୀୟତାବୋଧ, ଐତିହାସିକତା, ପୌରାଣିକତା, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ବ୍ୟଙ୍ଗ, ବିଦ୍ରୂପ ତଥା ହାସ୍ୟରସର ଅପୂର୍ବ ସମାବେଶ । ଗୋଟିଏ ଉଦାହରଣ ଦେଲେ ବୋଧହୁଏ ଯଥେଷ୍ଟ ହେବ । 'ମୁଁ ହାଟ ବାହୁଡ଼ା' କବିତାରେ ତାସର ଘର ପରି ଭୁଷୁଡ଼ି ଯାଉଥିବା ଆମ ସମାଜର ପ୍ରତ୍ୟେକ ସ୍ତମ୍ଭ ପ୍ରତି ଆପଣ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ବିଚାରକ, ଓକିଲ, ପ୍ରଶାସକ, କିରାଣୀ - କେହି ବାଦ ପଡ଼ି ନାହାନ୍ତି । ଆପଣଙ୍କ ସିଦ୍ଧାନ୍ତ ଏତେ ନିର୍ଭୁଲ ଯେ ଶହେ ବର୍ଷ ପରେ ମଧ୍ୟ ଦେଖି ଚିହ୍ନାଇ ଯାଇଥିବା ସମସ୍ୟାଗୁଡ଼ିକ ଠିକ୍ ସେହିପରି ଜୀବନ୍ତ ରହିଛି ।

ଅତୀତକୁ ଦୃଷ୍ଟି ଫେରାଇଲେ ମନେହୁଏ, ଆପଣ ହେଉଛନ୍ତି ଏକ ଦୂରଦ୍ରଷ୍ଟା ସମାଜ ସଂସ୍କାରକ । ନାନା ଝଡ଼ଝଞ୍ଜା ଭିତରେ ଗତିକରି ସୁଦ୍ଧା ଆପଣ ସାଲିସ୍ ବିହୀନ ସଂଗ୍ରାମ କରିଯାଇଛନ୍ତି । ଆଜି ମୃତ୍ୟୁର ୮୫ ବର୍ଷ ପରେ ମଧ୍ୟ କାଳର କଷଟି ପଥରରେ ଆପଣଙ୍କ ସୃଷ୍ଟି ଶୁଦ୍ଧ ସୁବର୍ଣ୍ଣର ଦୀପ୍ତି ହାସଲ କରିଛି । ଆପଣଙ୍କ ବିଷୟରେ ଯେତେ ଲେଖିଲେ ମଧ୍ୟ ସରିବ ନାହିଁ । ଆପଣ ଛାଡ଼ି ଯାଇଥିବା ଗଳ୍ପ, ଉପନ୍ୟାସ ତଥା କବିତାକୁ  ପାଠ କଲେ ପାଠକ ସ୍ତମ୍ଭୀଭୂତ ହୋଇ ଅନାଇ ରହେ । ଆପଣଙ୍କ ଲେଖନୀରୁ ବାଦ୍ ପଡ଼ିନାହିଁ ସମକାଳୀନ ଜୀବନଧାରାର ବହୁ ତ୍ରୁଟି ବିଚ୍ୟୁତି । ସମାଲୋଚିତ ହୋଇଛନ୍ତି ରାମଚନ୍ଦ୍ର ମଙ୍ଗରାଜଙ୍କ ପରି ବିବେକହୀନ ଜମିଦାର ଗୋଷ୍ଠୀ, ନାଜର ନଟବର ଦାସ ପରି ପରସ୍ୱାପ ହରଣକାରୀ ଓ ଚନ୍ଦ୍ରମଣି ବାବୁଙ୍କ ପରି ମଦ୍ୟପ ତଥା ଲମ୍ପଟ ଯୁବକ । ଆଜି ମଧ୍ୟ ସମାଜରେ ଏଭଳି ଚରିତ୍ରର ଅଭାବ ନାହିଁ । ଏମାନଙ୍କ ଯୋଗୁଁ କଳୁଷିତ ହେଉଛି ଆମ ସାମାଜିକ ଜୀବନ । ଏହି ପରିପ୍ରେକ୍ଷୀରେ ଆପଣଙ୍କଭଳି ଏକ ନିର୍ଭୀକ ବ୍ୟକ୍ତିତ୍ୱ ଓ ସମାଜର ତଥାକଥିତ ଦୁଷ୍ଟବ୍ରଣମାନଙ୍କୁ ସାବାଡ଼ କରିବା ପାଇଁ ଆପଣ ଚଳାଇଥିବା ଚାବୁକ୍‌ର ଯଥେଷ୍ଟ ପ୍ରୟୋଜନ ଅଛି ବୋଲି ମନେହୁଏ ।

ଜଣେ ସାଧାରଣ ପାଠକ ଆପଣଙ୍କ ଅସାଧାରଣ ସାହିତ୍ୟ ସାଧନା ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ରହୁଛି ।

'ଚୈତନ୍ୟ ଧାମ', ଶବର ସାହି
ଭୁବନେଶ୍ୱର-୭୫୧୦୦୬



# ଭକ୍ତକବି ମଧୁସୂଦନ ରାଓ

ସୁଶାନ୍ତ କୁମାର ସେନାପତି

**ସଂ**ସାରରେ ଜନ୍ମ ହେଲେ ମୃତ୍ୟୁ ଯେ ଅବଶ୍ୟମ୍ଭାବୀ ଏକଥାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ସମସ୍ତେ ଦିନେ ନା ଦିନେ ମହାକାଳର ଲେଲୀହାନ ଶିଖାରେ ଲୀନ ହୋଇଯିବେ ଏହା ଧ୍ରୁବ ସତ୍ୟ । କିନ୍ତୁ କେତେକ ଏ ଧରାଧାମରେ ଜନ୍ମ ନେଇ ଅଜ୍ଞାନ ଅନ୍ଧକାର ଭିତରେ ଜ୍ୟୋତିର୍ମୟ ଆଲୋକର ବର୍ତ୍ତିକା ଜଳାନ୍ତି, ଜୀବନର ସମସ୍ତ ବାଧାବିଘ୍ନ, ସୁଖ ଦୁଃଖ, ନିନ୍ଦା ପ୍ରଶଂସାକୁ ଭ୍ରୂକ୍ଷେପ ନକରି ପ୍ରତିଶ୍ରୁତିପୂର୍ଣ୍ଣ ଜୀବନର ସଂଧାନ ଦିଅନ୍ତି, ସେଇମାନେ ହିଁ କେବଳ ଅନିର୍ବାଣ ଦୀପଶିଖା ହୋଇ ରହିଯାଆନ୍ତି । ସେଇମାନଙ୍କର ଅମର କୀର୍ତ୍ତି ସ୍ୱର୍ଣ୍ଣାକ୍ଷରରେ କାଳ କାଳ ପାଇଁ ଲିପିବଦ୍ଧ ହୋଇ ରହିଯାଏ । ସେଇଭଳି ଜଣେ ଯଶସ୍ୱୀ ବ୍ୟକ୍ତି ହେଲେ ଭକ୍ତକବି ମଧୁସୂଦନ ।

୧୮୫୩ ମସିହା ଜାନୁଆରୀ ମାସ ୨୯ ତାରିଖ ସୋମବାର ଦିନ ପୁରୀ କୁଣ୍ଢେଇବେଣ୍ଟ ସାହିରେ ସେ ଜନ୍ମ ଗ୍ରହଣ କରିଥିଲେ । ସେଦିନ ବିଦ୍ୟାଦାତ୍ରୀ ମା' ସରସ୍ୱତୀଙ୍କର ପୂଜାର ଦିନ ଶ୍ରୀପଞ୍ଚମୀ । ମା' ବୀଣାପାଣିଙ୍କର ଆଶୀର୍ବାଦ ଲାଭ କରି ସେ ଏ ଧରାଧାମରେ ଜନ୍ମ ଗ୍ରହଣ କରିଥିବାରୁ ଅଜ୍ଞାନର ଅନ୍ଧକାରକୁ ଦୂରକରି ଜ୍ଞାନର ଆଲୋକ ବିକିରଣ କରିଯାଇଛନ୍ତି । ତାଙ୍କ ପିତାଙ୍କ ନାମ ଭାଗିରଥି ରାଓ ଓ ମାତାଙ୍କ ନାମ ଅମ୍ବିକା ବାଇ । ମଧୁସୂଦନଙ୍କ ଜନ୍ମବେଳେ ତାଙ୍କ ପିତା ଅଠର ନଳା ଫାଣ୍ଡିରେ ଜଣେ ପୋଲିସ୍ କର୍ମଚାରୀ ଥାଆନ୍ତି । ସେ ଜଣେ ସହୃଦୟ ଓ କର୍ତ୍ତବ୍ୟ ପରାୟଣ ବ୍ୟକ୍ତି ଅଟନ୍ତି । ମଧୁସୂଦନଙ୍କ ଜନ୍ମର ଅଢ଼େଇ ବର୍ଷ ପରେ ତାଙ୍କର ସାନ ଭାଇଟିଏ ଜନ୍ମ ହେଲା, ତା ନାଁ ଜଗନ୍ନାଥ । ଯେତେବେଳେ ଜଗନ୍ନାଥଙ୍କୁ ଅଢ଼େଇ ବର୍ଷ ଏବଂ ମଧୁଙ୍କୁ ପାଞ୍ଚବର୍ଷ ସେତେବେଳେ ମାତା ଅମ୍ବିକାବାଇ ତାଙ୍କର ତୃତୀୟ ସନ୍ତାନକୁ ଜନ୍ମଦେବାକୁ ଯାଇ ସନ୍ତାନଟି ସହ ସୂତିକା ଗୃହରେ ପ୍ରାଣତ୍ୟାଗ କଲେ ।

କଥାରେ ଅଛି ଦୁଃଖ ଯେତେବେଳେ ଆସେ ସେ ଏକାକୀ ଆସେ ନାହିଁ, ଆସେ ତାହାର ସାଙ୍ଗସାଥୀମାନଙ୍କୁ ଧରି । ଅମ୍ବିକା ବାଈଙ୍କ ମୃତ୍ୟୁର ଠିକ୍ ପରେ ପରେ ଅଠରନଳାରେ ଥିବା ପୋଲିସ୍ ଫାଣ୍ଡିଟି ଉଠିଗଲା । ମଧୁସୂଦନଙ୍କ ପିତା ଭାଗିରଥି ରାଓଙ୍କର ଗୋପଥାନାକୁ ସ୍ଥାନାନ୍ତର ହେଲା । ମାମୁଁଙ୍କ ପାଖରେ ରହିଲେ ଦୁଇଭାଇ ମଧୁସୂଦନ ଓ ଜଗନ୍ନାଥ । ଗୋପରେ ଥାଇ ଭାଗିରଥିଙ୍କ ମନ ସର୍ବଦା ଉଚ୍ଚାଟ ରହୁଥାଏ । ମାତ୍ର ତାଙ୍କ ପାଖରେ ଅନ୍ୟ କିଛି ଉପାୟ ନଥାଏ । ପ୍ରାୟ ବର୍ଷେ ପରେ ଦିନେ ରାତିରେ ସେ ସ୍ୱପ୍ନଟିଏ ଦେଖିଲେ । ସ୍ୱପ୍ନରେ ତାଙ୍କ ସ୍ତ୍ରୀ ତାଙ୍କୁ କହୁଛନ୍ତି ମୋର ପ୍ରାଣପ୍ରିୟ ସନ୍ତାନ ଦିଓଟିକି ତୁମ ହାତରେ ଦେଇ ଆସିଛି । ସେମାନଙ୍କର ଅଯତ୍ନ ହେଉଛି । ତୁମେ ଯଦି ପିଲା ଦୁହିଁଙ୍କୁ ପାଳି ନପାରିବ ତେବେ, ସାନଟିକୁ ମୁଁ ମୋ ପାଖକୁ ନେଇ ଆସିବି ।

ଏହି ସ୍ୱପ୍ନ ଦେଖିବାର ପରଦିନ ଭାଗିରଥି ଅତି ବ୍ୟଗ୍ର ଓ ବ୍ୟାକୁଳ ମନରେ ପୁରୀ ଯାଇ ସେଠାରୁ ଭାରୁଆ ସାହାଯ୍ୟରେ ଦୁଇ ଶିଶୁ ପୁତ୍ରଙ୍କୁ ଗୋପ ନେଇ ଆସିଲେ । ଗୋପରେ ମଧୁସୂଦନଙ୍କ ବାଲ୍ୟ ଶିକ୍ଷାର ଆରମ୍ଭ ହେଲା । ସେଠାରେ ଏକ ଚାଟଶାଳୀରେ ତାଙ୍କ ନାମ ଲେଖାଗଲା । ସେ ଭଲ ପାଠ ପଢ଼ିଲେ । ଚାଟଶାଳୀର ସମସ୍ତ ଚାଟଙ୍କୁ ଟପି ଗଲେ । ଏହାର ପ୍ରାୟ ବର୍ଷେ ପରେ ତାଙ୍କ ବାପାଙ୍କର ବଦଳି ହେଲା ଭୁବନେଶ୍ୱର ଥାନାକୁ । ବାପାଙ୍କର ବଦଳି ହେତୁ ମଧୁସୂଦନ ଭୁବନେଶ୍ୱର ମଧ ଭର୍ଣ୍ଣାକୁଲାର ସ୍କୁଲରେ ଇଂରେଜମାନଙ୍କ ପ୍ରବର୍ତ୍ତିତ ନୂତନ ଶିକ୍ଷା ପାଇବାର ସୁଯୋଗ ଲାଭ କଲେ । ସେତେବେଳେ ତାଙ୍କୁ ମାତ୍ର ୮ ବର୍ଷ ବୟସ । ନିଜର ପ୍ରଖର ଧୀ-ଶକ୍ତି ଯୋଗୁଁ ସେ ଶ୍ରେଣୀରେ ପ୍ରଥମ ହେଲେ । ଭଲ ପାଠ ପଢୁଥିଲେ ମଧ ତାଙ୍କର ଭବିଷ୍ୟତ ଶିକ୍ଷାର ସମ୍ଭାବନା ଖୁବ୍ କମ୍ ଥିଲା । କାରଣ ସେତେବେଳେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଏତେ ମାତ୍ରାରେ ନଥିଲା । ପୁଅକୁ ଅନ୍ୟଜାଗାରେ ରଖି ଉଚ୍ଚଶିକ୍ଷା ଦେବାର ସ୍ୱଚ୍ଛଳତା ଭାଗିରଥିଙ୍କର ନଥିଲା । କିନ୍ତୁ ଅଚାନକ ଏକ ବିଶେଷ ଧରଣର ସୁଯୋଗ ମଧୁସୂଦନଙ୍କ ପାଖରେ ଆସି ପହଞ୍ଚିଲା । ଦିନେ ବିଦ୍ୟାଳୟ ପରିଦର୍ଶନରେ ଆସିଥିବା ଉଡ୍ରୋ ସାହେବ ତାଙ୍କୁ କେତେକ ପ୍ରଶ୍ନ ପଚାରିଲେ । ମଧୁସୂଦନଙ୍କ ବିଚକ୍ଷଣତା ଓ ମେଧାଶକ୍ତିର ପ୍ରମାଣ ପାଇ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବା ପାଇଁ ତାଙ୍କର ସମସ୍ତ ବ୍ୟବସ୍ଥା କଲେ ।

ମଧୁ ଜଣେ ଅସାମାନ୍ୟ ଛାତ୍ର ଥିଲେ । ପ୍ରାୟ ପ୍ରତିବର୍ଷ ଶ୍ରେଣୀରେ ପ୍ରଥମ ହେଉଥିଲେ । ପୁରୀ ଜିଲ୍ଲାସ୍କୁଲରେ ଅନୁଷ୍ଠିତ ସମସ୍ତ ପ୍ରତିଯୋଗିତାର ସଠିକ୍ ଉତ୍ତର ଦେଇ ଲଗାତର ତିନିବର୍ଷ କାଳ ୧୦୦ ଟଙ୍କା ଲେଖାଏଁ ପୁରସ୍କାର ଲାଭ କରିଥିଲେ । ସେଥିପାଇଁ ମଧ ରେଢ଼୍ୱା ମହାରାଜ ତାଙ୍କୁ ରୌପ୍ୟ ପଦକ ଦେଇଥିଲେ । ମଧୁସୂଦନ





ଥିଲେ ପରୋପକାରୀ । ଆବଶ୍ୟକସ୍ଥଳେ ନିଜର ସହପାଠୀମାନଙ୍କୁ ସେ ଅକାତରରେ ସାହାଯ୍ୟ କରୁଥିଲେ । ନଅଙ୍କ ଦୁର୍ଭିକ୍ଷ ସମୟରେ ଏହି ଅପ୍ରାପ୍ତ ବୟସ୍କ ସ୍କୁଲ ଛାତ୍ରର ଜନସେବା ଅନ୍ୟମାନଙ୍କୁ ପ୍ରେରଣା ମଧ୍ୟ ଦେଇଥିଲା । ମାତ୍ର ୧୧ ବର୍ଷ ବୟସରେ ତାଙ୍କର ବିବାହ ପଦ୍ମାବାଈଙ୍କ ସହିତ ସଂପନ୍ନ ହୋଇଥିଲା । କବିବର ରାଧାନାଥ ରାୟ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ଥରେ ଜଗନ୍ନାଥ ଦର୍ଶନରେ ଆସି ପୁରୀ ଜିଲ୍ଲା ସ୍କୁଲକୁ ପରିଦର୍ଶନ କରିଥିଲେ । ସ୍କୁଲରେ ଖାଇବା ଛୁଟି ହୋଇଥାଏ । ରାଧାନାଥ ବିଦ୍ୟାଳୟ ଭିତରେ ପ୍ରବେଶ କରି ଦେଖିଲେ ସବୁ ଛାତ୍ରଛାତ୍ରୀ ହସଖୁସିରେ ମଜ୍ଜି ଯାଇଥିବାବେଳେ ଜଣେ ଛାତ୍ର ଏକାକୀ ବସି ପାଠ ପଢୁଛି । ଅନ୍ୟ ଆଡ଼କୁ ତା'ର ନଜର ନାହିଁ । ଜଣେ ସହପାଠୀ ତାକୁ କ'ଣ କହି ତା' ପଢ଼ାରେ ଅନ୍ତରାୟ ସୃଷ୍ଟି କରୁଛି । ବାଳକଟି ଖୁବ୍ ଶାନ୍ତ ଓ ବିନୟଭାବେ କହିଲା ମୋତେ ବର୍ତ୍ତମାନ ବ୍ୟସ୍ତ କର ନାହିଁ । ମୁଁ ପଢ଼ି ସାରିଲେ ତୁମେ ଯାହା କହିବ ଶୁଣିବି । ଏଇଆ କହିସାରି ନିଜ କାର୍ଯ୍ୟରେ ପୁଣି ମନ ନିବେଶ କଲା । ବାଳକଟିର ଏତାଦୃଶ କାର୍ଯ୍ୟ ଦେଖି ରାଧାନାଥ ତା'ପାଖକୁ ଗଲେ ଏବଂ ତା ନାଁ ମଧୁସୂଦନ ରାଓ ବୋଲି ଜାଣିଲେ । ଏହି ପ୍ରଥମ ମିଳନରୁ ରାଧାନାଥ ମଧୁସୂଦନଙ୍କ ପ୍ରତି ଗଭୀର ଭାବେ ଆକୃଷ୍ଟ ହୋଇଥିଲେ ।

ମଧୁଙ୍କର ବିଦ୍ୟାଳୟ ପଢ଼ାର ଶେଷ ବର୍ଷରେ ରାଧାନାଥ ବାଲେଶ୍ୱରରୁ ବଦଳି ହୋଇ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକ ରୂପେ ଯୋଗ ଦେଲେ । ମଣିକାଞ୍ଚନର ଅପୂର୍ବ ସଂଯୋଗ ଘଟିଲା । ଗୁରୁ ଶିଷ୍ୟଙ୍କର ମିଳନ ହେଲା । କବିବର ଯେଉଁ କାବ୍ୟ କବିତା ଲେଖନ୍ତି ପ୍ରଥମେ ଶିଷ୍ୟ ମଧୁସୂଦନଙ୍କୁ ପଢ଼ାନ୍ତି । ଜହ୍ନରାତିରେ ସମୁଦ୍ର କୂଳରେ ବସି ଗୁରୁ ଶିଷ୍ୟ ଦୁହେଁ ବିଭିନ୍ନ ସାହିତ୍ୟାଲୋଚନା କରନ୍ତି ।

୧୮୬୯ ମସିହାରେ ପୁରୀ ଜିଲ୍ଲା ସ୍କୁଲରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ଏଫ୍.ଏ. ପଢ଼ିବା ପାଇଁ କଟକ ଗଲେ । ଏଠାରେ ତାଙ୍କର ସହପାଠୀ ଥିଲେ ପ୍ୟାରୀମୋହନ ଆଚାର୍ଯ୍ୟ । ଅନ୍ତରଙ୍ଗ ବନ୍ଧୁ । ଉଭୟ ପରସ୍ପର ପାଇଁ ଥିଲେ ପ୍ରେରଣାର ଉତ୍ସ, ପରମ ଆତ୍ମୀୟ ଏବଂ ବରେଣ୍ୟ ସହଯୋଗୀ । ଦୁହେଁ ଦୁଇଭାଇ ପରି ଚଳୁଥିଲେ । ଏହିଠାରେ ହିଁ ଶିକ୍ଷା, ସାହିତ୍ୟ, ସମାଜ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣି ଓଡ଼ିଆ ଜାତିକୁ ଏକ ଆଧୁନିକ ସମ୍ଭ୍ରାନ୍ତ ଶିକ୍ଷିତ ଜାତିଭାବେ ପ୍ରତିଷ୍ଠିତ କରିବା ପାଇଁ ଉଭୟେ ଦୃଢ଼ ପ୍ରତିଜ୍ଞା କରିଥିଲେ । ୧୮୭୫ରେ ତାଙ୍କ ଉଦ୍ୟମରେ ପ୍ରକାଶିତ 'ଉତ୍କଳ ପୁତ୍ର' ତାହାର ପ୍ରଥମ ଜ୍ୱଳନ୍ତ ପ୍ରମାଣ । ଏହି ଏଫ୍.ଏ. ପଢ଼ା ସମୟରେ ମଧ୍ୟ ମଧୁସୂଦନ ଦର୍ଶନ ଅଧ୍ୟାପକ ହରିନାଥ ଭଟ୍ଟାଚାର୍ଯ୍ୟଙ୍କ ସଂସ୍ପର୍ଶରେ ଆସିଥିଲେ । ହରିନାଥ ଥିଲେ ବ୍ରାହ୍ମୋପାସକ । ତାଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ, ନୀତିବାଦିତା ଓ ସୁଶିକ୍ଷକତା ମଧୁସୂଦନଙ୍କ ମନରେ ଗଭୀର ରେଖାପାତ କରିଥିଲା । ତେଣୁ ସେ ବ୍ରାହ୍ମଧର୍ମ ପ୍ରତି ନିବିଡ଼ ଭାବେ ଆକୃଷ୍ଟ ହୋଇଥିଲେ । ପ୍ୟାରୀମୋହନ ଓ ସେ ଉଭୟେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ପରବର୍ତ୍ତୀ ଅବସ୍ଥାରେ ମଧୁସୂଦନ ବ୍ରାହ୍ମସମାଜର ଜଣେ ପ୍ରଧାନ ପୁରୋଧା ଏବଂ ମୁଖ୍ୟ ସଂଚାଳକ ରୂପେ ସର୍ବଭାରତୀୟ ସ୍ତରରେ ଖ୍ୟାତିଲାଭ କରିଥିଲେ ।

୧୮୭୧ରେ ସେ ଏଫ୍.ଏ. ପାଶ୍ କଲେ । ମାତ୍ର ସୁଦୂର କଲିକତାରେ ଯାଇ ବି.ଏ. ପଢ଼ିବା ପାଇଁ ପିତାଙ୍କର ସ୍ୱୀକୃତି ନପାଇବାରୁ ସେଇଠାରେ ହିଁ ତାଙ୍କ ପାଠପଢ଼ାରେ ଡୋରି ବନ୍ଧା ହୋଇଥିଲା ।

ଅଠର ବର୍ଷ ବୟସରେ ମଧୁସୂଦନଙ୍କର କର୍ମମୟ ଜୀବନର ଆରମ୍ଭ ହେଲା । ପୁରୀ ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ଭାବେ ସେ ଯୋଗଦାନ କଲେ । ଖୁବ୍ ଅଳ୍ପଦିନ ଭିତରେ ମଧୁସୂଦନ ପୁରୀ ଛାଡ଼ି ଯାଜପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହେଲେ । ଚାକିରି ଜୀବନର ଆରମ୍ଭରେ ସୁଦ୍ଧା ସେ ଜଣେ ଅନୁଭୂତି ସଂପନ୍ନ, ବୟସ୍କ ଶିକ୍ଷକ ଭଳି ନିଜର ବ୍ୟକ୍ତିତ୍ୱକୁ ଛାତ୍ର ଓ ଅଭିଭାବକ ମହଲରେ ପ୍ରତିଷ୍ଠିତ କରିପାରିଥିଲେ । ବ୍ୟକ୍ତିଗତ ଜୀବନରେ ବି ଏହା ତାଙ୍କ ପାଇଁ ଏକ ନୂତନ ଅଧ୍ୟାୟ ଥିଲା । ନବଯୁବତୀ ପତ୍ନୀ ପଦ୍ମାବାଈ, ସାନ ଭାଇ ଜଗନ୍ନାଥ ଓ ତାଙ୍କର ଜଣେ ବିଧବା ମାଉସୀ (ଯିଏକି ପରେ ତାଙ୍କର ବିମାତା ହୋଇଥିଲେ)ଙ୍କୁ ନେଇ ମଧୁସୂଦନଙ୍କ ପାରିବାରିକ ଜୀବନ ଆରମ୍ଭ ହେଲା । ମାସିକ ୪୫.୦୦ ଟଙ୍କା ଦରମା ପାଇ ସେ ପରିବାର ଚଳାଉଥିଲେ ।

ଯାଜପୁରରେ ଦେଢ଼ ବର୍ଷ କିମ୍ବା ଦୁଇ ବର୍ଷ କଟାଇବା ପରେ ତାଙ୍କୁ ବାଲେଶ୍ୱର ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ଭାବେ ନିଯୁକ୍ତି ମିଳିଲା । ସେତେବେଳେ ବାଲେଶ୍ୱର ଜିଲ୍ଲାର ଶିକ୍ଷା ବିଭାଗର ହାକିମ ଥାଆନ୍ତି କବିବର ରାଧାନାଥ ରାୟ । ସେ'ତ ମଧୁଙ୍କର ପଥ ପ୍ରଦର୍ଶକ । ଏହିଠାରେ ମଧ୍ୟ ଯୁଗସ୍ରଷ୍ଟା ଫକୀର ମୋହନଙ୍କ ସହିତ ତାଙ୍କର ଯୋଗସୂତ୍ର ସ୍ଥାପନ ହେଲା । ଏହା ଓଡ଼ିଆ ଜାତିର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସଂଯୋଗର ସମୟ । ଊନବିଂଶ ଶତାବ୍ଦୀର ଓଡ଼ିଆ ଇତିହାସର ସବୁଠାରୁ ଗୌରବୋଜ୍ଜ୍ୱଳ ସମୟ । ଗଙ୍ଗା, ଯମୁନା, ସରସ୍ୱତୀଙ୍କ ମିଳନ ପରି କବିବର ରାଧାନାଥ ରାୟ, ବ୍ୟାସକବି ଫକୀର ମୋହନ ସେନାପତି ଏବଂ ଭକ୍ତକବି ମଧୁସୂଦନ ରାଓଙ୍କ ସମ୍ମିଶ୍ରଣ ଓଡ଼ିଆ ସାହିତ୍ୟରେ ତ୍ରିବେଣୀଧାରା ସୃଷ୍ଟି କରିଥିଲା । ଏମାନଙ୍କ ମଧ୍ୟରୁ ରାଧାନାଥ କଳ୍ପନାବିଳାସୀ ଓ ଦୁଃଖବାଦୀ, ଫକୀର ମୋହନ ବାସ୍ତବବାଦୀ ଏବଂ ମଧୁସୂଦନ ଭକ୍ତ ଥିଲେ । 'ଉତ୍କଳ ଦର୍ପଣ' ରାଧାନାଥ ଓ ମଧୁସୂଦନଙ୍କ ସାହିତ୍ୟିକ ସହଯୋଗର ଏକ ସଫଳ ପରିପ୍ରକାଶ । ଏଥିରେ ପ୍ରକାଶିତ ଅନେକଗୁଡ଼ିଏ ପ୍ରବନ୍ଧ ଓ କବିତା ପରେ 'ପ୍ରବନ୍ଧମାଳା' ଓ 'କବିତାବଳୀ' ଭାବେ ସଂକଳିତହୋଇ ପୁସ୍ତକର ମାନ୍ୟତା ପାଇପାରିଛି ।

୧୮୭୫ ମସିହାରେ ମଧୁସୂଦନ କଟକର ରେଭେନ୍ସା କଲେଜିଏଟ୍ ସ୍କୁଲରେ ଶିକ୍ଷକଭାବେ ଯୋଗ ଦେଇଥିଲେ । ଦିନକୁ ଦିନ ତାଙ୍କର ଖ୍ୟାତି ଓ ପ୍ରତିଷ୍ଠା ଚାରିଆଡ଼େ ବ୍ୟାପିବାକୁ ଲାଗିଲା । ଏହି ସମୟରେ କଟକ ଥାଏ ଓଡ଼ିଶା ସଂସ୍କୃତିର ପ୍ରାଣ କେନ୍ଦ୍ର । ଶିକ୍ଷକତା ବ୍ୟତୀତ ମଧୁସୂଦନ ଅନେକ ସାଂସ୍କୃତିକ କାର୍ଯ୍ୟରେ ନିଜକୁ ସମ୍ମିଳିତ କରି ଓଡ଼ିଆ ଜାତିର ସାମଗ୍ରିକ ବିକାଶ କଳ୍ପେ ଚେଷ୍ଟା କରୁଥିଲେ । ତେଣୁ ରେଭେନ୍ସା ସାହେବ ଏକଥା ଜାଣିପାରି ମଧୁସୂଦନଙ୍କୁ ଭୂରିଭୂରି ପ୍ରଶଂସା କଲେ ।





୧୮୮୦ ମସିହାରେ ମଧୁସୂଦନଙ୍କ କର୍ମମୟ ଜୀବନରେ ଏକ ବିଶେଷ ଧରଣର ପରିବର୍ତ୍ତନ ଆସିଲା । ସେ ହେଲେ କଟକ ଜିଲ୍ଲା ସ୍କୁଲ ସମୂହର ଡେପୁଟି ଇନ୍‌ସପେକ୍ଟର । ପ୍ରଶାସନିକ କ୍ଷମତା ପାଇବା ପରେ ଓଡ଼ିଶାରେ ଶିକ୍ଷାର ପ୍ରଚାର ଓ ପ୍ରସାର ପାଇଁ ସେ ଟିକେ ଅଧିକ ଯତ୍ନବାନ୍ ହୋଇ ଉଠିଲେ । ଅଜ୍ଞାନ ଅନ୍ଧକାର ଦୂର ନ ହେବାଯାଏ ଓଡ଼ିଶା ଭାଗ୍ୟରେ ପରିବର୍ତ୍ତନ ଆସିବ ନାହିଁ, ଏକଥାକୁ ହୃଦୟଙ୍ଗମ କରି ସେ କେତୋଟି ପ୍ରାଥମିକ ବିଦ୍ୟାଳୟ ଖୋଲିଥିଲେ । ଶିକ୍ଷାର ପ୍ରକୃତ ଅର୍ଥ ଚରିତ୍ର ଗଠନ । ଶିଶୁ ହେଉଛି ଦେଶର ଭବିଷ୍ୟତ । ତେଣୁ ପିଲାମାନଙ୍କୁ ଦଣ୍ଡ ନଦେଇ ବୁଝେଇ ଶୁଝେଇ ବାଟକୁ ଆଣିବାକୁ ସେ ସଦାସର୍ବଦା ଶିକ୍ଷକମାନଙ୍କୁ ଉପଦେଶ ଦେଉଥିଲେ । ଶିକ୍ଷା କ୍ଷେତ୍ରରେ ମଧୁସୂଦନଙ୍କର ଯେଉଁ ସ୍ୱାଧୀନ ଚିନ୍ତା ଏବଂ ନୂତନ ଅଭିବ୍ୟକ୍ତି ରହିଥିଲା ତାହା ସରକାରୀ ସ୍ତରରେ ସମ୍ଭବପର ନହେବାରୁ ୧୮୮୧ ମସିହାରେ ସେ ନିଜ ଚେଷ୍ଟାରେ ଏକ ନୂତନ ମଧ୍ୟ ଇଂରାଜୀ ବିଦ୍ୟାଳୟ କଟକରେ ସ୍ଥାପନ କରି ଶ୍ରୀ ବିଶ୍ୱନାଥ କରଙ୍କୁ ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତି ଦେଲେ । ଦରିଦ୍ର ମେଧାବୀ ଛାତ୍ରମାନଙ୍କ ପାଇଁ ଏହି ସ୍କୁଲ ଥିଲା ଏକମାତ୍ର ଆଶା ଓ ଆଶ୍ରୟସ୍ଥଳ । ପରବର୍ତ୍ତୀ ଅବସ୍ଥାରେ ଏଠାରେ ଉଚ୍ଚଶ୍ରେଣୀ ଖୋଲାଯାଇ 'ଭିକ୍ଟୋରିଆ ହାଇସ୍କୁଲ' ନାମରେ ନାମିତ ହେଲା । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଏହି ସ୍କୁଲର ଆର୍ଥିକ ସ୍ୱଚ୍ଛଳତା ପାଇଁ ମଧୁସୂଦନ ଆପ୍ରାଣ ଚେଷ୍ଟା କରିଥିଲେ । ବର୍ତ୍ତମାନ ଏହି ସ୍କୁଲଟି 'ଭକ୍ତ ମଧୁ ବିଦ୍ୟାପୀଠ' ନାମରେ ନାମିତ । ଅନୁଷ୍ଠାନଟି ମଧୁସୂଦନଙ୍କ ଶିକ୍ଷା ପ୍ରାଣତାର ଏକ କୀର୍ତ୍ତିସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦୀର୍ଘ ୧୧ ବର୍ଷ କଟକରେ ଡେପୁଟି ଇନ୍‌ସପେକ୍ଟର ଭାବେ କାର୍ଯ୍ୟ କଲାପରେ ୧୮୯୧ରେ ସେ କଲେଜିଏଟ୍ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । ଏହି ସ୍କୁଲରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ପ୍ରଧାନ ଶିକ୍ଷକ । ୧୮୯୩ ମସିହାରେ ବାଲେଶ୍ୱର ଜିଲ୍ଲା ଇନ୍‌ସପେକ୍ଟର ଭାବେ ତାଙ୍କୁ ସ୍ଥାନାନ୍ତରିତ କରାଗଲା । କିନ୍ତୁ ମାତ୍ର ୩ ମାସ ପରେ ପୁନର୍ବାର ତାଙ୍କର ବଦଳି ହେଲା କଟକ । କଟକର ନର୍ମାଲ ସ୍କୁଲ ବା ଟ୍ରେନିଂ ସ୍କୁଲର ଅଧ୍ୟକ୍ଷ ଭାବେ ଯୋଗ ଦେବା ପରେ ତାଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ସେତେବେଳେ ଓଡ଼ିଶାରେ ପାଠ୍ୟପୁସ୍ତକ ନଥିଲା । ପ୍ରଥମେ ୧୮୯୪ ମସିହାରେ ମଧୁସୂଦନଙ୍କ ଲେଖନୀରୁ ଜନ୍ମ ନେଲା 'ବର୍ଣ୍ଣବୋଧ ବହି' । ତା'ପରେ ଶିକ୍ଷାବନ୍ଧୁ, ଅବଧାନ ବନ୍ଧୁ, ଓ 'ଶିକ୍ଷକ ସହଚର' ପ୍ରଭୃତି ପୁସ୍ତକ ରଚନା କରି ସେ ବେଶ୍ ଚହଳ ସୃଷ୍ଟି କରିପାରିଥିଲେ । ବିଦ୍ୱାନ ଓ ସଦାଚାରୀ ଛାତ୍ର ଗଠନ କରିବା, ଶିକ୍ଷକମାନଙ୍କୁ ଅଧିକ ଯୋଗ୍ୟ ଓ ଶୃଙ୍ଖଳିତ କରିବା ଏବଂ ଶିକ୍ଷାୟତନମାନଙ୍କରେ ଉତ୍ତମ ବାତାବରଣ ସୃଷ୍ଟି କରିବା ପାଇଁ ମଧୁସୂଦନ ବିଭିନ୍ନ ସମୟରେ ଶିକ୍ଷକମାନଙ୍କୁ ଡକାଇ ଆଲୋଚନା ସଭାମାନ କରୁଥିଲେ । ଏହି ଆଲୋଚନା ସଭାରୁ ହିଁ 'ଉତ୍କଳ ସାହିତ୍ୟ ସମାଜ'ର ଜନ୍ମ ।

ମଧୁସୂଦନ ହେଉଛନ୍ତି ପ୍ରଥମ ଓଡ଼ିଆ ଶିଶୁ ସାହିତ୍ୟିକ ବା ଆଧୁନିକ ଓଡ଼ିଆ ଶିଶୁ ସାହିତ୍ୟର ସ୍ରଷ୍ଟା ବା ଜନକ । ଆଜିର ଶିଶୁ ଆଗାମୀ କାଲିର ନାଗରିକ । ଦେଶ ତଥା ଜାତିର ଭବିଷ୍ୟତ । ଏକଥାକୁ ସେ ଭଲଭାବେ ହୃଦୟଙ୍ଗମ କରି ସତ୍ୟ, ଶିବ ଓ ସୁନ୍ଦରର ପରିକଳ୍ପନା କରିଥିଲେ । ଶିଶୁମାନଙ୍କୁ ଅକ୍ଷର ଶିଖାଇବା, ସୁମାର୍ଗ ଦେଖାଇବା ନିମନ୍ତେ ପାଠ୍ୟପୁସ୍ତକ ମାଧ୍ୟମରେ ସେ ପ୍ରଚେଷ୍ଟା କରିଥିଲେ । ତାଙ୍କର ଏହି ପ୍ରୟାସ ବା ପ୍ରଚେଷ୍ଟା ଅତୀବ ପ୍ରଶଂସନୀୟ । ତାଙ୍କ ରଚିତ 'ବର୍ଣ୍ଣବୋଧ' ଓଡ଼ିଆ ଶିଶୁ ସାହିତ୍ୟର ଏକ ଅମୂଲ୍ୟ ସଂପଦ । ବର୍ତ୍ତମାନ ଓଡ଼ିଶାରେ ପ୍ରଚଳିତ ଶିକ୍ଷା ପଦ୍ଧତିରେ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲେ ମଧ୍ୟ 'ବର୍ଣ୍ଣବୋଧ'ର ଆଦର କମି ନାହିଁ । ବରଂ ଅନ୍ଧର ଲଉଡ଼ି, ଛୋଟାର ବାଡ଼ି ନ୍ୟାୟରେ 'ବର୍ଣ୍ଣବୋଧ' ସବୁଦିନ ପାଇଁ ଓଡ଼ିଆମାନଙ୍କର ଗଣ୍ଠିଧନ ହୋଇ ରହିଛି ଓ ରହିଥିବ । ଏଥିରେ ଥିବା ପ୍ରତ୍ୟେକଟି ଧାଡ଼ି ସରଳ ଓ ବୋଧଗମ୍ୟ । ଏହା ଶିଶୁର ମନ ଓ ପ୍ରାଣକୁ ହରଣ କରିନିଏ । ତାଙ୍କର ଶିଶୁ ଗୀତିଗୁଡ଼ିକରୁ କେତୋଟି ପଂକ୍ତି ତଳେ ଦିଆଗଲା ।

ରାତି ପାହିଲାଣି ରାବଇ କାଉ
ଉଠ ଉଠ ମଠ ନକର ଆଉ ।

ପଶ୍ଚିମ ଦିଗରେ ବୁଡ଼ଇ ରବି
ଆହାକି ସୁନ୍ଦର ଲୋହିତ ଛବି ।

ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।

ପିତାମାତା ପରି ଆଉ କେ ଅଛି ସଂସାରେ
ଧନ୍ୟ ସେ' ଯେ ପ୍ରାଣ ଦିଏ ତାଙ୍କରି ସେବାରେ ।

ତୁ ତୁ ବୋଲି ଡାକିଲି ମୁହିଁ
ଦଉଡ଼ି ଆସିଲୁ କୁକୁର ତୁହି ।

ଆଉଁସି ଦେବିରେ ଦେହ ତୋହର
ଖାଇବାକୁ ଦେବି ଭାତ ମୋହର ।

ମୋ କଥା ମାନିବୁ ଜାଣଇ ମୁହିଁ
ଯେଣେ ଯିବି ମୁହିଁ ଯିବୁରେ ତୁହି ।

ଦିନ, ବାର ଓ ସପ୍ତାହ ବିଷୟରେ ଧାରଣା ଦେବା ପାଇଁ ସେ ଏକ ସୁନ୍ଦର କବିତା ଅବତାରଣା କରିଯାଇଛନ୍ତି, ଯଥା-

ଦିନ ରାତି ମିଶି ଦିବସ ଏକ,
ସାତ ଦିବସରେ ସପ୍ତାହ ଲେଖ ।

ସପ୍ତାହରେ ସାତ ବାରର ନାମ,
ମନେ ସଦା ରଖିଥିବ ହେ ରାମ ।

ରବି ପରେ ସୋମ ତା'ପରେ ମଙ୍ଗଳ
ତା'ପରେ ଯେ ବୁଧବାର,
ଗୁରୁ ଶୁକ୍ର ଶନି ଆସେ ତାହା ପରେ
ସାତବାର ଏ ପ୍ରକାର ।





ଖାଲି ଯେ ସେ ଶିଶୁ କବିତା ରଚନା କରୁଥିଲେ ତା'ନୁହେଁ, ଓଡ଼ିଆ ଗୀତି କବିତା ରଚନାରେ ସେ ମଧ୍ୟ ସିଦ୍ଧହସ୍ତ ଥିଲେ । ତାଙ୍କ କବିତାଗୁଡ଼ିକରେ ହଳାହଳ ବିଷ ମଧ୍ୟରେ ଅମୃତର ସନ୍ଧାନ, ଅଶ୍ରୁ ମଧ୍ୟରେ ହାସ୍ୟ, ଅନ୍ଧାର ମଧ୍ୟରେ ଆଲୋକ, ବେଦନା ମଧ୍ୟରେ ଆନନ୍ଦର ସନ୍ଧାନ ଏବଂ ମରୁଭୂମିରେ ପଦ୍ମ ପୁଷ୍କରିଣୀ ଥିବାର ସ୍ୱପ୍ନ ସେ ଦେଖୁଥିଲେ ।

ସେ ଥିଲେ ସତ୍ୟ, ଧର୍ମ ଓ ନ୍ୟାୟର ମୂର୍ତ୍ତିମନ୍ତ ପ୍ରତୀକ । ଶୃଙ୍ଖଳା ଓ ସଂଯମତାକୁ ସେ ଅଧିକ ପ୍ରାଧାନ୍ୟ ଦେଉଥିଲେ । ତାଙ୍କର ଖାଦ୍ୟପେୟ, ପୋଷାକ ପରିଚ୍ଛଦ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ଥିଲା । ପ୍ରତ୍ୟହ ପ୍ରାତଃ ସମୟରୁ ଉଠି ସେ ନିଜର ନିତ୍ୟକର୍ମମାନ ସମାପନ କରୁଥିଲେ । ନିରାମିଷ ଖାଦ୍ୟ ଭକ୍ଷଣ କରୁଥିଲେ । ବିଶ୍ୱନିୟନ୍ତା ଭଗବାନଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତିଭାବ ଥିଲା । ଭକ୍ତିରେ ବିଭୋର ମଧୁସୂଦନ ଭଗବାନଙ୍କର ଜଣେ ଏକନିଷ୍ଠ ସାଧକ ଥିଲେ । ତାଙ୍କର ଅଧିକାଂଶ ଲେଖାରେ ମଧ୍ୟ ଭକ୍ତିଭାବ ପ୍ରତିଭାତ ହୋଇଛି । ତେଣୁ ତାଙ୍କୁ 'ଭକ୍ତକବି' ଭାବେ ଅଭିହିତ କରାଯାଇଛି ।

ତାଙ୍କର ଉନ୍ନତ ଚିନ୍ତା, ପରିବ୍ୟାପ୍ତ ଜ୍ଞାନ ଓ ଅପରିମିତ ଶକ୍ତି ଯୋଗୁଁ ହୁଏତ ସେ ଭଗବାନଙ୍କ ଆନନ୍ଦମୟ ରୂପକୁ ଅନ୍ତରରେ ଅନୁଭବ କରିବାକୁ ସକ୍ଷମ ହୋଇ ପାରିଥିଲେ । ଈଶ୍ୱରଙ୍କ ପାଖରେ ସେ ନିଜକୁ ପୂରାପୂରି ସମର୍ପି ଦେଉଥିଲେ ବୋଲି ତାଙ୍କର କବିତା ସବୁରୁ ସ୍ପଷ୍ଟ ବାରି ହୋଇଯାଏ । ଯଥା-

ଈଶ୍ୱର ଦୟାର ସାଗର
ତାଙ୍କରି ମହିମା ସୁନ୍ଦର ।

ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମୋତେ
ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ ।

ପ୍ରଭୋ ପରମ ଶରଣ
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।

ଆକାଶ ଦିଶେ କି ସୁନ୍ଦର
ତାହାକୁ ରଚିଲେ ଈଶ୍ୱର ।

ହେ ମହାପ୍ରଭୁ ମହେଶ୍ୱର
ଅନନ୍ତ ମହିମା ତୋହର ।

ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ,
ଜଗତର କର୍ତ୍ତା, ପରମ ଈଶ୍ୱର, ଜାଣୁଛନ୍ତି ପ୍ରତିକ୍ଷଣେ ।

ମୋ ପାଶେ ଅଛନ୍ତି, ଦିବସ ରଜନୀ, ମହାପ୍ରଭୁ ପରାତ୍ପର,
ଏକଥା ସୁମରି, ହୃଦୟେ ତାହାଙ୍କୁ, ପୂଜିବି ମୁଁ ନିରନ୍ତର ।

ଏ ପ୍ରାଣ ଅର୍ପଇ ଚରଣେ ତୋହର
ଘେନ ମା' ପ୍ରାଣ ଦାୟିନୀ
ଦେ'ମା ଶକ୍ତି ଦେ'ମା ବୀର୍ଯ୍ୟ
ସର୍ବ କଲ୍ୟାଣ ରୂପିଣୀ ।

ବର୍ଣ୍ଣବୋଧ 'ବାଳ ରାମାୟଣ', ସାହିତ୍ୟ କୁସୁମ, ଶିଶୁ ସଂଗୀତ, ଛାନ୍ଦମାଳା ପ୍ରଭୃତି ପୁସ୍ତକ ବ୍ୟତୀତ ପ୍ରଭାତ, ସନ୍ଧ୍ୟା, ଗ୍ରୀଷ୍ମ, ବର୍ଷା, ଶରତ, ଜନ୍ମଭୂମି, ପୃଥିବୀପ୍ରତି, ନଦୀପ୍ରତି, ଆକାଶପ୍ରତି, ଜୀବନ ଚିନ୍ତା, ମୋ ଜନନୀ, ଶ୍ରୀରାମ ବନବାସ, ଭାରତୀ ଭାବନା, ନୀତି ରତ୍ନମାଳା, ଉତ୍କଳଗାଥା ପ୍ରଭୃତି ରାଶି ରାଶି ଲେଖା ତାଙ୍କ ସାହିତ୍ୟକୃତିର ପରିଚୟ ପ୍ରଦାନ କରିଥାଏ ।

ମଧୁସୂଦନଙ୍କ କାର୍ଯ୍ୟଦକ୍ଷତା, ସ୍ୱାଧୀନଚେତା, କର୍ତ୍ତବ୍ୟବୋଧ, ସଦାଚାର ଓ ସାହିତ୍ୟକୃତିରେ ମୁଗ୍ଧ ହୋଇ ଇଂରେଜ ସରକାର ତାଙ୍କୁ ୧୯୦୭ ମସିହାରେ 'ରାୟ ବାହାଦୂର ଉପାଧି'ରେ ଭୂଷିତ କରିଥିଲେ । ସେ ଥିଲେ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ଜଣେ ସମାଜ ସଂଗଠକ, ଦୃଢ଼ ପ୍ରଶାସକ, ଶିଶୁ ସାହିତ୍ୟ ଏବଂ ଉତ୍କଳ ସାହିତ୍ୟ ସମାଜର ଜନକ । ୧୯୦୯ ମସିହା ଜୁଲାଇ ମାସରେ ସେ ସରକାରୀ ଚାକିରିରୁ ଅବସର ଗ୍ରହଣ କରିଥିଲେ । ବହୁବର୍ଷ ଧରି ସେ ଶୂଳ ରୋଗରେ ପୀଡ଼ିତ ଥିଲେ । ସରକାରୀ ଚାକିରିରୁ ଅବସର ଗ୍ରହଣ କରି ସାରିଥିଲେ ସୁଦ୍ଧା କର୍ମମୟ ଜୀବନରୁ ତାଙ୍କୁ ଅବ୍ୟାହତି ମିଳି ନଥିଲା । ସେ ସବୁବେଳେ ଚିନ୍ତିତ ରହୁଥିଲେ । ଚିନ୍ତାଯୋଗୁଁ ତାଙ୍କର ଶରୀର ଦୁର୍ବଳ ହେବାରେ ଲାଗିଲା । ୧୯୧୨ ମସିହା ଡିସେମ୍ବର ୨୮ ତାରିଖରେ ଏହି ମହାପୁରୁଷଙ୍କ ଜୀବନର ଅବସାନ ଘଟିଲା । ମଧୁଙ୍କର ମୁଖ ନିଃସୃତ ମଧୁବାଣୀ ସବୁଦିନ ପାଇଁ ବନ୍ଦ ହୋଇଗଲା । କିନ୍ତୁ ରହିଗଲା ତାଙ୍କ ଦ୍ୱାରା ରଚିତ ସୃଷ୍ଟିର ଗୂଢ଼ ରହସ୍ୟକୁ ପ୍ରତିପାଦିତ କରୁଥିବା କେଇପଦ କବିତା । ତାଙ୍କ ଭାଷାରେ -

ମଧୁମୟ ସୃଷ୍ଟି, ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ,
ଜାଗ ନରନାରୀ ଅମୃତ ସନ୍ତତି
ପିଅ ସେ ଅମୃତ ପୟ ହେ,
ପିଅ ସେ ଅମୃତ ଦିବସ ଶର୍ବରୀ
ଗାଅ ଅମୃତର ଜୟ ହେ ।

ବାସ୍ତବିକ ମଧୁସୂଦନ ଥିଲେ ମରଣଜୟୀ, ନବଯୁଗର ପ୍ରବର୍ତ୍ତକ ଓ ଜଣେ ଦେବ ପ୍ରତିମ ମଣିଷ । ତାଙ୍କ ମୃତ୍ୟୁରେ ଶ୍ରଦ୍ଧାଞ୍ଜଳି ଅର୍ପଣ ପୂର୍ବକ କବି ପଦ୍ମଚରଣ ଗାଇ ଉଠିଥିଲେ -

ଉତ୍କଳ ଭାରତୀ ସେବକ କବି
ସାହିତ୍ୟ ସୁନୀତି ପ୍ରଚାର ରବି ।

ସୁନ୍ଦର କବିତା ସନ୍ଦର୍ଭ ଦାନେ
ଧନ୍ୟ କରିଅଛ ଦେଶ ସନ୍ତାନେ ।

ପରିଶେଷରେ ଏତିକି ମାତ୍ର କୁହାଯାଇପାରେ -

ଉତ୍କଳର ଇତିହାସ ସୁବର୍ଣ୍ଣ ଅକ୍ଷରେ
ଚିତ୍ରିତ ରହିବ ମଧୁ ନାମ ନିଶ୍ଚିତରେ ।





# ଆଶାବାଦୀ ସୁଭାଷ

ଗିରିଜା ଶଙ୍କର ଦାସ

ମୁଁ ଜନ୍ମଜାତ ଆଶାବାଦୀ ଓ କୌଣସି ପରିସ୍ଥିତିରେ ମଧ୍ୟ ପରାଜୟ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ନୁହେଁ । ମୁଁ ଆପଣମାନଙ୍କ ହାତରେ ନିଜର ରାଷ୍ଟ୍ରୀୟ ପତାକା, ନିଜର ରାଷ୍ଟ୍ରୀୟ ସମ୍ମାନ ଓ ଭାରତୀୟ ବୀରମାନଙ୍କ ପରମ୍ପରାକୁ ପ୍ରଦାନ କରି ଯାଉଛି । ମୁଁ ଆପଣମାନଙ୍କୁ ଏତିକିମାତ୍ର କହୁଛି, ଆପଣମାନେ ମଧ୍ୟ ମୋ' ପରି ଆଶାବାଦୀ ହୁଅନ୍ତୁ ଓ ମୋ' ପରି ବିଶ୍ୱାସ କରନ୍ତୁ । 'ଘୋର ଅନ୍ଧକାର ଉଷାର ପୂର୍ବ ସୂଚନା ଅଟେ ।' ଭାରତ ସ୍ୱାଧୀନ ହେବ ଓ ଅତିଶୀଘ୍ର ହେବ । 'ଇନ୍ କିଲାବ୍ ଜିନ୍ଦାବାଦ' - 'ଆଜାଦ୍ ହିନ୍ଦ୍ - ଜିନ୍ଦାବାଦ୍', 'ଜୟହୀନ୍ଦ୍' । ଜୀବନର ଶେଷ ଅଭିଭାଷଣ ଦେବା ସମୟରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଆଜାଦ୍ ହିନ୍ଦ୍ ଫୌଜର ଜବାନମାନଙ୍କୁ ଏହି ସନ୍ଦେଶ ଦେଇଥିଲେ ।



୧୯୪୫ ମସିହା ଅଗଷ୍ଟ ୨୩ ତାରିଖ ଦିନ ରେଡ଼ିଓର ପ୍ରସାରଣରେ ସମଗ୍ର ବିଶ୍ୱ ସ୍ତବ୍ଧ ହୋଇ ରହିଯାଇଥିଲା । ଆଜାଦ୍ ହିନ୍ଦର ଅସ୍ଥାୟୀ ସରକାରଙ୍କର ସର୍ବୋଚ୍ଚ ଅଧିକାରୀ ସୁଭାଷ ଚନ୍ଦ୍ର ବୋଷ, କର୍ଣ୍ଣେଲ ହବିବୁର ରହେମାନଙ୍କ ସହିତ ବ୍ୟାଙ୍କରୁ ଟୋକିଓ ଆସୁଥିବା ସମୟରେ ପାରମୋସା ନିକଟରେ ତାଇହୋକ୍ ନାମକ ସ୍ଥାନରେ ତାଙ୍କର ବିମାନ ଦୁର୍ଘଟଣାଗ୍ରସ୍ତ ହୋଇ ସେଥିରେ ନିଆଁ ଲାଗି ଯିବାରୁ ସେମାନେ ତାଙ୍କର ମୃତ୍ୟୁକୁ ସ୍ୱୀକାର କରି ନେଲେ ।

ବିମାନ ଦୁର୍ଘଟଣାରେ ନେତାଜୀଙ୍କ ମୃତ୍ୟୁ ଖବରକୁ ଭାରତୀୟ ନେତାମାନଙ୍କ ମଧ୍ୟରୁ ଅନେକ ବିଶ୍ୱାସ କରିଥିଲେ । ମହାତ୍ମା ଗାନ୍ଧୀ ଆତ୍ମୀୟ ବୋଷଙ୍କୁ ତାରରେ ଖବର ଦେଲେ ଯେ ସାଧାରଣ ପ୍ରାର୍ଥନା କରି ନିଅ । ପଣ୍ଡିତ ମଦନମୋହନ ମାଲବୀୟ ତାର ଦ୍ୱାରା ଖବର ଦେଲେ ଯେ ଦଶାହ, ଏକାଦଶାହ କାର୍ଯ୍ୟ ସ୍ଥଗିତ ରଖ । ଆମେରିକାର ଜେନେରାଲ୍ ମେକ ଆର୍ଥର କହିଥିଲେ ଯେ, ସୁଭାଷ ଚନ୍ଦ୍ର ବୋଷ ଦୁର୍ଘଟଣାରେ ବଞ୍ଚି ଯାଇଥିଲେ । ଅଧିକାଂଶ ନେତା, ବ୍ରିଟିଶ ସରକାର ଓ ଜନଚର୍ଚ୍ଚା ଅନୁସାରେ ନେତାଜୀ ନିଜର କେତେକ ସାଙ୍ଗ ସହିତ ଅଜ୍ଞାତବାସ କରିବାକୁ ଚାଲି ଯାଇଛନ୍ତି । କାରଣ ଜାପାନ, ମିତ୍ର ରାଷ୍ଟ୍ରଗୁଡ଼ିକ ସମ୍ମୁଖରେ ଆତ୍ମସମର୍ପଣରେ ତାଙ୍କୁ ବ୍ରିଟିଶ ସରକାରଙ୍କ ହାତରେ ଧରାଇ ଦେଇଥାନ୍ତା ଯଦିଓ ଜାପାନବାସୀ ସୁଭାଷ ବୋଷଙ୍କୁ ଆବଶ୍ୟକ ସଂରକ୍ଷଣ ଦେବା ପାଇଁ କଥା ଦେଇଥିଲେ ତଥାପି ଜାପାନ ପ୍ରତି ସଂପୂର୍ଣ୍ଣ ବିଶ୍ୱାସ କରାଯାଇ ପାରୁନଥିଲା । ଦେଶକୁ ସ୍ୱାଧୀନତା ଲାଭ କରିବାର ୫୭ ବର୍ଷ ବିତି ଯାଇଥିଲେ ମଧ୍ୟ ନେତାଜୀ ଆସିଲେ ନାହିଁ । ତଥାପି ବର୍ତ୍ତମାନ ମଧ୍ୟ ଭାରତବାସୀ ନେତାଜୀଙ୍କ ଆସିବା ବାଟକୁ ଚାହିଁ ବସିଛନ୍ତି । ନେତାଜୀ ମାତୃଭୂମିର ମୁକ୍ତି ସଂଗ୍ରାମର ସବୁଠାରୁ ତେଜସ୍ୱୀ ଓ ତ୍ୟାଗୀ ସେନାନୀ ଥିଲେ ।

୨୩ ଜାନୁଆରୀ ୧୮୯୭ ମସିହାରେ ଏକ ସୁସଂପନ୍ନ ଇଂରେଜ ସଂସ୍କାରର ପୋଷକ ଆଭିଜାତ୍ୟ ପରିବାରରେ ସୁଭାଷ ଚନ୍ଦ୍ର ବୋଷଙ୍କ ଜନ୍ମ ହୋଇଥିଲା । ପିତା ରାୟବାହାଦୂର ଜାନକୀ ନାଥ ବୋଷ ସରକାରୀ ଓକିଲ ଓ ମା' ପ୍ରଭାବତୀ ଦେବୀ ମା' ଦୁର୍ଗାଙ୍କର ଉପାସକ ଥିଲେ । ସୁଭାଷ ପିଲାଦିନରୁ ମେଧାବୀ ଥିବା ସହିତ ନିର୍ଭୀକ ଦେଶପ୍ରେମୀ ଓ ସ୍ୱାଭିମାନୀ ମଧ୍ୟ ଥିଲେ । ଭାରତୀୟମାନଙ୍କ ପ୍ରତି ଇଂରେଜମାନଙ୍କର ଭେଦଭାବ ନୀତି ଭାରତର ଦାରିଦ୍ର୍ୟତା, ପରାଧୀନତା, ଅଶିକ୍ଷା, ଧାର୍ମିକ ଦୁର୍ବଳତା, ଅସ୍ପୃଶ୍ୟତା ଦେଖି ତାଙ୍କର ହୃଦୟ ତରଳି ଯାଇଥିଲା । ସୁଭାଷ ନିଜର ଏକ ସାଥି ପାଖକୁ ଲେଖିଥିଲେ, ମୁଁ ପ୍ରତିଦିନ ଅନୁଭବ କରୁଛି ଯେ ଜୀବନରେ ମୋର କୌଣସି ବିଶେଷ ଉଦ୍ଦେଶ୍ୟ ରହିଛି ଏବଂ ଏଥିପାଇଁ ମୋତେ ଏହି ଶରୀର ମିଳିଛି । ଅନୁଭବ ପ୍ରାପ୍ତ କରିବା ପାଇଁ ହୁଏତ କିଛି ସମୟ ପର୍ଯ୍ୟନ୍ତ କୌଣସି ପଥ ଗ୍ରହଣ କରିନିଏ କିନ୍ତୁ ଦେଶରେ ମୁଁ ଏପରି





ଜାଗୃତି ଓ ଶକ୍ତି ଆହୃତ କରିବି ଯାହାକି ଅନ୍ୟାୟ ଓ ପରାଧୀନତାର ଅନ୍ତିମ ସମୟ ପର୍ଯ୍ୟନ୍ତ ପ୍ରେରଣା ଦେଉଥିବ ।

ସୁଭାଷଙ୍କ ପ୍ରତି ଲୋମକୂପରେ ସ୍ୱାଭିମାନର ଭାବନା ଥିଲା ପ୍ରେସିଡେନ୍ସୀ କଲେଜରେ ବି.ଏ. ପଢ଼ିଲା ବେଳେ ପ୍ରଫେସର ଆଟେଙ୍ଗ ଜଣେ ଭାରତୀୟ ଛାତ୍ରଙ୍କୁ ବ୍ଲଡ଼ୀ କହି ଦେଲେ । ଫଳରେ ସୁଭାଷ ନିଜର ଭବିଷ୍ୟତ ଚିନ୍ତା ନକରି ପ୍ରଫେସରଙ୍କ ଗାଲକୁ ଗୋଟିଏ ଜୋର ଚାପୁଡ଼ା ମାରି ଦେଇଥିଲେ । ୟୁରୋପୀୟ ସ୍କୁଲରେ ଏହି ଘଟଣା ପ୍ରଥମ ଥିଲା । ଫଳସ୍ୱରୂପ ନେତାଜୀଙ୍କୁ ଦୁଇବର୍ଷ ପାଇଁ ରଷ୍ଟିକେଟ୍ କରାଯାଇଥିଲା ।

ସ୍ୱାମୀ ବିବେକାନନ୍ଦଙ୍କୁ ସୁଭାଷ ବୋଷ ନିଜର ଆଦର୍ଶ ରୂପେ ଓ ଦେଶ ବନ୍ଧୁ ଚିତ୍ତରଂଜନ ଦାସଙ୍କୁ ନିଜର ରାଜନୈତିକ ଗୁରୁ ରୂପେ ଗ୍ରହଣ କରିଥିଲେ । ସାର ଆଶୁତୋଷଙ୍କ ସହାୟତାରେ ୧୯୧୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ସୁଭାଷ ଦର୍ଶନ ଶାସ୍ତ୍ରରେ ବି.ଏ. ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ପିତା ଜାନକୀ ନାଥ ବ୍ରିଟିଶ୍ ସରକାରଙ୍କ ଅତି ବିଶ୍ୱସ୍ତ ଥିଲେ । ତେଣୁ ସୁଭାଷଙ୍କୁ ଆଇ.ସି.ଏସ୍. କରାଇବାକୁ ଚାହୁଁଥିଲେ । ପିତାଙ୍କ ଇଚ୍ଛାକୁ ପୂରଣ କରି ସେ ଲଣ୍ଡନରୁ ୧୯୨୦ ମସିହାରେ ଆଇ.ସି.ଏସ୍. ପରୀକ୍ଷାରେ ପ୍ରଥମ ସ୍ଥାନରେ ଉତ୍ତୀର୍ଣ୍ଣ ହୋଇ ଦେଶର ସର୍ବୋଚ୍ଚ ଚାକିରିରେ ଯୋଗ ଦେଲେ । କିନ୍ତୁ ଦେଶର ସର୍ବୋଚ୍ଚ କର୍ମଚାରୀମାନଙ୍କ ସମ୍ମୁଖରେ ବ୍ୟକ୍ତିଗତ ହିତ ଅପେକ୍ଷା ଦେଶ ହିତରେ ଆଦର୍ଶ ଉଦାହରଣ ପ୍ରସ୍ତୁତ କରି ୧୯୨୧ ମସିହାରେ ଆଇ.ସି.ଏସ୍. ଚାକିରିରୁ ତ୍ୟାଗପତ୍ର ଦେଇ ଦେଶ ସେବା ପାଇଁ ଚାଲି ଆସିଥିଲେ । ତତ୍କାଳୀନ ଇତିହାସରେ ଏହା ଏକ ଆଶ୍ଚର୍ଯ୍ୟ ଘଟଣା ଥିଲା ।

ଭାରତ ଆସିବା ମାତ୍ରେ ସୁଭାଷ, ମହାତ୍ମା ଗାନ୍ଧୀ ଓ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ସହିତ ସାକ୍ଷାତ୍ କଲେ ଓ ଅବିବାହିତ ରହି ଦେଶର ସେବା ପାଇଁ ନିଜର ସଂପୂର୍ଣ୍ଣ ଜୀବନ ଉତ୍ସର୍ଗ କରିବା ପାଇଁ ଇଚ୍ଛା ପ୍ରକଟ କଲେ । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିବା ହେତୁ ପ୍ରଥମ ଥର ଛଅମାସ ପାଇଁ ଜେଲ ଗଲେ । ୧୯୨୨ ମସିହାରେ ବଙ୍ଗଳାରେ ଭୀଷଣ ନଈବଢ଼ି ଆସିଥିବା ବେଳେ ବନ୍ୟାଗ୍ରସ୍ତ ଲୋକମାନଙ୍କ ସହାୟତା ସମିତିର ମନ୍ତ୍ରୀ ରୂପେ ସୁଭାଷ ତନ, ମନ ଓ ଧନ ସହିତ ଦୀନ ଦୁଃଖିମାନଙ୍କର ସେବା କରିଥିଲେ । ସ୍ୱରାଜ ପାର୍ଟିର 'ଫରଓ୍ୱାର୍ଡ଼' ନାମକ ଦୈନିକ ଖବର କାଗଜର ସଂପାଦକ ଓ କଲିକତା ମୁନିସିପାଲ କର୍ପୋରେସନ୍‌ର ଚିଫ୍ ଏକଜକ୍ୟୁଟିଭ ରୂପେ ସୁଭାଷଙ୍କୁ ନିଯୁକ୍ତି ଦିଆଗଲା । ୧୯୨୪ରୁ ୧୯୨୭ ମସିହା ପର୍ଯ୍ୟନ୍ତ ସୁଭାଷ ଜେଲରେ ରହିଥିଲେ । ୧୯୨୮ ମସିହାରେ ମହାରାଷ୍ଟ୍ର କଂଗ୍ରେସର ସଭାପତି ହେଲେ । ୧୯୨୯ ମସିହାରେ ରାଜନୈତିକ ବନ୍ଦୀ ଦିବସ ଅବସରରେ ସରକାରୀ ଦମନ ନୀତିର ତୀବ୍ର ବିରୋଧ କରି ଧର୍ମଘଟ କରିବାରୁ ରାଜଦ୍ରୋହୀ ବୋଲି ତାଙ୍କୁ ଜେଲ ଦଣ୍ଡ ଦିଆଗଲା । କାରାବାସରେ ଥାଇ ମଧ ୧୯୩୦ ମସିହାରେ ସୁଭାଷ କଲିକତା ମୁନିସିପାଲ କର୍ପୋରେସନ୍‌ର ମେୟର ନିର୍ବାଚିତ ହୋଇଥିଲେ । ୧୯୩୧ ମସିହାରେ କ୍ରାନ୍ତିକାରୀ ସର୍ଦ୍ଦାର ଭଗତସିଂହଙ୍କୁ ଫାଶୀ ଦେବାର ଠିକ୍ ଚାରିଦିନ ପରେ କରାଚୀରେ ଆୟୋଜିତ ହୋଇଥିବା ଅଖିଳ ଭାରତୀୟ ନୌ-ଜଓ୍ୱାନ ଭାରତ ସଭାର ଅଧକ୍ଷ ରୂପେ ଯୋଗଦେଇ ନିଜ ଭାଷଣରେ କହିଥିଲେ ଯେ କଂଗ୍ରେସର ବୁଝାମଣା ଓ ଅହିଂସାର ଦୃଷ୍ଟିକୋଣ ଜରିଆରେ କ'ଣ ଭାରତ ସ୍ୱାଧୀନ ହୋଇପାରିବ । ଯେ ପର୍ଯ୍ୟନ୍ତ ଆମ୍ଭେମାନେ ଉଗ୍ରବାଦୀ ତଥା କ୍ରାନ୍ତିକାରୀ ତତ୍ତ୍ୱଗୁଡ଼ିକୁ ଜାଗ୍ରତ ନକରିବୁ, ସେ ପର୍ଯ୍ୟନ୍ତ ଦେଶରେ ଜାଗୃତି ଓ ସ୍ୱତନ୍ତ୍ରତା ଆସିପାରିବ ନାହିଁ । ହିନ୍ଦୁସ୍ଥାନର ସ୍ୱତନ୍ତ୍ରତାର ଅର୍ଥ ସଂସାର ବ୍ୟାପୀ ସାମ୍ରାଜ୍ୟବାଦୀ ସତ୍ତାର ମୃତ୍ୟୁ । କିଛି ନା କିଛି କ୍ରିୟାତ୍ମକ କାର୍ଯ୍ୟ କରିବା ପାଇଁ ସୁଭାଷ ଆହ୍ୱାନ ଦେଇଥିଲେ ।

ଜେଲରେ ରହି ସୁଭାଷ ଅସୁସ୍ଥ ହୋଇଗଲେ । ଅତଃ ୧୯୩୩ ମସିହାରେ ସେ ୟୁରୋପ ଗଲେ । ବିଏନାରେ ମିସେଜ ମୂଲରଙ୍କ ଆତିଥ୍ୟ ଗ୍ରହଣ କରି ସେ ନିଜର ସୁପ୍ରସିଦ୍ଧ ପୁସ୍ତକ 'ଦି ଇଣ୍ଡିଆନ, ଷ୍ଟ୍ରଗଲ' ଲେଖିଥିଲେ । ୟୁରୋପର ଅନେକ ଦେଶ ବୁଲି ବୁଲି ସୁଭାଷ ବ୍ରିଟିଶ ଭାରତରେ ଭାରତୀୟମାନଙ୍କ ପ୍ରତି ହେଉଥିବା ଅତ୍ୟାଚାର ବିଷୟରେ ପାଶ୍ଚାତ୍ୟ ଦେଶଗୁଡ଼ିକ ସମ୍ମୁଖରେ ପ୍ରକାଶ କରିଥିଲେ । ଭାରତର ସ୍ୱାଧୀନତା ପାଇଁ ଏବଂ ସ୍ୱତନ୍ତ୍ରତା ପାଇଁ ପ୍ରଯତ୍ନ କରିବା ହେବ । ଫ୍ରାନ୍ସ ଓ ଲଣ୍ଡନରେ ମଧ ସେ ସ୍ୱତନ୍ତ୍ରତାର କ୍ରାନ୍ତିକାରୀ ଭାଷଣ ଦେଇଥିଲେ । ୧୯୩୬ ମସିହା ୮ ଅପ୍ରେଲରେ ଭାରତ ଆସୁଥିବା ସମୟରେ ତାଙ୍କୁ ଗିରଫ କରାଗଲା । ଇଂଲଣ୍ଡର ସୁପ୍ରସିଦ୍ଧ ପତ୍ରିକା 'ମଞ୍ଚେଷ୍ଟର ଗାର୍ଡ଼ିୟନ' ପ୍ରକାଶ କଲା ଯେ ଯେତେବେଳେ ଆମେ ଭାଷଣ ଓ ବିଚାରର ସ୍ୱତନ୍ତ୍ରତା ବିଷୟରେ କହୁଛୁ, ସେତେବେଳେ ଆମର ସାମ୍ରାଜ୍ୟର କେତେକ ଅଂଶ ସେନ୍‌ସରର ଭାରି ବୋଝ ତଳେ ଦବି ଯାଇ ଚିତ୍କାର କରୁଛି । ବୋଷଙ୍କ ସହିତ ଯେଉଁ ବ୍ୟବହାର ହେଉଛି ତାହା କ'ଣ ଇଂରେଜ ସରକାରଙ୍କ ନ୍ୟାୟର ଅନୁକୂଳ ଅଥବା ଏହା ସେହି ବସ୍ତୁ ଅଟେ ଯାହା ପାଇଁ ଇଂରେଜ ବିଦେଶୀମାନଙ୍କ ସଭ୍ୟତା ପ୍ରତି ଆଙ୍ଗୁଠି ଟେକୁଛି ।

୧୯୩୮ ମସିହାରେ ଗୁଜରାଟର ହରିପୁରଠାରେ ସୁଭାଷ ଚନ୍ଦ୍ର ବୋଷଙ୍କୁ ଅଖିଳ ଭାରତୀୟ କଂଗ୍ରେସର ସଭାପତି ରୂପେ ନିର୍ବାଚିତ କରାଗଲା । ୧୯୩୯ ମସିହାରେ ସୁଭାଷ ବୋଷ ପଟ୍ଟାଭି ସୀତା ରାମେୟାଙ୍କୁ ହରାଇ କଂଗ୍ରେସର ଅଧକ୍ଷ ରୂପେ ନିର୍ବାଚିତ ହେଲେ । ଯେହେତୁ କି ପଟ୍ଟାଭି ସୀତା ରାମେୟା ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପ୍ରାର୍ଥୀ ହୋଇଥିଲେ । ତେଣୁ ରାମେୟାଙ୍କ ପରାଜୟକୁ ଗାନ୍ଧିଜୀ ନିଜର ପରାଜୟ ବୋଲି ଭାବିଲେ । ପୂର୍ଣ୍ଣ ସ୍ୱରାଜ ନମିଳିବା ପର୍ଯ୍ୟନ୍ତ ସୁଭାଷ ଆନ୍ଦୋଳନ କରିବାକୁ ଚାହୁଁଥିଲେ । କିନ୍ତୁ ଗାନ୍ଧିଜୀ କହୁଥିଲେ ଯେ ଆନ୍ଦୋଳନ ପାଇଁ ଏହା ଉଚିତ ସମୟ ନୁହେଁ । ଏଣୁ ଦୁଇ ମହାନ୍ ନେତାଙ୍କ ମଧରେ ମତଭେଦ ବୃଦ୍ଧି ପାଇଲା । ଅତଃ ୧୯୩୯ ମସିହା ୨୯ ଅପ୍ରେଲରେ





ସୁଭାଷ ବୋଷ କଂଗ୍ରେସ କମିଟିର ଅଧ୍ୟକ୍ଷ ପଦରୁ ଇସ୍ତଫା ଦେଇ ଫରଓ୍ୱାର୍ଡ଼ ବ୍ଲକ୍ ସ୍ଥାପନ କଲେ ।

୧୯୩୯ ମସିହା ୫ ସେପ୍ଟେମ୍ବରରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଭାଇସରାୟ କାହାରି ପରାମର୍ଶ ଗ୍ରହଣ ନକରି ଯୁଦ୍ଧରେ ଭାରତ ସାମିଲ ହେବା କଥା ଘୋଷଣା କରି ଦେଲେ । ସୁଭାଷ ଓ ଫରଓ୍ୱାର୍ଡ଼ ବ୍ଲକ୍ ଏହାର ବିରୋଧ କରିଥିଲେ । ଅତଃ ୧୯୪୦ ମସିହା ୨ ଜୁଲାଇରେ ସୁଭାଷଙ୍କୁ ଜେଲରେ ବନ୍ଦୀ ରଖାଗଲା । ଜେଲର ବାତାବରଣ ଅତି ଦୂଷିତ ଓ ପ୍ରତିକୂଳ ଥିବାରୁ ପରେ ଏଲଗିନ୍ ରୋଡ଼ସ୍ଥିତ ନିଜ ଘରେ ସୁଭାଷଙ୍କୁ ନଜର ବନ୍ଦୀ ରଖାଗଲା । ମାତୃଭୂମିକୁ ପରାଧୀନତାରୁ ମୁକ୍ତ କରିବା ପାଇଁ ସୁଭାଷ ୧୯୪୧ ମସିହା ୨୭ ଜାନୁଆରୀରେ ଇଂରେଜ ପହରେଦାରଙ୍କ ଆଖିରେ ଧୂଳି ଦେଇ ପଠାଣ ବେଶରେ ଚାଲିଗଲେ । ପ୍ରଥମେ ସେ କାବୁଲ ଗଲେ । ତା'ପରେ ସେଠାରୁ ବର୍ଲିନ ଗଲେ । ବର୍ଲିନରେ ପହଞ୍ଚିବା ପରେ ହିଟଲରଙ୍କ ସହିତ ସାକ୍ଷାତ୍ କରିଥିଲେ । ଜର୍ମାନୀରେ ଲଢୁଥିବା ୪୫ ହଜାର ଭାରତୀୟ ସୈନିକଙ୍କୁ ସୁଭାଷ ଆତ୍ମ ସମର୍ପଣ କରାଇ ସଂଗଠିତ କଲେ । ଅପରପକ୍ଷରେ ରାସବିହାରୀ ବୋଷ ପୂର୍ବ ଏସିଆରେ ଥିବା ହିନ୍ଦୁସ୍ଥାନୀମାନଙ୍କୁ ସଂଗଠିତ କରି ଆଜାଦ୍ ହିନ୍ଦ୍ ସଂଘ ସ୍ଥାପନ କରିଥିଲେ ।

୧୯୪୩ ମସିହା ୨୦ ଜୁନ୍‌ରେ ସୁଭାଷବାବୁ ବୁଡ଼ା ଜାହାଜରେ ଜର୍ମାନୀରୁ ଟୋକିଓରେ ପହଞ୍ଚିଥିଲେ । ୧୯୪୩ ମସିହା ୫ ଜୁଲାଇରେ ଆଜାଦ୍ ହିନ୍ଦ୍ ଫୌଜର ଆନୁଷ୍ଠାନିକ ଘୋଷଣା କରାଯାଇଥିଲା । ଯାହାର ସେନାପତି ରୂପେ ସୁଭାଷ ଚନ୍ଦ୍ର ବୋଷଙ୍କୁ ଅବସ୍ଥାପିତ କରାଯାଇଥିଲା । ୧୯୪୩ ମସିହା ୨୨ ଅକ୍ଟୋବରରେ ଝାନ୍ସୀରାଣୀଙ୍କ ଜନ୍ମଦିନ ଅବସରରେ ମହିଳାମାନଙ୍କୁ ନେଇ ଏକ ସେନାବାହିନୀ ଗଠନ କରାଗଲା । ଯାହାର ନାମ ରାଣୀ ଝାନ୍ସୀ ରେଜିମେଣ୍ଟ ରଖାଗଲା ।

୧୯୪୩ ମସିହା ୨୫ ଅକ୍ଟୋବର ଦିନ ଆଜାଦ୍ ହିନ୍ଦ୍ ଫୌଜ୍ ବ୍ରିଟେନ ଓ ସଂଯୁକ୍ତ ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ୧୯୪୩ ମସିହା ୮ ନଭେମ୍ବରରେ ଜାପାନ ସରକାର ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜକୁ ଆଜାଦ୍ ହିନ୍ଦ୍ ଫୌଜର ଅସ୍ଥାୟୀ ସରକାର ହାତରେ ସମର୍ପଣ କରି ଦେଲା । ୧୯୪୪ ମସିହା ୧୮ ମାର୍ଚ୍ଚରେ ଆଜାଦ୍ ହିନ୍ଦ୍ ଫୌଜ ବର୍ମା ଓ ଭାରତର ସୀମା ଅତିକ୍ରମ କରି ଭାରତ ଭୂମିରେ ପାଦରଖି କୋହିମା ଓ ମଣିପୁର ଉପରେ ବିଜୟ ପ୍ରାପ୍ତ କରିନେଲେ । ସେତିକିବେଳେ ସୁଭାଷ ବାବୁଙ୍କୁ ନେତାଜୀ ପଦବୀ ମିଳିଲା । ସେ ଫୌଜ ସମ୍ମୁଖରେ ଆହ୍ୱାନ ଦେଇ କହିଥିଲେ ଯେ 'ତୁମେ ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି' । ହଜାର ହଜାର ପୁରୁଷ ଓ ମହିଳା ଭାରତକୁ ସ୍ୱାଧୀନତା ଆଣିବା ପାଇଁ ନିଜର ଧନ-ମନ-ପ୍ରାଣ ନେତାଜୀଙ୍କୁ ଦେଇ ଦେଲେ । ଘାସ ଖାଇ ଖାଇ ବାହାଦୂର ସୈନ୍ୟମାନେ ଯୁଦ୍ଧ କଲେ ସେତିକିବେଳେ ହିରୋସୀମା-ନାଗାସାକି ଉପରେ ପରମାଣୁ ବିସ୍ଫୋଟ କରାଯାଇଥିଲା । ଫଳରେ ୧୯୪୫ ମସିହା ୯ ଅଗଷ୍ଟରେ ଜାପାନ ମିତ୍ର ରାଷ୍ଟ୍ର ସମ୍ମୁଖରେ ଆତ୍ମ ସମର୍ପଣ କରିଥିଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଯୁଦ୍ଧ ଦ୍ୱାରା ଜଳିଥିବା କ୍ରାନ୍ତିର ନିଆଁ ସାରା ଭାରତରେ ଜଳିବା ସହିତ ପୂର୍ବ ଏସିଆରେ ଥିବା ଭାରତୀୟମାନଙ୍କ ମନରେ ମଧ୍ୟ ଅଙ୍କିତ ହୋଇଗଲା । ଭାରତକୁ ସ୍ୱାଧୀନତା ଆଣିବାରେ ସେମାନଙ୍କର ଯୋଗଦାନ ମଧ୍ୟ ଅବିସ୍ମରଣୀୟ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସମାନତା ଓ ବିଶ୍ୱ ବନ୍ଧୁତ୍ୱର ଭାବନାର ଯେଉଁ ସ୍ୱପ୍ନ ସ୍ୱତନ୍ତ୍ର ଭାରତ ପାଇଁ ଦେଖିଥିଲେ ତାହାର ଆବଶ୍ୟକତା ଆଜି ମଧ୍ୟ ରହିଛି ।

କ୍ୱାଟର ନଂ- ୨ ଆର୍.ଏ. (ଫ୍ଲାଟ୍) ୬/୧
ୟୁନିଟ୍- ୯ ଫ୍ଲାଟ, ଭୁବନେଶ୍ୱର-୨୨

---



# ବିଶ୍ୱଜିତ୍ ଦାସଙ୍କ ବିୟୋଗରେ ସୂଚନା ଓ ଲୋକ ସଂପର୍କ ଭବନରେ ଶୋକସଭା

ସୂଚନା ଓ ଲୋକ ସଂପର୍କ ବିଭାଗର ପୂର୍ବତନ ଅତିରିକ୍ତ ନିର୍ଦ୍ଦେଶକ ତଥା ଓଡ଼ିଶାର ପ୍ରଖ୍ୟାତ ନାଟ୍ୟକାର ଶ୍ରୀ ବିଶ୍ୱଜିତ୍ ଦାସଙ୍କ ବିୟୋଗରେ ଓଡ଼ିଶା ସୂଚନା ସେବା ସଂଘ ପକ୍ଷରୁ ଗଭୀର ଶୋକ ପ୍ରକାଶ କରାଯାଇଛି । ଏହି ଉଦ୍ଦେଶ୍ୟରେ ସୂଚନା ଓ ଲୋକ ସଂପର୍କ ବିଭାଗର ସମ୍ମିଳନୀ କକ୍ଷରେ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଶୋକସଭାରେ ସର୍ବଶ୍ରୀ ଶଶାଙ୍କ ଶେଖର ପଣ୍ଡା, ଯୁଗ୍ମ ନିର୍ଦ୍ଦେଶକ, ନିରଂଜନ ସେଠୀ, ଉପନିର୍ଦ୍ଦେଶକ, ଓମ୍ ପ୍ରକାଶ ମହାପାତ୍ର, ଉପଶାସନ ସଚିବ, ପୃଥ୍ୱୀଶ କୁମାର ସିଂ, ସଭାପତି, ସୂର୍ଯ୍ୟ ମହାନ୍ତି, ସଂପାଦକ, ତାଜୁଦ୍ଦିନ୍ ଅହମ୍ମଦ, ଇନ୍ଦ୍ରମଣି ମହାଳିକ ପ୍ରମୁଖ ତାଙ୍କ ଗୁଣାବଳୀ ବର୍ଣ୍ଣନା କରି ସ୍ୱର୍ଗତଃ ଦାସଙ୍କ ପ୍ରତି ଗଭୀର ଶ୍ରଦ୍ଧାଂଜଳି ଅର୍ପଣ କରିବା ସହିତ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି ନିମନ୍ତେ ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରିଥିଲେ ।



# ଚନ୍ଦ୍ରଶେଖର ସ୍ମରଣେ

କୃଷ୍ଣଚନ୍ଦ୍ର ସୁଆର

**ଭା**ରତବର୍ଷକୁ ବିଦେଶୀ କବଳରୁ ମୁକ୍ତ କରିବା ସହ ପୂର୍ଣ୍ଣ ସ୍ୱାଧୀନତା ଆଣିବା ଲକ୍ଷ୍ୟରେ ଯେଉଁମାନେ ଆନ୍ଦୋଳନରେ ଭାଗ ନେଇ ବିଭିନ୍ନ ଜେଲରେ ବନ୍ଦୀ ଜୀବନ କାଟିଥିଲେ ଏବଂ ଦେଶର ସ୍ୱାଧୀନତା ପାଇଁ ଯାହାଙ୍କ ହୃଦୟ ଉଦ୍‌ବେଳିତ ହୋଇ ଉଠିଥିଲା ଓ ସ୍ୱାଧୀନ ଦେଶର ଅବସ୍ଥା ଦେଖି ଯେ ଅଧିକ ମ୍ରିୟମାଣ ହୋଇ ଉଠିଥିଲେ, ସେହି ପ୍ରାତଃ ସ୍ମରଣୀୟ ସଂଗ୍ରାମୀମାନଙ୍କ ମଧ୍ୟରେ ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ, ସାରସ୍ୱତ ସାଧକ ଓ ସାମ୍ବାଦିକ ସ୍ୱର୍ଗତଃ ଚନ୍ଦ୍ରଶେଖର ମହାପାତ୍ର ଥିଲେ ଅନ୍ୟତମ ।

ସେ ଥିଲେ ଏକାଧାରରେ ଶାନ୍ତ, ଶିଷ୍ଟ, ସରଳ ସ୍ୱଭାବର ଏବଂ ଅତ୍ୟନ୍ତ ମିଷ୍ଟଭାଷୀ ଓ ନିରାଡ଼ମ୍ବର ଜୀବନଯାପନ କରିବା ସାଂଗକୁ ଅମାୟିକ ବ୍ୟକ୍ତିତ୍ୱର ଅଧିକାରୀ ।

୧୯୪୨ର ଐତିହାସିକ ଭାରତଛାଡ଼ ଆନ୍ଦୋଳନରେ ସେ ସାମିଲ ହୋଇ ତିନି ବର୍ଷ ଲାଗି ଜେଲ ଯାଇଥିଲେ । ଚନ୍ଦ୍ରଶେଖରଙ୍କୁ ଆମ ରାଜ୍ୟର ଜଣେ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ ବର୍ଷୀୟାନ ସାମ୍ବାଦିକ ଭାବରେ ସମସ୍ତେ ଜାଣନ୍ତି । ନିର୍ଭୀକ ସାମ୍ବାଦିକ ଭାବରେ ତାଙ୍କର ବେଶ୍ ଖ୍ୟାତି ଥିଲା । ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ସେ ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ଲେଖନୀ ଚାଳନା କରିଥିଲେ । ମୂଲ୍ୟବୋଧ ଭିତ୍ତିକ ସାମ୍ବାଦିକତାରେ ଅଗାଧ ବିଶ୍ୱାସ ରଖିଥିବା ସ୍ୱର୍ଗତଃ ମହାପାତ୍ର ଗତବର୍ଷ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଭାବେ ଅଗଷ୍ଟ ୯ ତାରିଖ କ୍ରାନ୍ତି ଦିବସରେ ରାଷ୍ଟ୍ରପତିଙ୍କଠାରୁ ସମ୍ବର୍ଦ୍ଧନା ଗ୍ରହଣ କରିଥିଲେ ।

କଟକ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସଂଗଠନର ସଭାପତି ଭାବେ କାର୍ଯ୍ୟ କରିବା ସହିତ ରାଜ୍ୟ ସ୍ୱାଧୀନତା ସଂଗ୍ରାମ ସମିତି ଓ କଂଗ୍ରେସ ସ୍ୱାଧୀନତା ସଂଗ୍ରାମୀ ସେଲ୍‌ର ସେ କର୍ମକର୍ତ୍ତା ଥିଲେ । ଏତଦ୍‌ବ୍ୟତୀତ ପ୍ରେସ୍ ଏକାଡେମୀ ଗଠନ ଓ ସାମ୍ବାଦିକମାନଙ୍କୁ ପେନସନ୍ ପ୍ରଦାନ ପାଇଁ ସେ ବଳିଷ୍ଠ ଯୁକ୍ତି ଉପସ୍ଥାପନା କରିବା ସାଂଗକୁ ଏ ଦିଗରେ ତାଙ୍କ ସଂଗ୍ରାମ ଜାରି ରହିଥିଲା । ସେ ଉତ୍କଳ ସାମ୍ବାଦିକ ସଂଘର ଆଜୀବନ ସଦସ୍ୟ ଥିଲେ ।

ସାମ୍ବାଦିକତା ଉପରେ ତାଙ୍କର ଲିଖିତ ପୁସ୍ତକ ଓଡ଼ିଶା ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ପୁସ୍ତକ ଯଥାକ୍ରମେ 'ସମ୍ବାଦପତ୍ର ଓ ସାମ୍ବାଦିକତା' 'ଓଡ଼ିଆ ସମ୍ବାଦପତ୍ରର ଇତିହାସ' ବ୍ରହ୍ମପୁର ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ସାମ୍ବାଦିକ ପାଠ୍ୟକ୍ରମରେ ପ୍ରଚଳିତ ।

ଜଣେ ଆଜୀବନ ଉଚ୍ଚକୋଟୀର ସାମ୍ବାଦିକ ଥିବା ଯୋଗୁଁ ଦୈନିକ କାଗଜ ପରିଚାଳନା, ପ୍ରକାଶନ ଓ ସଂପାଦନା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ ।

ସ୍କୁଲ ପାଠପଢ଼ା ସମୟରୁ ସ୍ୱାଧୀନତା ସଂଗ୍ରାମ ସହ ଜଡ଼ିତ ହୋଇଥିଲେ ଚନ୍ଦ୍ରଶେଖର । ପୁରୀର ସୁଆର ସାହିସ୍ଥିତ ବଡ଼ ଭାଇଙ୍କ ଘରେ ରହି ଚନ୍ଦ୍ରଶେଖର ସ୍ୱାଧୀନତା ଆନ୍ଦୋଳନର ଜଣେ ସକ୍ରିୟ କର୍ମୀ ଭାବେ କାର୍ଯ୍ୟ କରୁଥିଲେ । ଭାରତଛାଡ଼ ଆନ୍ଦୋଳନ ବେଳେ ଓ ପରବର୍ତ୍ତୀ ସମୟରେ ତାଙ୍କୁ ତିନି ଥର କାରାବରଣ କରିବାକୁ ପଡ଼ିଥିଲା । ସର୍ବପ୍ରଥମେ ୧୯୪୨ ମସିହା ଅଗଷ୍ଟ ମାସରେ ଭାରତଛାଡ଼ ସଂଗ୍ରାମରେ ପୁରୀରେ ଗିରଫ ହୋଇ ଛଅ ମାସ ପୁରୀ ଜେଲରେ ରହିଥିଲେ । ଦୁଇଜଣ ରାଜନୈତିକ ବନ୍ଦୀଙ୍କୁ ଖଲାସ କରିବା ପାଇଁ ଝଡ଼ ସମୟରେ ଜେଲ କର୍ମଚାରୀ ସେମାନଙ୍କୁ ଖାଦ୍ୟ ଦେବାକୁ ସେମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଜେଲକାନ୍ଥକୁ ବାଡ଼େଇ ଥିଲେ । ମାତ୍ର ଜେଲ ଭାଙ୍ଗିବା ଉଦ୍ୟମ କରିଥିବା ଅଭିଯୋଗରେ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀ ପ୍ରମୁଖଙ୍କ ସହ ତାଙ୍କୁ ଛଅ ମାସ ସଶ୍ରମ କାରାଦଣ୍ଡ ହୋଇଥିଲା । ସେମାନଙ୍କୁ ବ୍ରହ୍ମପୁର ଜେଲକୁ ବଦଳି କରାଯାଇଥିଲା ।

ବ୍ରହ୍ମପୁରର ସେଣ୍ଟ୍ରାଲ ଜେଲରେ ସ୍ୱାଧୀନତା ଦିବସ ପାଳନ ପାଇଁ ସେମାନେ ଜାତୀୟ ପତାକା (ଚରଖା ଚିହ୍ନ) ଉତ୍ତୋଳନ କରିବାରୁ ପୁଲିସ୍ ଲାଠି ଚାଳନା କରିଥିଲେ । ସେଥିରେ ସେ ବହୁତ ଆଘାତ ପାଇଥିଲେ ।

ଏହି ପ୍ରତିଭା ସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ୧୯୨୬ ମସିହା ନଭେମ୍ବର ମାସ ୬ ତାରିଖରେ ପୁରୀ ଜିଲ୍ଲାର ସତ୍ୟବାଦୀ ଥାନା ଅନ୍ତର୍ଗତ ବିଶ୍ୱନାଥପୁର ଗ୍ରାମରେ । ତାଙ୍କ ପିତା ସ୍ୱର୍ଗତଃ ଦାମୋଦର ମହାପାତ୍ର ଥିଲେ ଜଣେ ନୈଷ୍ଠିକ ବ୍ରାହ୍ମଣ ଓ ମାତାଙ୍କ ନାମ ଶ୍ରୀମତୀ ମାଳତୀ ଦେବୀ । ତାଙ୍କର ପୁରୀରେ ଘର ନଥିଲା । ତାଙ୍କ ପିତା ଖଣ୍ଡିଏ ଛୋଟ ଘର ହେରାଗୋହିରୀ ସାହିରେ ୩୦୦ ଟଙ୍କାରେ ଖରିଦ କରି ସେଠାରେ ତାଙ୍କ ପରିବାରକୁ ଚଳାଉଥିଲେ । ଏହି ମାଟିକାନ୍ଥ ଓ ଚାଳ





ଛପର ଦୁଇବଖରା ବିଶିଷ୍ଟ ଘରେ ବାଲ୍ୟକାଳେ ବହୁ ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟରେ ତାଙ୍କ ଜୀବନ କୁସୁମ ବିକଶିତ ହୋଇଥିଲା । ଏଠାରେ ତାଙ୍କ ବାପା, ମା' ଓ ବଡ଼ଭାଇ, ଭାଉଜ ସହ ଚନ୍ଦ୍ରଶେଖର ରହୁଥିଲେ । ଛୋଟ ଘରେ ରହିବା ସମ୍ଭବପର ନହେବାରୁ ପୁରୀ ସୁଆର ସାହିରେ ଘର କିଣି ତାଙ୍କ ଭାଇ ଗଂଗାଧର ସେଠାରେ ରହିଥିଲେ । ତେବେ ତାଙ୍କ ଭାଇ ଶ୍ରୀ ଗଂଗାଧର ମହାପାତ୍ର ଜଣେ ବିଶିଷ୍ଟ ରାଜନୀତିଜ୍ଞ ଓ ପୂର୍ବତନ ମନ୍ତ୍ରୀ ଭାବେ ଓଡ଼ିଶାରେ ସୁପ୍ରତିଷ୍ଠିତ । ତାଙ୍କୁ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଶ୍ରଦ୍ଧାରେ 'ଗଙ୍ଗୁଭାଇନା' ବୋଲି ଡାକନ୍ତି ।

ଭାରତଛାଡ଼ ଆନ୍ଦୋଳନ ପୂର୍ବରୁ ସେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଭାବେ ଆଚାର୍ଯ୍ୟ ହରିହରଙ୍କ ପ୍ରେରଣାରେ ପୁରୀର ବାଲିସାହି ହରିଜନ ବସ୍ତିରେ ପ୍ରଥମେ ଏକ ନୈଶ ବିଦ୍ୟାଳୟ ଆରମ୍ଭ କରିଥିଲେ । କାରଣ ଏହି ବସ୍ତିରେ ବହୁ ହରିଜନ ପୁରୁଷ ଏବଂ ମହିଳା ନିରକ୍ଷର ଥିଲେ । ତତ୍‌ପରେ ପରେ କେତେକ ସହପାଠୀଙ୍କ ସହଯୋଗରେ ବାଲିସାହି ହରିଜନ ବସ୍ତିରୁ ଆରମ୍ଭ କରି ନରେନ୍ଦ୍ର ପୋଖରୀ, ମାର୍କଣ୍ଡେଶ୍ୱର ଓ ନୋଳିଆ ସାହି ହରିଜନ ବସ୍ତିରେ ନୈଶ ବିଦ୍ୟାଳୟମାନ ଆରମ୍ଭ କରିଥିଲେ ।

ନୀରକ୍ଷରତା ଦୂରୀକରଣ ସହ ସେମାନଙ୍କର ଅଭାବ ଅସୁବିଧା ବୁଝିବା ସଂଗେସଂଗେ ଆର୍ଥିକ ସ୍ୱଚ୍ଛଳତାକୁ ଗୁରୁତ୍ୱ ଦେବା ନିମିତ୍ତ ୧୯୪୧ ମସିହାରେ ସେମାନଙ୍କୁ ସଂଗଠିତ କରିବାକୁ ଉଦ୍ୟମ ଆରମ୍ଭ କରିଥିଲେ । ସେତେବେଳେ ପୁରୁଷ ହରିଜନ ଶ୍ରମିକମାନେ ମ୍ୟୁନିସିପାଲଟିରୁ ମାସିକ ୧୨ ଟଙ୍କା ଏବଂ ମହିଳା ହରିଜନ ଶ୍ରମିକମାନେ ମାସକୁ ୧୦ ଟଙ୍କା ଦରମା ପାଉଥିଲେ । ସେମାନଙ୍କୁ ସଂଗଠିତ କରି ଦରମା ବୃଦ୍ଧି ଓ ଚାକିରି ନିୟମିତ କରିବା ପାଇଁ ସେ ଧର୍ମଘଟ କରିଥିଲେ । ସେମାନେ ପାଇଖାନା ଓ ରାସ୍ତାଘାଟ ସଫା ନକରି ଧର୍ମଘଟ କରିବା ଦ୍ୱାରା ସାରା ସହର ଅପରିଷ୍କାର ହୋଇ ରହିଲା ଏବଂ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହେଲା । ଫଳରେ ଆଚାର୍ଯ୍ୟ ହରିହରଙ୍କ ମଧ୍ୟସ୍ଥତାରେ ମ୍ୟୁନିସିପାଲଟି କର୍ତ୍ତୃପକ୍ଷ ପୁରୁଷ ଓ ମହିଳା ହରିଜନ ଶ୍ରମିକମାନଙ୍କର ଦରମା ବୃଦ୍ଧି କରିଥିଲେ । ଧର୍ମଘଟରେ ସହଯୋଗ କରିଥିବା କମ୍ୟୁନିଷ୍ଟ ବନ୍ଧୁମାନେ ଏଥିରେ ଅସନ୍ତୁଷ୍ଟ ହୋଇଥିଲେ । ଓଡ଼ିଶାରେ ହରିଜନମାନଙ୍କୁ ସଂଗଠିତ କରି ଆନ୍ଦୋଳନ ପ୍ରଥମେ ପୁରୀରେ ସେ ଆରମ୍ଭ କରିଥିଲେ । ଏହା ପୂର୍ବରୁ 'ହରିଜନ ସେବକ ସଂଘ' ଗଠିତ ହୋଇଥିଲା । ଏହା ରାଜ୍ୟସ୍ତରୀୟ ସଂଘ ଥିଲା । ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପ୍ରତିଷ୍ଠିତ ନିଖିଳ ଭାରତ ହରିଜନ ସେବକ ସଂଘ ଓଡ଼ିଶା ଶାଖାର ଆଚାର୍ଯ୍ୟ ହରିହର ଥିଲେ ସଭାପତି । ଏହାପରେ ବ୍ରହ୍ମପୁରରେ ସମାଜସେବୀ ମୋହନ ନାୟକ ହରିଜନ ସଂଗଠନ ଆରମ୍ଭ କରିଥିଲେ । ହରିଜନ ଶ୍ରମିକ ଆନ୍ଦୋଳନ ଯୋଗୁଁ ଚନ୍ଦ୍ରଶେଖର ୧୯୪୨ ମସିହା ଅଗଷ୍ଟ ୧୬ ତାରିଖରେ ଗିରଫ ହୋଇ ବ୍ରହ୍ମପୁର ଜେଲରୁ ୧୯୪୫ ମସିହା ଜାନୁଆରୀ ପହିଲାରେ ଖଲାସ ହୋଇଥିଲେ ।

୧୯୪୮ ମସିହା ଜାନୁଆରୀ ୩୦ ତାରିଖରେ ଜାତିର ପୂଜ୍ୟପିତା ମହାତ୍ମା ଗାନ୍ଧୀଙ୍କ ନିହତ ହେବାପରେ ପରେ ସାରାଦେଶରେ ତାଙ୍କ ବିୟୋଗରେ ଶୋକ ପାଳନ କରାଯାଇଥିଲା । ତାଙ୍କର ଅସ୍ଥି ସମସ୍ତ ରାଜ୍ୟରେ ଫେବୃଆରୀ ୧୨ ତାରିଖ କୌଣସି ନଦୀ ବା ସମୁଦ୍ରରେ ବିସର୍ଜନ କରିବାକୁ ସ୍ଥିର ହୋଇଥିଲା । ତଦନୁସାରେ ବଙ୍ଗୋପସାଗରରେ ତାଙ୍କର ଅସ୍ଥି ବିସର୍ଜନ କରାଯାଇଥିଲା । ଏହି ଉପଲକ୍ଷେ ପୁରୀ ସମୁଦ୍ର କୂଳରେ ବିରାଟ ଜନସମାବେଶ ହୋଇଥିଲା । ତତ୍‌କାଳୀନ ରାଜ୍ୟପାଳ ତାଙ୍କର ଅସ୍ଥି ବିସର୍ଜନ କରିଥିଲେ ।

ସେହିଦିନ ଶ୍ରୀଜଗନ୍ନାଥ ମନ୍ଦିରରେ ତାଙ୍କରି ନେତୃତ୍ୱରେ ହରିଜନଙ୍କୁ ପ୍ରବେଶ କରିବା ପାଇଁ ଏକ ଶୋଭାଯାତ୍ରାରେ ନେଇଥିଲେ । ଏଥିପାଇଁ ପୁରୀର ତତ୍‌କାଳୀନ ରାଜା ଓ ସେବାୟତମାନଙ୍କ ସହିତ ପୂର୍ବରୁ ମୁଖ୍ୟମନ୍ତ୍ରୀ ଆଲୋଚନା କରିଥିଲେ । ସେମାନେ ଏଥିରେ ବାଧା ନ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ଶାନ୍ତିପୂର୍ଣ୍ଣ ଭାବରେ ହରିଜନଙ୍କୁ ମନ୍ଦିର ପ୍ରବେଶ କରାଇବା ପାଇଁ ଆଲୋଚନାରେ ସମସ୍ତେ ସମ୍ମତି ଜଣାଇଥିଲେ । ୧୯୩୪ ମସିହାରେ ହରିଜନ ପଦଯାତ୍ରା ପାଇଁ ମହାତ୍ମା ଗାନ୍ଧୀ ପୁରୀ ଆସିବା ପୂର୍ବରୁ ପ୍ରଚାରିତ ହୋଇଥିଲା । ମହାତ୍ମା ଗାନ୍ଧୀ ପୁରୀ ଆସି ହରିଜନଙ୍କୁ ମନ୍ଦିରରେ ପ୍ରବେଶ କରାଇବେ ବୋଲି ଗୁଜବ ପ୍ରଚାରିତ ହୋଇଥିଲା । ଏହାର ବିରୋଧ କରିବା ପାଇଁ ମହାତ୍ମା ଗାନ୍ଧୀ ଆସୁଥିବା ଟ୍ରେନ ପହଞ୍ଚିଲା ବେଳକୁ କେତେକ ସେବାୟତ ଲାଠି ଧରି ସେଠାରେ ଉପସ୍ଥିତ ଥିଲେ । ସେମାନେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରାର ଉଦ୍ଦେଶ୍ୟ ଜାଣିନଥିଲେ । ହରିଜନଙ୍କ ସେବା ଉଦ୍ଦେଶ୍ୟରେ ଗାନ୍ଧିଜୀ ପଦଯାତ୍ରା ଆରମ୍ଭ କରୁଛନ୍ତି । ସେବାୟତମାନେ ବିରୋଧ କଲେ, ସେ ହରିଜନଙ୍କୁ ନେଇ ମନ୍ଦିରରେ ପ୍ରବେଶ କରିବା ପ୍ରଶ୍ନ ଉଠୁ ନାହିଁ ।

ତତ୍‌ପରେ ପରେ ତାଙ୍କର ସାମ୍ବାଦିକତା ଜୀବନ ଆରମ୍ଭ ହୋଇଥିଲା । ୧୯୪୫ ମସିହାରୁ ବୃତ୍ତିଗତ ଭାବେ ସେ ଓଡ଼ିଶାର ପ୍ରଥମ ଦୈନିକ ସମ୍ବାଦପତ୍ର 'ଦୈନିକ ଆଶା' ଓ ପୁରୀ ପ୍ରତିନିଧିଭାବେ କାର୍ଯ୍ୟ ଆରମ୍ଭ କରିଥିଲେ । ସେହି ବର୍ଷ ମେ ମାସରେ 'ଉତ୍କଳ ସାମ୍ବାଦିକ ସଂଘ' ପ୍ରତିଷ୍ଠା ହୋଇଥିଲା ଓ ସେ ଏହାର 'ସଂପାଦକ' ହୋଇଥିଲେ ।

'ଆଶା' ସହିତ ତାଙ୍କର ସଂପର୍କକୁ ବର୍ଣ୍ଣନା କରିବାକୁ ଯାଇ ବର୍ଷୀୟାନ ସାମ୍ବାଦିକ ଚନ୍ଦ୍ରଶେଖର କହନ୍ତି - 'ଆଶାର ଜନକ ଶଶିଭୂଷଣ ମୋ ବଡ଼ ମାଉସୀଙ୍କ ପୁଅ - 'ଭାଇନା' । ମୁଁ ମୋ ବୋଉଙ୍କ ସହିତ ପ୍ରତିବର୍ଷ ଥରେ ଦି'ଥର ଶଶି ଭାଇନାଙ୍କ ଘରକୁ ବ୍ରହ୍ମପୁର ଯାଏ । ମାତ୍ର ମୋତେ ୧୪ ବର୍ଷ ହେବା ପର୍ଯ୍ୟନ୍ତ (୧୯୬୦ ପର୍ଯ୍ୟନ୍ତ) ଆଶା ସଂପର୍କରେ କିଛି ଜାଣିନଥିଲି । ବ୍ରହ୍ମପୁରରେ ଓଡ଼ିଆ ଲୋକଙ୍କ ଅବସ୍ଥା ଯାହା ଦେଖିଥିଲି ଓ ଶୁଣିବା ସୁଯୋଗ ପାଇଥିଲି ତାହା ମୋର ମନେ ନାହିଁ । ୧୯୨୮ ଏପ୍ରିଲ ୧୩ ତାରିଖରେ ସାପ୍ତାହିକ ଆଶା ଦୈନିକ ଆଶାରେ ପରିଣତ ହେବାର ବର୍ଷକ ଆଗରୁ ୧୯୨୭ରେ ମୁଁ ଜଣେ କର୍ମଚାରୀ ରୂପେ ଆଶା ପ୍ରେସ୍‌ରେ ଯୋଗଦେଇ ବ୍ରହ୍ମପୁରର ସ୍ଥାୟୀ ବାସିନ୍ଦା ରୂପେ ଏ ପର୍ଯ୍ୟନ୍ତ ରହିଛି ।'

ସେ ସମୟରେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ସରକାରଙ୍କ ଅଧୀନ ଥିଲା । ଛତ୍ରପୁର ଗଂଜାମ ଜିଲ୍ଲାର ରାଜଧାନୀ ହେଲାପରେ, ସେଠାରେ ସବୁ ବଡ଼ ବଡ଼ ପଦବୀରେ ଆନ୍ଧ୍ରମାନେ ଅଧିଷ୍ଠିତ ହେଲେ । ଗଞ୍ଜାମ





ଜିଲ୍ଲାପାଳ ରୂପେ ଯେଉଁ ଶ୍ୱେତାଙ୍ଗ ସେଠାରେ ଥିଲେ ସେ ଓଡ଼ିଆମାନଙ୍କ ସମ୍ବନ୍ଧେ କୌଣସି ଖବର ଶୁଣିବା ସୁଯୋଗ ପାଉ ନଥିଲେ । କାରଣ କଲେକ୍ଟେରିଏଟ୍‌ରେ ଯେଉଁ କର୍ମଚାରୀମାନେ ଥିଲେ, ସେମାନେ ଆନ୍ଧ୍ର ଥିବା ହେତୁ ଓଡ଼ିଆମାନଙ୍କ କଥା ଜିଲ୍ଲାପାଳଙ୍କ କାନକୁ ଯାଉନଥିଲା । ଶଶିଭୂଷଣ ରଥ ତାହା ଲକ୍ଷ୍ୟ କରି, ସେ ସୁବିଧା ହାସଲ ଉଦ୍ଦେଶ୍ୟରେ ସାପ୍ତାହିକ ଆଶାରେ ଲେଖାଲେଖି ଆରମ୍ଭ କଲେ ।

ସେତେବେଳେ କେବଳ ଗଞ୍ଜାମରେ ନୁହେଁ, ସମଗ୍ର ଉତ୍କଳ ପ୍ରଦେଶରେ ଖବରକାଗଜ ପ୍ରକାଶ ପାଉ ନଥିଲା । ଏଣୁ ସାପ୍ତାହିକ 'ଆଶା' ହେଲା ସମଗ୍ର ଉତ୍କଳରେ ଓଡ଼ିଆ ଜାତିର ପ୍ରଥମ ସମ୍ବାଦପତ୍ର । ଏହା ପୂର୍ବରୁ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସଂପାଦନାରେ ବଡ଼ଖେମଣ୍ଡି ରାଜବାଟୀରୁ ଓ ପରେ ଖଲିକୋଟ ରାଜାଙ୍କ ଗ୍ରୀଷ୍ମ ନିବାସ ରମ୍ଭା ରାଜଭବନରୁ 'ଗଞ୍ଜାମ ଗୁଣ ଦର୍ପଣ' ନାମରେ ଏକ ପାକ୍ଷିକ ଖବର କାଗଜ, ଅଳ୍ପ ସମୟ ପ୍ରକାଶ ପାଇବା ପରେ ବନ୍ଦ ହୋଇଯାଇଥିଲା । ସାପ୍ତାହିକ ଆଶା ପ୍ରକାଶ ପାଇବା ପରେ ବ୍ରହ୍ମପୁରର ଓଡ଼ିଆମାନେ ଉତ୍ସାହିତ ହେଲେ । କ୍ରମେ ଓଡ଼ିଆ ଲୋକଙ୍କ ସାହସ, ସ୍ୱାତନ୍ତ୍ର୍ୟ ବୃଦ୍ଧି ପାଇଲା । ବ୍ରହ୍ମପୁରର ବ୍ୟବସାୟ କ୍ଷେତ୍ରରେ ଓଡ଼ିଆମାନେ ପ୍ରବେଶ ଲାଭ କରିବା ସୁବିଧା ପାଇଲେ । କହିବାକୁ ଗଲେ ସାପ୍ତାହିକ ଆଶା ବ୍ରହ୍ମପୁରରେ ଅବହେଳିତ ଓଡ଼ିଆ ଜାତିର ଥିଲା ପ୍ରଥମ ଉନ୍ମେଷ ।' (ବ୍ରହ୍ମପୁର ସହରର ଐତିହାସିକ ଭିତ୍ତିଭୂମି)

ଦୀର୍ଘ ଦିନ ଧରି ସେ ଦୈନିକ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ସହିତ ମଧ୍ୟ ସଂଶ୍ଳିଷ୍ଟ ଥିଲେ । ସେଠାରେ ଜଣେ ଦକ୍ଷ ସହସଂପାଦକ, ବାର୍ତ୍ତା ସଂପାଦକ ଓ ସଂପାଦକ ଭାବେ କାର୍ଯ୍ୟକରି ଆସିଥିଲେ । ବିଶେଷକରି ଡଃ ମହତାବ ତାଙ୍କ ଦେହାବସାନର କିଛି ମାସ ପୂର୍ବରୁ ନୂତନ ସଂପାଦକ ଦାୟିତ୍ୱ ଅର୍ପଣ କରିବାରେ ଚନ୍ଦ୍ରଶେଖର ପ୍ରଜାତନ୍ତ୍ର ଅନୁଷ୍ଠାନରୁ ଅବ୍ୟାହତି ନେବା ପରେ 'ଦୈନିକ ଆଶା'ର ସଂପାଦକ ଭାବେ ଦାୟିତ୍ୱ ନେଇଥିଲେ । ଗଂଜାମର ପୂର୍ବତନ ମନ୍ତ୍ରୀ ତଥା ବ୍ରହ୍ମପୁର ପୌରପାଳ ସ୍ୱର୍ଗତଃ ବୃନ୍ଦାବନ ନାୟକ ସେତେବେଳେ ଦୈନିକ ଆଶାର ପରିଚାଳନା ଦାୟିତ୍ୱରେ ଥିଲେ । ଚନ୍ଦ୍ରଶେଖର ଏଠାରେ ପ୍ରାୟ ପାଞ୍ଚବର୍ଷରୁ ଊର୍ଦ୍ଧ୍ୱ ସଂପାଦନା କାର୍ଯ୍ୟ ତୁଲାଇବା ପରେ ଶ୍ରୀ ନାୟକଙ୍କ ବିୟୋଗ ଫଳରେ ଏହି ଦୈନିକ ସମ୍ବାଦପତ୍ରର ଦାୟିତ୍ୱରୁ ଅବ୍ୟାହତି ନେଇ କଟକରୁ ପ୍ରକାଶିତ ଓ ସ୍ୱର୍ଗତଃ ବାଳକୃଷ୍ଣ କରଙ୍କ ଦ୍ୱାରା ପ୍ରତିଷ୍ଠିତ ଦୈନିକ ମାତୃଭୂମିର ନିଜସ୍ୱ ପ୍ରେସ୍‌ରୁ ପ୍ରକାଶିତ 'ମାତୃଭାଷା'ର ସଂପାଦକ ଦାୟିତ୍ୱ ଗ୍ରହଣ କରିଥିଲେ ।

ତାଙ୍କ ଜୀବନର ଚଲାପଥରେ ସେ ୧୯୫୦ ମସିହାରୁ କଟକ, ବ୍ରହ୍ମପୁର ଓ କୋରାପୁଟରେ ପ୍ରଜାତନ୍ତ୍ର - ଇଷ୍ଟର୍ଣ୍ଣ ଟାଇମସ୍, କଳିଙ୍ଗ, ଦୈନିକ ଆଶା, ଉତ୍କଳ ବାର୍ତ୍ତାର ସଂପାଦକ ହେବା ପରେ ଏବେ ଗତ ୧୯୯୦ ମସିହାରୁ ୧୪ ବର୍ଷ ହେଲା ମାତୃଭାଷାର ସଂପାଦକ ଭାବେ କାର୍ଯ୍ୟ କରି ତାଙ୍କ ଜୀବନ ଯଶଯୁକ୍ତ ହୋଇଥିଲା ।

ଜଣେ ଶ୍ରେଷ୍ଠ ଓ ସମ୍ମାନୀୟ ସାମ୍ବାଦିକ ଭାବରେ କେବଳ ନୁହେଁ, ସର୍ବୋଦୟ ବିଚାରଧାରାରେ ଓଡ଼ିଶାର ପ୍ରଖ୍ୟାତ ନେତା, ପ୍ରବୀଣ ଚିନ୍ତାନାୟକ ଓ ସମାଜବାଦୀ କଂଗ୍ରେସର ଅନ୍ୟତମ ପ୍ରତିଷ୍ଠାତା ରାଜ୍ୟର ବର୍ଷୀୟାନ ମୁକ୍ତି ସଂଗ୍ରାମୀ ଓ ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀ, ରମାଦେବୀ, ଅର୍ଣ୍ଣପୂର୍ଣ୍ଣା ମହାରଣା, ମନମୋହନ ଚୌଧୁରୀ ପ୍ରଭୃତିଙ୍କ ନେତୃତ୍ୱରେ ଓଡ଼ିଶାରେ ସର୍ବୋଦୟ ଆନ୍ଦୋଳନ ଓ ଚିନ୍ତାଧାରାର ପ୍ରସାର ଦିଗରେ ଚନ୍ଦ୍ରଶେଖର ସସ୍ତ୍ରୀକ ପ୍ରମୁଖ ଭୂମିକା ନେଇଥିଲେ ।

ଚନ୍ଦ୍ରଶେଖରଙ୍କ ସଂପର୍କରେ ତାଙ୍କ ଜ୍ୟେଷ୍ଠଭ୍ରାତା ଶ୍ରୀ ଗଂଗାଧର ମହାପାତ୍ରଙ୍କ ନିଚ୍ଛକ ଉକ୍ତି ଏକାନ୍ତ ପ୍ରଣିଧାନ ଯୋଗ୍ୟ - 'ଏବେ ଏହି ସର୍ବୋଦୟ ଆନ୍ଦୋଳନର ପ୍ରମୁଖ ଦାୟିତ୍ୱରେ ଥିବା ମହାତ୍ମା ଗାନ୍ଧୀଙ୍କ ବ୍ୟକ୍ତିଗତ ସଚିବ, ସ୍ୱାଧୀନତା ଆନ୍ଦୋଳନର ମହାନ ନେତା ସ୍ୱର୍ଗତଃ ମହାଦେବ ଦେଶାଇଙ୍କ ସମୁଦୀ ଓ ବିଶିଷ୍ଟ ସର୍ବୋଦୟ ନେତାଭାବେ ସମଗ୍ର ଦେଶରେ ପ୍ରତିଷ୍ଠିତ ବର୍ଷୀୟାନ ନେତା ମନମୋହନ ଚୌଧୁରୀଙ୍କ ପରିବାର ସହିତ ଚନ୍ଦ୍ରଶେଖର ଜଣେ ଅତି ନିକଟ ସହଯୋଗୀ ଭାବେ ସର୍ବୋଦୟ ଚିନ୍ତାଧାରାର ମୌଳିକ ଦର୍ଶନର ପୂଜାରୀ ଭାବେ ସମ୍ମାନିତ । ତାଙ୍କ ସହିତ ସାକ୍ଷାତରେ ହଠାତ୍ ସେ ଏତେ ବଡ଼ ଚିନ୍ତାଧାରାର ଅଧିକାରୀ ଥିଲେ ବୋଲି କେହି କହିବେ ନାହିଁ । ଓଡ଼ିଶାରେ ବହୁ ଚିନ୍ତାନାୟକଙ୍କ ସହିତ ମୁଁ ମଧ୍ୟ ମୋର ସାନଭାଇ ଚନ୍ଦ୍ରଶେଖରଙ୍କୁ ନେଇ ଗର୍ବ କରେ ।'

'ମାତୃଭାଷା' ପରିବାରରେ ସେ ଥିଲେ ଜଣେ ବୟୋଜ୍ୟେଷ୍ଠ ସଦସ୍ୟ । ସଂପାଦକୀୟ ଲେଖିବା ଓ ବିଭିନ୍ନ ସମ୍ବାଦର ହେଡ଼ିଂ କରିବା ସହିତ ସମ୍ବାଦଗୁଡ଼ିକ ଯାଞ୍ଚ କରୁଥିବା ସମୟରେ ମାତୃଭାଷା କାର୍ଯ୍ୟାଳୟରେ କର୍ତ୍ତବ୍ୟ କରୁଥିବା ବେଳେ ପବିତ୍ର ମହାଳୟା ତିଥିରେ ତାଙ୍କର ପରଲୋକ ହୋଇଥିଲା । ଏଭଳି ନଜର କ୍ୱଚିତ ପୁଣ୍ୟାତ୍ମାଙ୍କ ପାଖରେ ଦେଖିବାକୁ ମିଳେ । ସବୁ ସେଇ ବିଶ୍ୱ ନିୟନ୍ତାଙ୍କ ଇଚ୍ଛା ... କେତେବେଳେ କେଉଁ ମୁହୂର୍ତ୍ତରେ କାହାକୁ ସେ ନେବେ, ସେ ଜାଣିଥିବେ ... କି ସୁନ୍ଦର ମରଣ ବାଃ ...

ବିଧିର ବିଧାନ ଅନୁଯାୟୀ ସେ ଚାଲିଗଲେ ସତ, କିନ୍ତୁ ରଖି ଦେଇ ଯାଇଛନ୍ତି ଚିରନ୍ତନ ସ୍ମୃତି । ଆଜିର ଛଳନା, ପ୍ରବଞ୍ଚନାପୂର୍ଣ୍ଣ ଦୁନିଆରେ ବାସ୍ତବରେ ସେ ଥିଲେ ମଣିଷ ପରି ସାର୍ଥକନାମା ମଣିଷଟିଏ । ଦୀର୍ଘ ୬୦ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ସାମ୍ବାଦିକତା କରି ଆସିଥିବା ଚନ୍ଦ୍ରଶେଖରଙ୍କ ଆଦର୍ଶ ଓ ବ୍ୟକ୍ତିତ୍ୱର ମୃତ୍ୟୁ କାହିଁ ?

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଓ ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ସେ ଉଜ୍ଜ୍ୱଳ ଆଲୋକ ବର୍ତ୍ତିକା ହୋଇ ରହିବେ ।

ଏମ୍.ଆଇ.ଜି. ୱାନ୍-୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬



# ପ୍ରସିଦ୍ଧ କଣ୍ଠଶିଳ୍ପୀ ଭାରତରତ୍ନ ଏମ୍.ଏସ୍. : ଏକ ଶ୍ରଦ୍ଧାଞ୍ଜଳି

ଗୁରୁକଲ୍ୟାଣ ମହାପାତ୍ର

ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିଥିବା ଭାରତୀୟ କର୍ଣ୍ଣାଟକୀ ସଙ୍ଗୀତର ଅଦ୍ୱିତୀୟା କଣ୍ଠଶିଳ୍ପୀ ଏମ୍.ଏସ୍. ସୁବୁଲକ୍ଷ୍ମୀ ଗତ ଡିସେମ୍ବର ୧୧ ତାରିଖ ରାତ୍ରିରେ ଚିକିତ୍ସାଧୀନ ଥିବା ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ଘଟଣା ଆମମାନଙ୍କ ପାଇଁ ଅତ୍ୟନ୍ତ ଦୁଃଖଦାୟକ । ସମଗ୍ର ଭାରତରେ ତାଙ୍କ ବିୟୋଗରେ ଶୋକର ଛାୟା ଖେଳି ଯାଇଛି । ଏମ୍.ଏସ. ଭାବେ ସର୍ବତ୍ର ପରିଚିତା ଏହି ମହିୟସୀ ମହିଳାଙ୍କ କଣ୍ଠ ନିଃସୃତ ପ୍ରଭାତ ପ୍ରାର୍ଥନା ଯିଏ ବି ଶୁଣିଛି, ସିଏ ମୁଗ୍ଧ ନହୋଇ ରହି ପାରିନାହିଁ ।

ଚେନ୍ନାଇର ମାଇଲାପୋରସ୍ଥିତ ଏକ ଘରୋଇ ଚିକିତ୍ସାଳୟରେ ମୃତ୍ୟୁର ଦଶଦିନ ପୂର୍ବରୁ ତାଙ୍କର ଚିକିତ୍ସା ଚାଲିଥିଲା ଯୁଦ୍ଧକାଳୀନ ଭିତ୍ତିରେ । ତଥାପି ସେ ମୃତ୍ୟୁ ସହ ସଂଗ୍ରାମ କରି ଚାଲିଥିଲେ ଓ ଚିକିତ୍ସକମାନଙ୍କ ଉଦ୍ୟମ ସତ୍ତ୍ୱେ, ତାଙ୍କର ପ୍ରାଣବାୟୁ ଉଡ଼ି ଯାଇଥିଲା । ସେତେବେଳକୁ ତାଙ୍କର ବୟସ ହୋଇଥିଲା ୮୮ ବର୍ଷ । ମୃତ୍ୟୁ କିନ୍ତୁ ମାରି ପାରି ନଥିଲା ତାଙ୍କ ସ୍ମୃତି ବିଜଡ଼ିତ ସଙ୍ଗୀତର ମୂର୍ଚ୍ଛନାକୁ - ଯାହା ଚିରନ୍ତନ ଓ ଅବିନଶ୍ୱର । ଦୁଃଖର କଥା, ସୁବୁଲକ୍ଷ୍ମୀଙ୍କର ପତି ତଥା ତାଙ୍କ ସଂଗୀତ ଜୀବନର ପ୍ରେରଣା ଟି. ସଦାଶିବମଙ୍କର ୧୯୯୭ରେ ପରଲୋକ ହୋଇ ଯାଇଥିଲା । ସେମାନେ ନିଃସନ୍ତାନ ଥିଲେ ।

ତାମିଲନାଡୁର ପ୍ରସିଦ୍ଧ ମାଦୁରାଇଠାରେ ଏହି ଯଶସ୍ୱୀ ମହିଳା ୧୯୧୬ ମସିହା ସେପ୍ଟେମ୍ବର ୧୬ ତାରିଖରେ ଭୂମିଷ୍ଠ ହୋଇଥିଲେ । କିଏ ବା ଜାଣିଥିଲା ଯେ ସେ ଦିନେ ଆନ୍ତର୍ଜାତୀୟ ଖ୍ୟାତି ଲାଭ କରିବେ ଐଶ୍ୱରୀୟ ଶକ୍ତି ବଳରେ ? ମାତ୍ର ଦଶବର୍ଷ ବୟସରେ ଗୀତ ବୋଲି ସେ ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ ।

ସୁବୁଲକ୍ଷ୍ମୀଙ୍କର ବୈଶିଷ୍ଟ୍ୟ ଏହି ଯେ ଆଜି କାଲି ପରି ସେ ସଙ୍ଗୀତ ରାଜ୍ୟରେ ପ୍ରବେଶ କରିବାକୁ ଆନୁଷ୍ଠାନିକ ଶିକ୍ଷା ଲାଭ କରିନଥିଲେ । ପିଲାଦିନେ ରେଡ଼ିଓରୁ ବଡ଼େ ଗୁଲାମ୍ ଅଲ୍ଲୀ ଖାଁ ପ୍ରଭୃତିଙ୍କ ଗୀତ ଶୁଣି ଶୁଣି ସେ ନିଜେ ଗୀତ ବୋଲି ପାରୁଥିଲେ ତାଳ ଓ ଲୟରେ । ନିକଟସ୍ଥ ମୀନାକ୍ଷୀ ମନ୍ଦିରର ନାଦ ଓ ସ୍ୱର ହିଁ ତାଙ୍କ ମଧରେ ଅନୁରଣିତ ହେଉଥିଲା ଅହରହ । ତେଣୁ ସେ ଗୀତ ନବୋଲି ଆଉ କ'ଣ କରିପାରିଥାନ୍ତେ ? ତାଙ୍କର ମାତା ବି ଜଣେ ବୀଣା ବାଦିକା ଥିଲେ ।

ସୁବୁଲକ୍ଷ୍ମୀ ଆନୁଷ୍ଠାନିକ ଶିକ୍ଷା ବିମଣ୍ଡିତା ନଥିଲେ । ପଞ୍ଚମ ଶ୍ରେଣୀରୁ, ବିଭିନ୍ନ କାରଣରୁ ସେ ପାଠପଢ଼ା ବନ୍ଦ ରଖିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ପ୍ରଥମେ ୧୯୩୮ରେ 'ସେବାସଦନମ୍' ନାମକ ଏକ ଚଳଚ୍ଚିତ୍ରରେ ତାଙ୍କର ପ୍ରଥମ ପ୍ରବେଶ । ୧୯୪୦ରେ ସେ ଇଚ୍ଛାକରି ଟି. ସଦାଶିବମ୍‌ଙ୍କୁ ବିବାହ କରିଥିଲେ । ଏହାପରେ ୧୯୪୭ରେ ପ୍ରସିଦ୍ଧ ହିନ୍ଦୀ ଚଳଚ୍ଚିତ୍ର 'ମୀରା'ରେ ତାଙ୍କର କଣ୍ଠଦାନ ହିଁ ତାଙ୍କୁ ଖ୍ୟାତି ଆଣି ଦେଇଥିଲା ସମଗ୍ର ଭାରତରେ । ଭାରତ ସରକାର ୧୯୫୪ରେ ତାଙ୍କୁ ପଦ୍ମଭୂଷଣ, ୧୯୭୫ରେ ପଦ୍ମ ବିଭୂଷଣ ଓ ଶେଷରେ ୧୯୯୮ରେ ଭାରତରତ୍ନ ଉପାଧିରେ ବିଭୂଷିତ କରିଥିଲେ । ଏପରିକି ସଂଗୀତ କ୍ଷେତ୍ରରେ ତାଙ୍କର ଅବଦାନ ଯୋଗୁଁ ୧୯୭୪ରେ ସେ ମାଗାସେସ୍ ପୁରସ୍କାର ମଧ୍ୟ ଲାଭ କରିଥିଲେ ।

ଏବେ ତ ଭାରତରେ ଶାସ୍ତ୍ରୀୟ ସଂଗୀତର ଆଦର କମି କମି ଯାଉଛି । ଶସ୍ତା ଓ ଅଶ୍ଳୀଳ ଗୀତ ଅଧିକାଂଶଙ୍କୁ ଆକୃଷ୍ଟ କରୁଛି । ଆଗ କାଳରେ ଅବଶ୍ୟ ଏସବୁ ନଥିଲା । ଗଡ଼ଜାତର ରାଜାରାଜୁଡ଼ାମାନେ ଶାସ୍ତ୍ରୀୟ ସଂଗୀତକୁ ହିଁ ଆଦର କରୁଥିଲେ ଓ ଏହାର କଳାକାରମାନଙ୍କୁ ପାରିତୋଷିକ ଓ ଉପଢୌକନ ଦେଇ ଆସୁଥିଲେ । ଅବଶ୍ୟ ଏବେ ସରକାରୀ, ଅର୍ଦ୍ଧ ସରକାରୀ ଓ ବିଭିନ୍ନ ଘରୋଇ ସଂସ୍ଥା ସହରମାନଙ୍କରେ କେବେ କେବେ ଶାସ୍ତ୍ରୀୟ ସଂଗୀତ ସମାରୋହର ଆୟୋଜନ କରୁଛନ୍ତି ସତ, ହେଲେ ମଧ୍ୟ ପୂର୍ବାପେକ୍ଷା ଏ ସବୁରୁ ଆଦର ଯେପରି ଅନେକ ପରିମାଣରେ ହ୍ରାସ ପାଇଛି ।

ଭାରତର ପ୍ରସିଦ୍ଧ ସେହେନାଇ ବାଦକ, ଉସ୍ତାଦ ବିଶମିଲା ଖାଁ ଭାରତ ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷରେ ଏକଦା କ୍ଷୋଭରେ ଉଲ୍ଲେଖ କରିଥିଲେ - ସ୍ୱାଧୀନତା ପରେ ରାଜାମାନଙ୍କ ହାତପାଣ୍ଠିକୁ ଉଚ୍ଛେଦ କରାଯିବା ଓ ଗଡ଼ଜାତ ରାଜ୍ୟମାନଙ୍କର ପତନ ଘଟିବା ଫଳରେ ଶାସ୍ତ୍ରୀୟ କଳାକାରମାନଙ୍କ ପାଇଁ ସେସବୁ ଉଦ୍‌ବେଗର କାରଣ ହୋଇଛି । କଳାକାରମାନଙ୍କ ଭାଗ୍ୟ ସୂତାଖିଅରେ ଝୁଲୁଥିବା ପରି ମନେ ହୋଇଥିଲା । ତଥାପି ଭାରତ ସରକାର ଓ ରାଜ୍ୟ ସରକାରମାନେ କଳା ଓ ସଂସ୍କୃତିର ସୁରକ୍ଷା ପାଇଁ ପଦକ୍ଷେପ ନେଇ ଆସୁଛନ୍ତି ।





ଭାରତୀୟ ଶାସ୍ତ୍ରୀୟ ସଂଗୀତର ପ୍ରସିଦ୍ଧ କଣ୍ଠଶିଳ୍ପୀ ସୁବୁଲକ୍ଷ୍ମୀ ଓ ତାଙ୍କର ସ୍ୱର୍ଗୀୟ ପତି ସଦାଶିବମଙ୍କ ନାମରେ ଚେନାଇଠାରେ, ସୁବୁଲକ୍ଷ୍ମୀ ବଞ୍ଚିଥିବାବେଳେ ଏକ ଫାଉଣ୍ଡେସନ ଗଠିତ ହୋଇଥିଲା । ଏହି ଫାଉଣ୍ଡେସନର ଉଦ୍ଦେଶ୍ୟ ଥିଲା ମହତ । ଭାରତୀୟ ନୃତ୍ୟ ଓ ସଂଗୀତକୁ ଶାସ୍ତ୍ରୀୟ ସ୍କୁଲର ବାଧାବନ୍ଧନରୁ ମୁକୁଳାଇ ବିଦେଶୀ ଦର୍ଶକମାନଙ୍କ ନିକଟରେ ପହଞ୍ଚାଇବା ଉଦ୍ଦେଶ୍ୟରେ ଏହା ଗଠିତ ହୋଇଥିଲା । ତେଣୁ ଏହି ଫାଉଣ୍ଡେସନର ନାମ ଦିଆଯାଇଥିଲା 'ସୁବୁଲକ୍ଷ୍ମୀ - ସଦାଶିବମ୍ ମ୍ୟୁଜିକ୍ ଆଣ୍ଡ ଡାନ୍ସ ଇନିଷ୍ଟିଚ୍ୟୁଟ୍ (ସମୁଦ୍ରି) । ଦେଶ ବାହାରେ ସୁବୁଲକ୍ଷ୍ମୀ ଓ ତାଙ୍କର ସ୍ୱାମୀ ଶାସ୍ତ୍ରୀୟ କର୍ଣ୍ଣାଟକୀ ସଂଗୀତକୁ ଲୋକପ୍ରିୟ କରାଇଥିବାରୁ, ସେହି ଉଦ୍ଦେଶ୍ୟକୁ ସାର୍ଥକ କରିବା ଏହି 'ସମୁଦ୍ରି' ଅନୁଷ୍ଠାନର ଥିଲା ଅନ୍ୟତମ ଲକ୍ଷ୍ୟ । କିନ୍ତୁ ଏହି ଅନୁଷ୍ଠାନ ଗଠିତ ହେବାର ଦଶବର୍ଷ ପୂର୍ବରୁ ଏହି ପ୍ରକଳ୍ପର ଭଲ ଓ ମନ୍ଦ ଦିଗ ଉପରେ ପୁଂଖାନୁପୁଂଖ ଆଲୋଚନା ଚାଲିଥିଲା । ଏପରି ଅନୁଷ୍ଠାନର ଉଦ୍ଦେଶ୍ୟକୁ ଭଲ ଭାବେ ବୁଝିବା ଲାଗି ଏମ୍.ଏସ୍. ନିଜେ ବହୁ ସମୟ ନେଇଥିଲେ ଏବଂ ଶେଷରେ ତାହା ଗଢ଼ିବାକୁ ସେ ସ୍ୱୀକୃତି ପ୍ରଦାନ କରିଥିଲେ । ଯେଉଁ ଦିନ ସେ ୮୧ ବର୍ଷ ବୟସରେ ପଦାର୍ପଣ କଲେ, ୧୯୯୭ ମସିହା ସେପ୍ଟେମ୍ବର ୧୬ ତାରିଖର ସେହି ପବିତ୍ର ଜନ୍ମ ଦିବସରେ 'ସମୁଦ୍ରି' ଅନୁଷ୍ଠାନ ଭିତ୍ତିପ୍ରସ୍ତର ସ୍ଥାପନ ହୋଇଥିଲା । (ଏକ ବିଚିତ୍ର ସଂଯୋଗ ଯେ ୧୯୪୦ର ସେହି ସେପ୍ଟେମ୍ବର ୧୬ ତାରିଖରେ ସୁବୁଲକ୍ଷ୍ମୀଙ୍କ ଜନ୍ମଦିବସରେ ଜନ୍ମ ହୋଇଥିଲେ ଓଡ଼ିଶାର ପ୍ରଖ୍ୟାତ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓ, ଯାହାଙ୍କର ଦେହାନ୍ତ ହୋଇଯାଇଛି ଗତ ୨୦୦୪ ଫେବୃଆରୀ, ୩ ତାରିଖରେ ।

ସେ ଯାହା ହେଉ, ଏହି ନୂତନ ଅନୁଷ୍ଠାନ 'ସମୁଦ୍ରି'ର ଗଠନ ସଂପର୍କରେ ୧୯୯୭ରେ ସୁବୁଲକ୍ଷ୍ମୀ (ଏମ୍,ଏସ୍.) କହିଥିଲେ, 'ସମୁଦ୍ରି ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ଓ ଉପାଦେୟ ପ୍ରକଳ୍ପ । ନୃତ୍ୟ ଓ ସଂଗୀତ ଦିଗରେ ଆଗ୍ରହୀ ଥିବା ଯେକୌଣସି ବ୍ୟକ୍ତି ଏହି ଅନୁଷ୍ଠାନକୁ ପ୍ରୋତ୍ସାହିତ କରିପାରିବେ ।

ଚେନ୍ନାଇରେ ସେହି ଅନୁଷ୍ଠାନ ଏବେ ମଧ୍ୟ ଭାରତୀୟ ଶାସ୍ତ୍ରୀୟ ନୃତ୍ୟ ଓ ସଂଗୀତ ଉପରେ ଗବେଷଣା କରି ଆଦୃତ । ଏହି ଯଶସ୍ୱୀ ମହିଳାଙ୍କ ବିୟୋଗ ସମ୍ବାଦ ମିଳିବା ପରେ, ଭାରତର ରାଷ୍ଟ୍ରପତି ଶ୍ରୀ ଏ.ପି.ଜେ ଅବଦୁଲ କାଲାମ ଏ ଦେଶବାସୀଙ୍କ ସହିତ ଗଭୀର ଭାବେ ଏମ୍.ଏସ୍.ଙ୍କ ପାଇଁ ଶୋକ ପ୍ରକାଶ କରି ନଥିଲେ, ତାଙ୍କର ଶେଷ ଦର୍ଶନ ପାଇଁ ବିମାନ ଯୋଗେ ଚେନ୍ନାଇ ଗସ୍ତ କରିଥିଲେ । ବିମାନରେ ଆସିବା ସମୟରେ ସେ ଏମ୍.ଏସ୍.ଙ୍କ ବିୟୋଗରେ ଏକ କବିତା ମଧ୍ୟ ଲେଖି ପକାଇ ତାହାକୁ ତାଙ୍କର ପରିବାରବର୍ଗଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥିଲେ । ଯାହାର ସାରମର୍ମ ହେଉଛି, 'ସ୍ୱର୍ଗରାଜ୍ୟରେ ମଧ୍ୟ ତାଙ୍କର ସଂଗୀତ ଆଦୃତ ହେବ ।'

ଭାରତର ପ୍ରଧାନମନ୍ତ୍ରୀ ଡଃ ମନମୋହନ ସିଂ, ଏମ୍.ଏସ୍.ଙ୍କ ବିୟୋଗରେ ଶୋକ ପ୍ରକାଶ କରି ଯେଉଁ ବାର୍ତ୍ତା ଦେଇଥିଲେ, ସେଥିରେ ସେ ଉଲ୍ଲେଖ କରିଥିଲେ ଯେ ତାଙ୍କର କଣ୍ଠସ୍ୱର ଶତାବ୍ଦୀ ଶତାବ୍ଦୀ ଧରି ଝଙ୍କୃତ ହୋଇ ଆସୁଥିବ ଆଉ ତାଙ୍କ ବିୟୋଗରେ ଗୋଟିଏ ଯୁଗର ଯେପରି ଅବସାନ ଘଟିଛି ।

'ମୀରା' ଚଳଚ୍ଚିତ୍ରର ପ୍ରଯୋଜନା କରିଥିଲେ ଏମ୍.ଏସ୍.ଙ୍କ ପତି ସଦାଶିବମ୍ । ସେହି ସମୟରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଏମ୍.ଏସ୍.ଙ୍କୁ ସମ୍ମାନ ଜଣାଇ କହିଥିଲେ - 'Who am I, a mere Prime Minister, before the queen of song?' (ମୁଁ କିଏ, ସଂଗୀତ ସାମ୍ରାଜ୍ଞୀଙ୍କ ନିକଟରେ ପ୍ରଧାନମନ୍ତ୍ରୀ ଅତି ତୁଚ୍ଛ) । ଭାରତର କୋକିଳ ଭାବରେ ପରିଚିତା ସ୍ୱର୍ଗୀୟା ସରୋଜିନୀ ନାଇଡୁ ଚଳଚ୍ଚିତ୍ରର ପ୍ରଥମ ରିଲ୍‌ରେ ଏମ୍.ଏସ୍.ଙ୍କର ପରିଚୟ ପ୍ରଦାନ କରିବାକୁ ଯାଇ ଭାବ ବିହ୍ୱଳିତ ହୋଇ ପଡ଼ିଥିଲେ ଓ ତାଙ୍କର ଉପାଧି 'କୋକିଳ'କୁ ଏମ୍.ଏସ୍.ଙ୍କୁ ହିଁ ସମର୍ପଣ କରିବା ପରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ କହିଥିଲେ - 'ଆପଣମାନେ ଗର୍ବ ଅନୁଭବ କରିବେ ଯେ ଏହି ପିଢ଼ିରେ ଭାରତ, ଏପରି ଜଣେ ମହାନ କଳାକାରଙ୍କୁ ଜନ୍ମ କରିପାରିଛି ।

ସମ୍ମାନ, ଭୂଷଣ ଓ ଉପାଧି ଲାଭ କରିବା କ୍ଷେତ୍ରରେ ଏମ୍.ଏସ୍.ଙ୍କୁ ତାଙ୍କ ଜୀବଦ୍ଦଶାରେ କେହି ଟପି ପାରି ନଥିଲେ । ଭାରତର ମହାନ ନୃତ୍ୟ ଶିଳ୍ପୀ ସ୍ୱର୍ଗୀୟା ରୁକ୍ମିଣୀ ଦେବୀ ଅରୁଣ୍ଡାଲେ (ଯିଏ କି ରାଷ୍ଟ୍ରପତି ପଦବୀର ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରିଥିଲେ) ଏମ୍.ଏସ୍.ଙ୍କୁ ଥରେ କହି ପକାଇଲେ - କୁଜଂମା (ଏମ୍.ଏସ୍.ଙ୍କ ଘନିଷ୍ଠମାନେ ତାଙ୍କୁ ଏହି ନାମରେ ହିଁ ଡାକି ଆସୁଥିଲେ) ତୁ ନିଜେ ଜାଗା ଖାଲି ନକଲେ ଅନ୍ୟ କେହି ସମ୍ମାନ ଓ ଉପାଧି ପାଇପାରିବେ ନାହିଁ ।

ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଏମ୍.ଏସ୍.ଙ୍କଠାରୁ ଗାନ୍ଧିଜୀ ତାଙ୍କର ପ୍ରିୟ ଭଜନ 'ହରି ତୁମ ହରୋ ...' ଶୁଣିବାକୁ ଇଚ୍ଛା କରିଥିଲେ । ମାତ୍ର ଗାନ୍ଧିଜୀଙ୍କର ଏହି ଇଚ୍ଛା ପୂରଣ ହେବା ପୂର୍ବରୁ ଧର୍ମାନ୍ଧ ଯୁବକ ଗଡ଼ସେର ଗୁଳିରେ ସେ ପ୍ରାଣ ହରାଇଥିଲେ ।

ଡି.-୧୦/୫, ୟୁନିଟ-୮
ଭୁବନେଶ୍ୱର-୧୨

■ ■ ■



# କେନ୍ଦ୍ରୀୟ ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ଲେଖକ ଡଃ ପ୍ରଫୁଲ୍ଲ ମହାନ୍ତି

ଶରତଚନ୍ଦ୍ର ସାମନ୍ତରାୟ

ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟର ଅନ୍ୟତମ ବିଶିଷ୍ଟ ପ୍ରାବନ୍ଧିକ ଓ ସମାଲୋଚକ ଡଃ ପ୍ରଫୁଲ୍ଲ ମହାନ୍ତିଙ୍କ ରଚିତ 'ଭାରତୀୟ ସଂସ୍କୃତି ଓ ଭଗବତ ଗୀତା' ପୁସ୍ତକଟି ୨୦୦୪ ମସିହା ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛି । ୬୫ ବର୍ଷ ବୟସ୍କ ଏହି ସାହିତ୍ୟ ସାଧକ ପୂର୍ବରୁ ରେଭେନ୍ସା କଲେଜରେ ଇଂରାଜୀ ବିଭାଗର ପ୍ରଫେସର ଓ ଅଧ୍ୟକ୍ଷ ଭାବେ ପରିଚିତ ଥିଲେ । ସରକାରୀ ଚାକିରିରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ ପରେ ସେ ସମ୍ପୂର୍ଣ୍ଣ ଭାବେ ନିଜକୁ ସାହିତ୍ୟ ସାଧନାରେ ଏପରିକି ସାମ୍ବାଦିକତା କ୍ଷେତ୍ରରେ ନିୟୋଜିତ କରିଥିଲେ ।

ପୂର୍ବରୁ ରାଜଧାନୀ ଭୁବନେଶ୍ୱର ସମେତ ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାର ସହରମାନଙ୍କରେ ଡଃ ମହାନ୍ତିଙ୍କ ରଚିତ ନାଟକଗୁଡ଼ିକ ଏକଦା ଲୋକପ୍ରିୟ ହୋଇ ଉଠିଥିଲା । ସେ ନାଟକଗୁଡ଼ିକ ରଚନା କରିବା ସହିତ, ସେସବୁର ମଞ୍ଚ ନିର୍ଦ୍ଦେଶନା ଦେଉଥିଲେ ଓ ସମୟେ ସମୟେ ଅଭିନୟ ମଧ୍ୟ କରୁଥିଲେ ।

ପ୍ରଥମେ କବିତା ଲେଖୁଥିବା ଡଃ ମହାନ୍ତି ପରବର୍ତ୍ତୀ କାଳରେ କବିତା ଓ ନାଟକ ରଚନାଠାରୁ ଦୂରେଇ ଯାଇ ଅନୁବାଦ କରିବା ଓ ଇଂରେଜୀ ତଥା ଓଡ଼ିଆ ଭାଷାରେ ପ୍ରବନ୍ଧ ଲେଖିବାରେ ତାଙ୍କ ରଚିତ ନାଟକ ପୁସ୍ତକଗୁଡ଼ିକ ହେଲା - କଳାଜହ୍ନ, ମଲା ଆକାଶ ଓ ସରାଗ ସନ୍ନ୍ୟାସୀ ଅନ୍ୟତମ । ଡଃ ମହାନ୍ତିଙ୍କର ଯେଉଁ ପୁସ୍ତକଗୁଡ଼ିକୁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କୃତ କରିଛନ୍ତି, ସେହି 'ଭାରତୀୟ ସଂସ୍କୃତି ଓ ଭଗବତ ଗୀତା' (ଏକବିଂଶ ଶତାବ୍ଦୀରେ) ପୂର୍ବରୁ ଧାରାବାହିକ ଭାବେ ସମ୍ବାଦରେ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଥିଲା । ନିଜସ୍ୱ ଗଦ୍ୟ ଶୈଳୀରେ ସାଂପ୍ରତିକ କାଳର ଅନେକ ସମସ୍ୟା ସହିତ ଡଃ ମହାନ୍ତି ଭାରତୀୟ ସଂସ୍କୃତି ଓ ଭଗବତ ଗୀତାର ବ୍ୟାଖ୍ୟା ବିଭିନ୍ନ ଢଙ୍ଗରେ ଏହି ପୁସ୍ତକରେ କରିଛନ୍ତି । ତାହା ହିଁ ତାଙ୍କର ବୈଶିଷ୍ଟ୍ୟ ।

ଡଃ ମହାନ୍ତିଙ୍କର 'ଶେଷ ଅପେକ୍ଷା' ନାମରେ ଏକ ଗଳ୍ପ ସଂକଳନ ମଧ୍ୟ ରହିଛି । ଏହା ବ୍ୟତୀତ ଓଡ଼ିଶାରେ ତାଙ୍କ ଭିନ୍ନ ଧରଣର ପ୍ରବନ୍ଧ ଓ ସମାଲୋଚନା ଗ୍ରନ୍ଥ ତିନୋଟି ହେଉଛି ବିରହ ଓ ଅନ୍ୟ ବିଭବମାନେ, କିଛି ଆକାଶ ଓ କିଛି ମାଟି ଓ ନିଦାଘର କବି ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତିଲାଭ କରିଥିବା ବିଶିଷ୍ଟ କଥା ଶିଳ୍ପୀ ଶ୍ରୀ ମନୋଜ ଦାସ ଡଃ ମହାନ୍ତିଙ୍କୁ ତାଙ୍କର ପୁରସ୍କାର ପ୍ରାପ୍ତି ଯୋଗୁଁ ଶୁଭେଚ୍ଛା ଜ୍ଞାପନ କରିବା ସଂଗେସଂଗେ ଦିନେ ନା ଦିନେ ସେହି ପୁସ୍ତକଟି ପୁରସ୍କାର ପାଇବ ବୋଲି ଆଶା କରିଥିବା ସମ୍ପର୍କରେ ସୂଚନା ଦେଇଥିଲେ । ଉତ୍କଳ ପ୍ରସଙ୍ଗର ପୂର୍ବତନ ମୁଖ୍ୟ ସଂପାଦକ ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର ମଧ୍ୟ ଡଃ ମହାନ୍ତିଙ୍କୁ ଶୁଭେଚ୍ଛା ଜଣାଇ ତାଙ୍କର ରଚିତ 'କିଛି ଆକାଶ କିଛି ମାଟି' ପୁସ୍ତକଟିକୁ ସେ ଗତବର୍ଷ ସଦସ୍ୟ ଥିବା ସମୟରେ ରାଜା ରାମମନୋହର ଲାଇବ୍ରେରୀ ପାଇଁ ମନୋନୀତ କରିଥିଲେ ବୋଲି ମଧ୍ୟ ସୂଚନା ଦେଇଛନ୍ତି ।

କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ଡଃ ମହାନ୍ତି ଇଂରାଜୀରୁ ଓଡ଼ିଆ ଅନୁବାଦ କରିଛନ୍ତି । କାନାଡ଼ା ସାହିତ୍ୟର ଇତିହାସ ନାମକ ଏକ ଗ୍ରନ୍ଥ ପୁରସ୍କାରପ୍ରାପ୍ତ ଓଡ଼ିଆ ଗଳ୍ପଗୁଡ଼ିକ ସାହିତ୍ୟ ଏକାଡ଼େମୀର ଅନୁରୋଧକ୍ରମେ ଇଂରାଜୀରେ ରୂପାନ୍ତରିତ କରିଛନ୍ତି । ଫଳରେ 'କ୍ୱାଇଟ୍ ଫ୍ଲୋଜ୍ ଦି ମହାନଦୀ' ନାମକ ଏକ ଗ୍ରନ୍ଥ ଇଂରାଜୀରେ ପ୍ରକାଶିତ ହୋଇଛି । ସାରଳା ମହାଭାରତର କାହାଣୀଗୁଡ଼ିକ ଇଂରାଜୀରେ ଅନୁବାଦ କରିବା ସହିତ ପ୍ରାଚୀନ କବି ସାରଳା ଦାସଙ୍କ ସମ୍ପର୍କରେ ଏକ ସନ୍ଦର୍ଭ ଲେଖିଛନ୍ତି ଡଃ ମହାନ୍ତି । ଫଳରେ ଦିଲ୍ଲୀର ପ୍ରକାଶନ ସଂସ୍ଥା ବିକାଶ ପକ୍ଷରୁ 'ଷ୍ଟୋରିଜ୍ ଫ୍ରମ୍ ସାରଳା ମହାଭାରତ ନାମକ ଏକ ଉପାଦେୟ ଗ୍ରନ୍ଥ ପ୍ରକାଶ ପାଇଛି । ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ କବି ସାରଳା ଦାସଙ୍କୁ ପ୍ରତିଷ୍ଠା କରିବାକୁ ସମ୍ଭବତଃ ଇଂରାଜୀରେ ପ୍ରଥମ ଗ୍ରନ୍ଥ । ଏହାବ୍ୟତୀତ କବି ଗଙ୍ଗାଧର ମେହେରଙ୍କ କୀଚକବଧ କାବ୍ୟ ନାଟ୍ୟକାର ମନୋରଞ୍ଜନ ଦାସଙ୍କ ରଚିତ କାଠଘୋଡ଼ା ନାଟକର ଇଂରାଜୀ ଅନୁବାଦ 'ଏଣ୍ଡ୍ ଅଫ୍ କୀଚକ' ଓ 'ଉଡ୍ଡୁନ୍‌ହର୍ଷ' ନାମରେ ସେ ସଫଳତାର ସହିତ କରିଛନ୍ତି । ଚିତ୍ରଶିଳ୍ପୀ ଶ୍ରୀ ଦୀନନାଥ ପାଠୀଙ୍କ 'ପୁନର୍ନବା' ନାମକ ଏକ ଉପନ୍ୟାସର ଇଂରାଜୀ ରୂପାନ୍ତର 'ଦି ରିନିୱେଲ୍' ମଧ୍ୟ ଡଃ ମହାନ୍ତି ଏବେ କରୁଥିବା ଜଣାଯାଇଛି । କେନ୍ଦ୍ରୀୟ ସହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିବାରୁ ଡଃ ମହାନ୍ତିଙ୍କର ପ୍ରତିକ୍ରିୟା ପଚାରିବାରୁ ସେ କହିଛନ୍ତି, ସାହିତ୍ୟ ଏକାଡ଼େମୀ ଭଲ ପୁସ୍ତକ ପୁରସ୍କାର ପାଇଁ ବାଛି ଥିବାରୁ ସେ ଅତ୍ୟନ୍ତ ଆନନ୍ଦିତ ଓ ରାଜ୍ୟର ଅଗଣିତ ପାଠକ ଓ ଲେଖକଙ୍କୁ ଏଥିପାଇଁ ଅଭିନନ୍ଦନ ଜ୍ଞାପନ କରିଛନ୍ତି ।

ଘର ନଂ-୩
ବିଭବ ଇଷ୍ଟେଟ୍, ବରମୁଣ୍ଡା, ଭୁବନେଶ୍ୱର



# ପୁଷ ମାସରେ ଶ୍ରୀଜଗନ୍ନାଥଙ୍କ ପହିଲିଭୋଗ ନୀତି : ଏକ ଦୃଷ୍ଟିପାତ

ପଙ୍କଜ ସାହୁ

**ଭୋ**ଗକ୍ଷେତ୍ର ଶ୍ରୀକ୍ଷେତ୍ର ପୁରୀରେ ବିରାଜିତ ଭୋଜନ ମୂର୍ତ୍ତି ଶ୍ରୀଜଗନ୍ନାଥଙ୍କୁ ପ୍ରତ୍ୟହ ଷାଠିଏ ପଉଟି ପରିମାଣର ଅନ୍ୟୂନ ଛପନ ପ୍ରକାରର ଦିବ୍ୟ ନୈବେଦ୍ୟରେ ଆପ୍ୟାୟିତ କରାଯାଇଥାଏ । ଏତଦ୍‌ବ୍ୟତୀତ ରସନାବିଳାସୀ ଶ୍ରୀଜୀଉଙ୍କ ନିମିତ୍ତ ଧନୁସଂକ୍ରାନ୍ତିରେ 'ଧନୁମୁଆଁ ଓ ମକର ସଂକ୍ରାନ୍ତିରେ 'ମକର ଚାଉଳ' ସଦୃଶ ବର୍ଷ ମଧ୍ୟରେ ବିଭିନ୍ନ ପର୍ବପର୍ବାଣିରେ ଋତୁ ଉପଯୋଗୀ ବହୁବିଧ ଅତିରିକ୍ତ ଭୋଗଲାଗି ହେବାର ବ୍ୟବସ୍ଥା ମଧ୍ୟ ରହିଅଛି । ଅନ୍ନକ୍ଷେତ୍ର ରୂପେ ସୁବିଦିତ ଏହି ଶ୍ରୀକ୍ଷେତ୍ରରେ ତ୍ରୈଲୋକ୍ୟ ପଡ଼ିଦାତ୍ରୀ ମହାଲକ୍ଷ୍ମୀ ସ୍ୱୟଂ ପାଚନକର୍ତ୍ତ୍ରୀ ରୂପେ ସ୍ୱହସ୍ତରେ ସୁବର୍ଣ୍ଣର ଚତୁର୍ଧରି ଅନ୍ନବ୍ରହ୍ମ ରୂପେ ସ୍ୱୀକୃତ ମହାପ୍ରସାଦ ପ୍ରସ୍ତୁତ ପୂର୍ବକ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ମଣୋହି କରାଇଥାନ୍ତି । ଯଦ୍ଦ୍ୱାରା ସାରା ଜଗତର ଉଦରପୂର୍ତ୍ତି ଘଟିଥାଏ । ମାତ୍ର ସର୍ବତନ୍ତ୍ରକୁ ଅତିକ୍ରମ କରି ଶ୍ରୀଜଗନ୍ନାଥଙ୍କ ସେବାନୀତିରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ ହେଉଛି ଶ୍ରୀପୁରୁଷୋତ୍ତମ ସଂସ୍କୃତିର ବୈଶିଷ୍ଟ୍ୟ । ସେହି ବୈଶିଷ୍ଟ୍ୟର ଅମ୍ଳାନ ସ୍ୱାକ୍ଷର ବହନ କରି ଆଲୋଚ୍ୟ ଦୁଇ ସଂକ୍ରାନ୍ତିର ମଧ୍ୟବର୍ତ୍ତୀ ଏକମାସ ବ୍ୟାପୀ ଶ୍ରୀମହାପ୍ରଭୁଙ୍କୁ 'ପହିଲିଭୋଗ' ନାମରେ ଏକ ବିଶେଷ ଭୋଗ ସମର୍ପିତ ହୋଇଥାଏ, ଯାହାକି ମାତା ଯଶୋଦାଙ୍କ ବାତ୍ସଲ୍ୟ ଉପାସନାର ଏକ ବିମଳ ନିଦର୍ଶନ । ସେହି ହେତୁ ଶ୍ରୀମନ୍ଦିର ପୂଜାନୀତିରେ ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପୂର୍ବଦିନ ପର୍ଯ୍ୟନ୍ତ ଠାକୁରମାନଙ୍କ ଉଦ୍ଦେଶ୍ୟରେ ବ୍ୟବସ୍ଥିତ ଧନୁମାସକୁ 'ପହିଲିଭୋଗ ମାସ' ନାମରେ ଅଭିହିତ କରାଯାଇଥାଏ । ଏହି ପରିପ୍ରେକ୍ଷୀରେ ଶ୍ରୀମନ୍ଦିରରେ ଅନୁଷ୍ଠିତ ପହିଲିଭୋଗର ସ୍ୱାତନ୍ତ୍ର୍ୟ ସମ୍ବନ୍ଧୀୟ ଏକ ମୁଷ୍ଟ ଅନୁଶୀଳନ ନିମ୍ନରେ ଉପସ୍ଥାପିତ ହେଲା ।

ହିନ୍ଦୁ ଉପାସନା ପରମ୍ପରା ତଥା ଓଡ଼ିଶୀ ବୈଷ୍ଣବୀୟ ଚିନ୍ତନରେ ସର୍ବଅବତାରର ଜନକ ଅର୍ଥାତ୍ ସ୍ୱୟଂ ଅବତାରୀ ଶ୍ରୀଜଗନ୍ନାଥ ହେଉଛନ୍ତି ବିବିଧ ଅବତାରବୋଧର ଏକୀଭୂତ ପ୍ରତୀକ । ସେହି ହେତୁ ଆଧ୍ୟାତ୍ମିକ ଜଗତର ମହାନ ସମନ୍ୱୟ ପୀଠ ଶ୍ରୀକ୍ଷେତ୍ରରେ ବିଭିନ୍ନ ଅବତାରଙ୍କ ପାବନ ମୁଦ୍ରାଙ୍କର ପ୍ରତିବିମ୍ବନ ବେଶ ସୁସ୍ପଷ୍ଟ । 'ଜଗନ୍ନାଥ ହିଁ ଷୋଳକଳା / ତହୁଁ କଳାଏ ନନ୍ଦବଳା' - ଏହାର ପ୍ରାମାଣିକତା ସ୍ୱରୂପ ଶ୍ରୀଜୀଉଙ୍କ ସେବାବିଧିରେ ଶ୍ରୀକୃଷ୍ଣଙ୍କ ବିଭୂତି ପ୍ରତିଫଳିତ ହେବା ସ୍ୱାଭାବିକ । ଶ୍ରୀଜଗନ୍ନାଥ ସଂସ୍କୃତିରେ କୃଷ୍ଣଚେତନାର ଆରୋପଣ ପରେ ଶ୍ରୀମନ୍ଦିରରେ ପହିଲି ଭୋଗ ନୀତି ପ୍ରବର୍ତ୍ତିତ ହୋଇଥିବା ସୁନିଶ୍ଚିତ । ଦ୍ୱାପର ଯୁଗାଧିଦୈବତ ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ବାତ୍ସଲ୍ୟ ଲୀଳାବିଳାସ ଅନ୍ତର୍ଗତ, ମାତା ଯଶୋମତୀ ଅପତ୍ୟ ସ୍ନେହ ତଥା ବାତ୍ସଲ୍ୟ ଭାବସେବା ସମ୍ପାଦନା ପାଇଁ ଶୀତ ପାହାନ୍ତାରେ ରାମକୃଷ୍ଣଙ୍କୁ କୋଳରେ ବସାଇ ଖୁଆଇ ଦେଇଥିବା ପାହାନ୍ତି ଭୋଜନର ଏକ ନିରୁଣ ଅନୁସରଣ ହେଉଛି ଶ୍ରୀଜଗନ୍ନାଥଙ୍କ ଏହି ପହିଲି ଭୋଗ । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ଗୋପବାଳକ ରୂପେ ପ୍ରତିପାଦିତ/ବିଜ୍ଞପିତ କରିବାର ପ୍ରକୃଷ୍ଟ ସମୟ ହେଉଛି ଆଲୋଚ୍ୟ ପହିଲି ଭୋଗ ମାସ । ପହିଲି ଭୋଗରେ ମାତା ଯଶୋମତୀଙ୍କର ସେବା ସଂପୃକ୍ତି ସମ୍ପର୍କରେ ଜାଣିବାକୁ ହେଲେ ବିଭିନ୍ନ ଶାସ୍ତ୍ରାଲୋଚିତ ପ୍ରକରଣର ଅନୁଶୀଳନ ଏକାନ୍ତ ବିଧେୟ ।

ବିବାହ ପରଦିନ ମହାଲକ୍ଷ୍ମୀଙ୍କ ହସ୍ତରୁ ସୁବର୍ଣ୍ଣ କଉଡ଼ି ଛଡ଼ାଇ ନପାରି ଜୁଆଖେଳରେ ପରାଜିତ ରାଜାଧିରାଜ ଶ୍ରୀଜଗନ୍ନାଥ ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ବିଷ୍ଣୁପାଟରାଣୀ ମହାଲକ୍ଷ୍ମୀ : ତାଙ୍କର ତ୍ରିଜଗତ ପଡ଼ିଦାତ୍ରୀ ନାମର ସାର୍ଥକତା ପ୍ରତିପାଦନ ନିମିତ୍ତ ମାର୍ଗଶୀର୍ଷେ ସମଗ୍ର ଉତ୍କଳେ କୃଷି ସମ୍ପଦର ଅଧିଷ୍ଠାତ୍ରୀ ରୂପେ ଧାନ୍ୟ ପ୍ରତୀକରେ ଓଡ଼ିଆର କ୍ଷେତରେ ଆବିର୍ଭାବ ହୋଇଥାନ୍ତି । ପୁନଶ୍ଚ ଅନ୍ନଦାତ୍ରୀ ମହାଲକ୍ଷ୍ମୀ : କୃଷିପ୍ରାଣ ଓଡ଼ିଆର ଖଳାବାଡ଼ି, କୋଠି, ଅମାରମାନଙ୍କରେ ଶସ୍ୟଦେବୀ ସ୍ୱରୂପରେ ବିରାଜମାନ କରୁଥିବାରୁ ଏହି ସୁଯୋଗରେ ଆଚଣ୍ଡାଳ ବ୍ରାହ୍ମଣ ନିର୍ବିଶେଷରେ ଓଡ଼ିଆର ଘରେ ଘରେ ପୁରେ ପୁରେ ଓଡ଼ିଆଣୀମାନେ ପିଠଉରେ ଲକ୍ଷ୍ମୀ ପାଦପଦ୍ମ ଚିତାଲେଖି ଶସ୍ୟଲକ୍ଷ୍ମୀଙ୍କ ଶୁଭାନୁଗମନ ନିମିତ୍ତ ସ୍ୱାଗତିକା ରଚନା କରିବା ସହିତ ନବୀନ ଧାନକୁ ମାର୍ଗଶିର ଗୁରୁବାରମାନଙ୍କରେ ଉପାସନା କରିଥାନ୍ତି । ଏହି କାରଣରୁ ମହାଲକ୍ଷ୍ମୀ ଶ୍ରୀମନ୍ଦିରରେ ଅନୁପସ୍ଥିତ ରହନ୍ତି ବୋଲି ବିଶ୍ୱାସ ଜନ୍ମେ । ସର୍ବୋପରି ଉକ୍ତ ବିଶ୍ୱାସକୁ ପୁଷ୍ଟ କରିବା ନିମିତ୍ତ ଓଡ଼ିଆ ସମାଜରେ ପ୍ରଚଳିତ 'ପୁଷଡାକରା' ଭଳି ଏକ ସାମାଜିକ ପ୍ରଥାକୁ ଶ୍ରୀମନ୍ଦିର ସେବାବିଧିରେ ଆରୋପ କରାଯାଇଛି ବୋଲି କେତେକ ଅନୁମାନ କରନ୍ତି । ଓଡ଼ିଶାର ଏହି ପାରମ୍ପରିକ ପ୍ରଥାନୁସାରେ ପୁଷ ମାସରେ ବାପଘର ଲୋକମାନେ ବିବାହିତା ଝିଅମାନଙ୍କୁ ଶାଶୁଘରୁ ନିଜ ଘରକୁ ଡାକି ଆଣିଥାନ୍ତି । ଧନୁମାସର ପରିସମାପ୍ତିରେ ମକର ସଂକ୍ରାନ୍ତି ଦିନ ସେମାନେ ନୂଆ





ଭାର ଥୋର ନେଇ ଶ୍ୱଶୁରାଳୟ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଲୋକବିଶ୍ୱାସରେ ଓଡ଼ିଆ ସଂସ୍କୃତିର ପ୍ରାଣକେନ୍ଦ୍ର ଶ୍ରୀମନ୍ଦିରରେ ମଧ୍ୟ ଏହି ପ୍ରଥା ଅନୁସରଣ ପୂର୍ବକ ଧନୁମାସରେ ମହାଲକ୍ଷ୍ମୀ ବରୁଣାଳୟ ଗମନ କରୁଥିବାରୁ ଶ୍ରୀମନ୍ଦିରରେ ଅନୁପସ୍ଥିତ ରହିନ୍ତି ଓ ମକର ସଂକ୍ରାନ୍ତି ଦିନ ପିତ୍ରାଳୟରୁ ଆଣିଥିବା ପୁଷଭାର ଦ୍ରବ୍ୟରେ 'ମକର ଚୌରାଶୀ ଭୋଗ' ପ୍ରସ୍ତୁତ ହୋଇ ଶ୍ରୀମହାପ୍ରଭୁଙ୍କ ଲାଗି ହୋଇଥାଏ । ଓଡ଼ିଆ ଘରର ଅଲିଅଳ ଝିଅ ସଦୃଶ ପୁଷଡାକରା ପାଇ ମହାଲକ୍ଷ୍ମୀ ବରୁଣପୁରେ ଅବସ୍ଥାନ କରୁଥିବା ଅବସରରେ ତାଙ୍କ ଅବର୍ତ୍ତମାନରେ ମହାପ୍ରଭୁଙ୍କ ମଣୋହି ପ୍ରସ୍ତୁତିରେ କିଞ୍ଚିତ ଶୈଥିଲ୍ୟ ଉପୁଜିବା ଆଶଙ୍କା ମନରେ ପୋଷଣ କରି ମାତା ଯଶୋମତୀ ସ୍ୱୟଂ ମଣୋହି ଦାୟିତ୍ୱ ନିର୍ବାହ ପୂର୍ବକ ମହାପ୍ରଭୁଙ୍କୁ ପହିଲିଭୋଗ ସେବନ କରାଇଥାନ୍ତି ।

ଧନୁମାସରେ ଶ୍ରୀମନ୍ଦିରରେ ଅନୁଷ୍ଠିତ ପହିଲି ଭୋଗ ନୀତିରେ ଓଡ଼ିଆ ଘରେ ଶୀତ ସକାଳରେ ପିଲାମାନଙ୍କୁ ଗରମ ଗରମ 'ବଢ଼ାଭାତ' ପରଷିବା ଭଳି ଏକ ବିସ୍ମୃତ ପରମ୍ପରାର ପ୍ରଭାବ ଅନୁଭୂତ ହୋଇଥାଏ । ଶୀତକାଳରେ ଶୀତପ୍ରାବଲ୍ୟ ଯୋଗୁଁ ଜଠରାଗ୍ନି ଅପେକ୍ଷାକୃତ ତୀବ୍ର ହୋଇଥିବାରୁ ରାତ୍ରିର ଅନ୍ତିମ ପ୍ରହରରେ ସମସ୍ତେ ସାଧାରଣତଃ କ୍ଷୁଧା ଅନୁଭବ କରିବା ସ୍ୱାଭାବିକ । ଏହି ଜଠରାଗ୍ନି ପ୍ରଶମନ ତଥା କ୍ଷୁଧା ନିବାରଣ ନିମିତ୍ତ ପ୍ରତ୍ୟୁଷ ଭୋଜନ ଏକାନ୍ତ ଅପରିହାର୍ଯ୍ୟ । ଏତାଦୃଶ ଆବଶ୍ୟକତା ବୋଧରୁ ଓଡ଼ିଆଣୀମାନେ ରାତ୍ରିର ରୋଷେଇ ପରେ ଚୁଲିର ରଡ଼ ନିଆଁ ଉପରେ ଏକ ମାଟିବଢ଼ା (କ୍ଷୁଦ୍ରାକୃତି ଆଟିକା) ବସାଇ ତହିଁରେ ଠିକ୍ ଅନୁପାତରେ ପାଣି, ଚାଉଳ, ମୁଗ, କଟା ଆଳୁସହ ଆବଶ୍ୟକ ଲୁଣ ହଳଦୀ ଦେଇ ଘୋଡ଼ାଇ ଦିଅନ୍ତି । ପାହାନ୍ତା ବେଳକୁ ପେଜମରା ଏହି ବଢ଼ାଭାତ ସ୍ୱତଃ ରାନ୍ଧି ହୋଇ ଗରମ ଅବସ୍ଥାରେ ଥାଏ । ରାତ୍ରିର ଶେଷ ପ୍ରହରରେ ମା'ମାନେ ପିଲାମାନଙ୍କୁ ଦାନ୍ତ ଘଷାଇ, ତେଲ ହଳଦୀ ଲଗାଇ ସଫାସୁତରା କରାଇବା ପରେ ଶୀତବସ୍ତ୍ର ଘୋଡାଇ ସେମାନଙ୍କୁ ଉଷ୍ମ ବଢ଼ାଭାତ, ଗୁଆଘିଅ ଗୋଳାଇ ଖୁଆଇ ଦେଇଥାନ୍ତି । ଏହା ଯେପରି ରୁଚିକର ସେହିପରି ସ୍ୱାସ୍ଥ୍ୟପ୍ରଦ ମଧ୍ୟ । ସଭ୍ୟତାର ବିକାଶ ତଥା ରୁଚି ପରିବର୍ତ୍ତନ ଯୋଗୁଁ ଓଡ଼ିଆର ମାନସପଟରୁ ଏହି ବଢ଼ାଭାତ ପରଷା ବ୍ୟବସ୍ଥା ହୁଏତ ଅପସରି ଗଲାଣି ହେଲେ ଓଡ଼ିଆ ଜାତିର ଅତି ଆପଣାର ଠାକୁର ଶ୍ରୀଜଗନ୍ନାଥଙ୍କ ପହିଲି ଭୋଗ ନୀତିରେ ଏହାର ସ୍ମୃତି ଏଯାବତ ଉଜ୍ଜୀବିତ ରହିଅଛି । ସେଇଥିପାଇଁ ବୋଧହୁଏ ଶ୍ରୀଜଗନ୍ନାଥଙ୍କୁ ସମର୍ପିତ ପହିଲିଭୋଗକୁ ଅନେକ 'ଖେଚୁଡ଼ି ଭୋଗ' ବୋଲି ଅନୁମାନ କରିଥାନ୍ତି । ମାତ୍ର ଏ ଅନୁମାନ ଆଦୌ ଠିକ୍ ନୁହେଁ । କାରଣ ସରଳବଣୀ ମିଷ୍ଟପିଷ୍ଟକାଦି ଆହାରରେ ଅଭ୍ୟସ୍ତ ବୃନ୍ଦାବନର କୃଷ୍ଣ : ଚାଓଳ (ଅନ୍ନ) ଭୋଜନରେ ଆଦୌ ରୁଚି ରଖନ୍ତି ନାହିଁ । ସେହିହେତୁ ବାଳକୃଷ୍ଣ ରୂପେ ପରିକଳ୍ପିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପହିଲି ଭୋଗରେ କୌଣସି ଅନ୍ନନୈବେଦ୍ୟ ଲାଗିହୁଏ ନାହିଁ । ତେଣୁ ଇତ୍ୟବସରରେ ମା' ଯଶୋମତୀ ସ୍ୱହସ୍ତରେ ଚାଉଳଚୂନା, ଗହମ ଅଟା, ବିରି, ସର୍କରାରୁ ଘୃତପାକ ହୋଇଥିବା ଲଘୁଆହାର୍ଯ୍ୟ ସବୁ ପ୍ରସ୍ତୁତକରି ପରମ ଆଦରରେ ମହାପ୍ରଭୁଙ୍କୁ ପ୍ରଭାତୀ ଉପଚାର ସମାପନ କରିଥାନ୍ତି । ଏହି ପରିପ୍ରେକ୍ଷୀରେ କର୍ମାଙ୍ଗୀରେ ଉଲ୍ଲେଖ ଅଛି -

'ରାତ୍ରାବସାନେ ପରମାଦରେଣଂ
ଯଶୋମତୀ ଅର୍ଚ୍ଚିତଂ ଦିବ୍ରଭୋଗଃ ।
ନାନା ସୁମିଷ୍ଟ ଲଘୁ ପିଷ୍ଟ କାଦୟଃ
ନୈବେଦ୍ୟ ଚାଦ୍ୟଂ ଧନମାମ ଅର୍ପିତଃ ।'

ମାତା ଯଶୋମତୀଙ୍କ ବାତ୍ସଲ୍ୟଭରା ଭାବସେବାର ନିଦର୍ଶନ ସ୍ୱରୂପ ପହିଲିଭୋଗ ଉଦ୍ଦିଷ୍ଟ ବହୁବିଧ ସୁମିଷ୍ଟ ପିଷ୍ଟକାଦି ପ୍ରସ୍ତୁତି ନିମିତ୍ତ ଧନୁମାସରେ ସାଧାରଣତଃ ଅନ୍ୟଦିନ ଅପେକ୍ଷା ଯଥେଷ୍ଟ ଆଗରୁ ମହାପ୍ରଭୁଙ୍କ ପହୁଡ଼ଭାଙ୍ଗି ଶ୍ରୀମନ୍ଦିରର ପ୍ରାତଃ ନୀତି ଆରମ୍ଭ ହୋଇଥାଏ । ପତିପତ୍ନୀଙ୍କୁ ଶୟନକକ୍ଷରୁ ଜାଗ୍ରତ କରାଇବାବେଳେ ଯଥୋଚିତ ସମ୍ଭ୍ରମତା ଅବଲମ୍ବନ ଅବଶ୍ୟମ୍ଭାବୀ । କିନ୍ତୁ ମାତାପୁତ୍ର ଏକତ୍ର ଶୟନବେଳେ ସେମାନଙ୍କୁ ନିଦରୁ ଉଠାଇବା ପାଇଁ କୌଣସି ଆଚରଣବିଧି ଉପରେ ବିଶେଷ ଧ୍ୟାନଦେବା ଆବଶ୍ୟକ ପଡ଼େ ନାହିଁ । ସେହିଭଳି ସାଧାରଣ ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଅଙ୍କଲକ୍ଷ୍ମୀଙ୍କ ସହ ରାତ୍ରିଯାପନ କରୁଥିବାରୁ ସେବକମାନେ ପ୍ରତ୍ୟୁଷରୁ ପଞ୍ଚବାଦ୍ୟ ଧ୍ୱନି ତଥା ଭଜନ କୀର୍ତ୍ତନ ମାଧ୍ୟମରେ ଶ୍ରୀଜୀଉଙ୍କ ପହଡ଼ଭଙ୍ଗ କରାଯାଇଥାଏ । ମାତ୍ର ପହିଲି ଭୋଗ ମାସରେ ଶ୍ରୀମନ୍ଦିରରେ ମହାଲକ୍ଷ୍ମୀଙ୍କ ଅବର୍ତ୍ତମାନରେ ଶ୍ରୀଜଗନ୍ନାଥ : ମାତା ଯଶୋଦାଙ୍କ କୋଳରେ ଶିଶୁପୁତ୍ର ବାଳକୃଷ୍ଣ ସମ ନିଦ୍ରା ଯାଉଥିବାରୁ କେବଳ 'ମଣିମା' ଡାକପଡ଼ି ସେବକମାନେ ଛାମୁ (ସମ୍ମୁଖ) ଦ୍ୱାର ଖୋଲିଥାନ୍ତି । ପକ୍ଷାନ୍ତରେ ଶୀତଋତୁରେ ରାତ୍ରିର ଅବଧି ଅପେକ୍ଷାକୃତ ଦୀର୍ଘ ହୋଇଥିବାରୁ ରାତ୍ରିର ଶେଷ ପ୍ରହରକୁ ସାଧାରଣତଃ ନିଦ ପତଳା ହୋଇ ସମସ୍ତେ ଶୀତଯୋଗୁଁ ଶଯ୍ୟାରେ ପଡ଼ି ରହିଥାନ୍ତି । ଏପରିସ୍ଥଳେ ଗୁରୁଗର୍ଜନ ବାଦ୍ୟ ଧ୍ୱନି ନକରି ସାମାନ୍ୟ ସୂଚନାରେ କପାଟ ଉନ୍ମୋଚନ ପୂର୍ବକ ପହିଲିଭୋଗ ପ୍ରସ୍ତୁତିପର୍ବ ଆରମ୍ଭ ହୋଇଥାଏ । ରାତ୍ରି ପ୍ରଭାତିଲା ପରେ ଅଥଚ ସୂର୍ଯ୍ୟଦେବ କିରଣ ସମ୍ପାତିଲା ପୂର୍ବରୁ ମାତା ଯଶୋଦା ମହାପ୍ରଭୁଙ୍କୁ ଖୁବ୍ ସରାଗରେ ଖୁଆଉଥିବା ପହିଲି ଭୋଗର ଭୋଜ୍ୟସାରଣୀ ସମ୍ବନ୍ଧରେ ଏକ ମନୋଜ୍ଞ ସୂଚନା ପ୍ରଦାନ କରି ଧବୀଦାସୀ କହିଛନ୍ତି -

ଧନୁମାସ ହେଲା ପହିଲି ଭୋଗ, ମା' ସରାଗ
ରାତି ନପାହୁଣୁ କାଉ କା' ନକରୁଣୁ
ଭୁଂଜାଇ ଦିଅନ୍ତି ଲଘୁ ଦରବ, ମା' ସରାଗ । ୧ ।
ବଡ଼ି ଚୁଡ଼ାପୁଆ ମୁଆଁ ଟାକୁଆ, ଗୁଟି ଲବଣୀ
ପାହାନ୍ତି ପ୍ରହରେ ମଣୋହି କରାନ୍ତି
ଆପଣା ହାତରେ ନନ୍ଦ ଘରଣୀ, ଗୁଟି ଲବଣୀ । ୨ ।

ବିଶେଷତଃ ଧନୁମାସରେ ମାତା ଯଶୋମତୀ ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ଶ୍ରୀମନ୍ଦିର ପ୍ରାତଃକୃତ୍ୟ ସମାପନାନ୍ତେ ଶୀତ ନଲାଗିବା ପାଇଁ ଦ୍ୱାରବନ୍ଦ ଥାଇ ମହାପ୍ରଭୁଙ୍କୁ କୋଳରେ ବସାଇ ସେମାନଙ୍କୁ ମଣୋହି





କରାଉଥିବା ପହିଲି ଭୋଗ ସମ୍ବନ୍ଧରେ ଶିଶୁକବି ହଳଧର ମିଶ୍ର ଏକ ସବିଶେଷ ବିବରଣୀ ଦେଇ କହିଛନ୍ତି -

'ଚୁଡ଼ାପୁଆ ଚୁଡ଼ା ମଧୁର ଖଇ ।
ମୁଆଁ କଡ଼ମା ପାତି ସରଗୋଇ ॥
ଲହୁଣୀ ଗୋଳା ପାପୁଡ଼ିର ସର ।
ବିରି ବଡ଼ି କେଳି ଛତୁ ମଧୁର ॥
ଧରି ଜନନୀ ନବରସ ମାନ ।
କୋଳେ ବସାଇଣ ନନ୍ଦନନ୍ଦନ ॥
ଗୋଟି ଗୋଟିକା ମୁଖେ ନେଇ ଦ୍ୟନ୍ତି ।
ମୁହଁ ପୋଛି ଆନ ମୁଖେ ଭରନ୍ତି ॥
ପାହିଲାଣି ରାତି ଭୁଂଜ ବହନ ।
ଉଠିଲେଣି ବାବୁ ଜଗତଜନ ॥
ବୋଲି ନନ୍ଦରାଣୀ ଭୁଂଜାଇ ସାରି ।
ଲବଣୀ ଗୁଟିକା ମୁଖରେ ଭରି ॥
ପୋଛି ଦେଇ ମୁଖ ଘୋଡ଼ ଆଣ୍ଟିଲେ ।
ଟେରା କବାଟ ଫେଡ଼ାଇଣ ଦେଲେ ॥'

ଉପଯୁକ୍ତ ମନନଶୀଳ ଉପସ୍ଥାପନାରେ ମହାପ୍ରଭୁଙ୍କ ପହିଲି ଭୋଗରେ ଓଡ଼ିଆର ଅତିପ୍ରିୟ ଜଳଖିଆ କିପରି ଆଦରଣୀୟ ହୋଇପାରିଛି, ତାହା ହିଁ ବିଚାର୍ଯ୍ୟ । ଧନୁମାସର ଶୀତ ପାହାନ୍ତିରେ ଶୀତ ନଲାଗିବା ପାଇଁ ମାତା ଯଶୋମତୀ କବାଟ ବନ୍ଦ ରଖି ଭିତରେ ଶ୍ରୀମହାପ୍ରଭୁମାନଙ୍କୁ ପହିଲିଭୋଗ ଖୁଆଇ ଦେଇ ଶୀତବସ୍ତ୍ର ଘୋଡାଇ ତ୍ରିଜଗତର ଗୁହାରି ଶୁଣିବା ପାଇଁ ଶ୍ରୀଜୀଉଙ୍କୁ ପ୍ରସ୍ତୁତ କରାଇ ଜୟବିଜୟ ଦ୍ୱାର ଖୋଲି ଦିଅନ୍ତି ।

ଶ୍ରୀମନ୍ଦିର ରୋଷର ନିତ୍ୟ ପାଚନକର୍ତ୍ତୀ ମହାଲକ୍ଷ୍ମୀ ଧନୁମାସରେ ଶ୍ରୀମନ୍ଦିରରେ ରହନ୍ତି ନାହିଁ ବୋଲି ଭକ୍ତ ଜନତା ମଧ୍ୟରେ ଯେଉଁ ଧାରଣା ବଳବତ୍ତର ରହିଅଛି, ତାହା ବାସ୍ତବତଃ ସମ୍ପୂର୍ଣ୍ଣ ଭିତ୍ତିହୀନ । ଯଦି ତାହା ହେଇଥାନ୍ତା ତେବେ ରତ୍ନସିଂହାସନରେ ବିରାଜିତ ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣ ତଳୁ ଶ୍ରୀଦେବୀଙ୍କୁ ସ୍ଥାନାନ୍ତରିତ କରାଯାଇ ହୁଏତ ଖଟ ଶେଯ ଘରେ ଅବସ୍ଥାପିତ କରାଯାଇଥାନ୍ତା । ମାତ୍ର ଏହି ସମୟରେ ଶ୍ରୀଦେବୀ : ମହାପ୍ରଭୁଙ୍କ ପାଦପଦ୍ମ ସମୀପରେ ବିଦ୍ୟମାନ ଥିବାର ପରିଦୃଷ୍ଟ ହୁଏ । କେବଳ ସେତିକି ନୁହେଁ ଧନୁମାସରେ ମା' ଯଶୋମତୀ ସ୍ୱତନ୍ତ୍ର ଭାବେ ପ୍ରଭାତୀ ଉପଚାର ସ୍ୱରୂପ ପହିଲି ଭୋଗରେ ମହାପ୍ରଭୁଙ୍କୁ ଲଘୁ ଭୋଜ୍ୟଦ୍ରବ୍ୟ ମଣୋହି କରାଇବା ପରେ ମହାଲକ୍ଷ୍ମୀ ସ୍ୱହସ୍ତରେ ଧୂପ ମଣୋହି ସବୁରାନ୍ଧି ପରଷିବାରେ ଆଦୌ ବ୍ୟତିକ୍ରମ ସୃଷ୍ଟି ହୁଏ ନାହିଁ । ବିଶ୍ୱର ମହାନ ଲୌକିକ ଦେବତା ଶ୍ରୀଜଗନ୍ନାଥ ଏହି ସନ୍ଧିକ୍ଷଣରେ ସମଗ୍ର ମାନବ ଜାତି ପାଇଁ ଯେଉଁ ଉଦାହରଣ ସୃଷ୍ଟି କରିଛନ୍ତି, ତାହା ବାସ୍ତବରେ ପ୍ରଣିଧାନଯୋଗ୍ୟ । 'ରାତି ବରଷା ମା' ପରଷା'ର ତୁଳନା ନାହିଁ । ମା'ର ବାତ୍ସଲ୍ୟ ମମତାଗୋଳା ହାତପରଷାରେ ସବୁରି ପେଟ ପୂରିଯାଏ ମନ ଭରିଯାଏ । ପୁନଶ୍ଚ ରାତିର ବର୍ଷା ଫସଲ ପାଇଁ ଯେପରି ହିତକର, ମା'ର ହାତରନ୍ଧା ତଥା ପେଟ ଚିହ୍ନି ପରଷିବାର ଆନ୍ତରିକତା ସନ୍ତାନ ପାଇଁ ସେହିପରି ଉପାଦେୟ । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ବିବାହ ପରେ ସ୍ତ୍ରୀମାନେ ରୋଷେଇ ଦାୟିତ୍ୱ ନେଲା ପରେ ପୁରୁଷମାନେ କ୍ରମେ ମା' ହାତର ପରଷାକୁ ଭୁଲିଯା'ନ୍ତି କିମ୍ବା ଅନେକ ଝୁରି ମଧ୍ୟ ହୁଅନ୍ତି । ଉପେକ୍ଷା ଅପେକ୍ଷା ଆପଣେଇ ନେବାରେ ଶ୍ରୀଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ନିହିତ । ଏହି ପରିପ୍ରେକ୍ଷୀରେ ନିୟମିତଭାବେ ମହାଲକ୍ଷ୍ମୀଙ୍କ ହାତପରଷାରେ ପରିତୃପ୍ତ ଶ୍ରୀମହାପ୍ରଭୁ ଧନୁମାସରେ ମାତା ଯଶୋଦାଙ୍କଠାରୁ ପାହାନ୍ତିଭୋଗ ଗ୍ରହଣ କରି ସମଗ୍ର ମାତୃଜାତିକୁ ସ୍ମରଣୀୟ କରି ଦେଇଛନ୍ତି ।

ସମ୍ପ୍ରତି ପହିଲି ଭୋଗ ନୀତିର ସୁଶୃଙ୍ଖଳ ସମ୍ପାଦନ ନିମିତ୍ତ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ପ୍ରଭାବୀ ପଦକ୍ଷେପ ଗ୍ରହଣ ଫଳରେ ରାତି ୨ଟାରେ ଭିତରଛ ମହାପାତ୍ର  ସମେତ ଅନ୍ୟ ପାଳିଆ ସେବକଗଣ ଜଗମୋହନରେ ବାଜା ଆଟୋପ ନକରି କେବଳ ମଣିମା ଡାକପଡ଼ି ଦ୍ୱାର ଫିଟାଯାଇ ପଲଙ୍କ ଯଥାସ୍ଥାନରେ ଥୋଇବା ପରେ ୩ଟାରେ ମଙ୍ଗଳ ଆଡଳି ବଢ଼ି ମଇଲମ, ତଡ଼ପଲାଗି, ପାହାନ୍ତି ଅବକାଶ ଆଦି ନୀତି ସମାହିତ ପରେ ଜୟବିଜୟ ଦ୍ୱାର ବନ୍ଦ ହୁଏ । ଏହାପରେ ମହାପ୍ରଭୁଙ୍କୁ ବାରଲାଗି ଶୀତବସ୍ତ୍ର ତଥା ଅଳଙ୍କାରରେ ଘୋଡଲାଗି ବେଶରେ ସଜ୍ଜିତ କରାଯାଏ । ଇତ୍ୟବସରରେ ରୋଷହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ପ୍ରଭୃତି ଔପଚାରିକ ନୀତି ସମ୍ପନ୍ନ ପରେ ଶ୍ରୀମନ୍ଦିର ରୋଷରେ ମହାସୁଆରମାନେ ପହିଲି ଭୋଗ ଭୋଜ୍ୟ ସାମଗ୍ରୀ ପ୍ରସ୍ତୁତ କରିଥାନ୍ତି । ପାଳିଆ ପଢ଼ିଆରୀ ଭିତର ବାହାର ଶୋଧ କରିବା ପରେ ଅଣସର ପିଣ୍ଡିରେ ଶୁଦ୍ଧ ସୁଆର ପରଖମାନଙ୍କରେ ବଲ୍ଲଭ ଓ ଧନୁମୁଆଁ ବାଢ଼ିଲା ଉତ୍ତାରେ ବାହାରକୁ ଆସେ । ତଦନନ୍ତର ସୁଆର ବଡୁ ଅହୁଣିଆପାଣି ପକାଇବା ପରେ ପାଳିଆ ପଢିଆରୀ ରୋଷକୁ ପହିଲିଭୋଗ ଛେକ ଛାମୁକୁ ଆଣିବା ପାଇଁ ଡାକନ୍ତି । ଶ୍ରୀମନ୍ଦିର ସ୍ୱତ୍ୱଲିପି ଖଞ୍ଜାନୁଯାୟୀ ବଡ଼ଝିଲି, ଦରଶୁଆଝିଲି, ଦରଶୁଆବଡ଼ି, କଣ୍ଟେଇ, ନଡୁ, ଗଜା, ନଳୀ, ବଡ଼ି, ମୁଗେଇ, ଝଡ଼େଇନେଦା, ସାନ ଅମାଲୁ, ଖଇରଚୂଳ, ବଡ଼ବଡ଼ା, ଆରିଷା, କାକରା, ଛତୁ, ଚୁଡ଼ାପୁଆ, ଏଣ୍ଡୁରୀ, ମଣ୍ଡା, ଗଇଣ୍ଠା ପ୍ରଭୃତି ଭୋଜ୍ୟବସ୍ତୁ ନିର୍ଦ୍ଧାରିତ ପରିମାଣରେ ବଲ୍ଲଭ ପିଣ୍ଡିକୁ ଅଣାଯାଇ ପଞ୍ଚୋପଚାରରେ ପୂଜା ହୁଏ । ସମ୍ଭବତଃ ପ୍ରଥମାବସ୍ଥାରେ ଗୋପାଳ ବଲ୍ଲଭ ପୂର୍ବରୁ ଏହି ଅତିରିକ୍ତ ପାହାନ୍ତି ଭୋଗ ଲାଗି ହେଉଥିବାରୁ ଏହା ପାହାନ୍ତି ବା ପହିଲିଭୋଗ ନାମରେ ଅଭିହିତ । ପରବର୍ତ୍ତୀ କାଳରେ ଶ୍ରୀମନ୍ଦିର ନୀତିର ସୁଚାରୁ ସମ୍ପାଦନ ପାଇଁ ଗୋପାଳ ବଲ୍ଲଭ ସହ ପହିଲିଭୋଗ ଏକତ୍ର ଅନୁଷ୍ଠିତ ହୋଇ ସମ୍ପୃକ୍ତ ସେବକମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । ସେମାନେ ଆନନ୍ଦବଜାରରେ ନିଜ ନିଜ ପସରାରେ ଏହି ଭୋଗ ବିକ୍ରୟ କରୁଥିବାରୁ ଜନସାଧାରଣ ଏହାକୁ କିଣିବାକୁ ପାଆନ୍ତି । ପହିଲି ଭୋଗ ନୀତି ସମାହିତ ପରେ ଟେରା କବାଟ ଉନ୍ମୋଚନ ସମୟକୁ ଜଗମୋହନରେ ସମବେତ ଭକ୍ତ ଦର୍ଶନାର୍ଥୀ ମହାପ୍ରଭୁଙ୍କ ଦର୍ଶନ ସୁଯୋଗ ପାଇଥାନ୍ତି । ପହିଲି ଭୋଗ ମାସରେ ଶ୍ରୀମନ୍ଦିର ନୀତି ଅପେକ୍ଷାକୃତ ଯଥେଷ୍ଟ ଆଗରୁ ତ୍ୱରାନ୍ୱିତ ହେଉଥିବାରୁ ଏହି ଦିନମାନଙ୍କରେ ମହାପ୍ରଭୁଙ୍କର ଦିବା ପହୁଡ଼ନୀତି ଅନୁସୃତ ହୁଏ ।

ନୂଆଗାଁ, ଇଡିପୁର
ଭୁବନେଶ୍ୱର-୨





# ସମବାୟରେ ଏକ ସଫଳତା :

# ବ୍ରହ୍ମପୁର କେନ୍ଦ୍ର ସମବାୟ ବ୍ୟାଙ୍କ

ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତ୍ୱସ)

ଭାରତରେ ବୈଧାନିକ ଉପାୟରେ ସ୍ୱେଚ୍ଛାକୃତ ସହଯୋଗଭିତ୍ତିକ ଗଣତନ୍ତ୍ର ପରିଚାଳିତ ସମବାୟ ବ୍ୟବସାୟର ବାରବର୍ଷ ନପୂରୁଣୁ ସେ କାଳରେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ରହିଥିବା ବ୍ରହ୍ମପୁର ସହରରେ ଗଂଜାମ ଜିଲ୍ଲା ସମବାୟ ବ୍ୟାଙ୍କ ସଂଘ ସୀମିତ ଦେୟ ଅନୁଷ୍ଠାନଟିଏ ୧୯୧୬ ମସିହାରେ ପ୍ରତିଷ୍ଠା ହେଲା । ସମ୍ଭବତଃ ଏହାର ପ୍ରତିଷ୍ଠା ତାରିଖ ଥିଲା ଦୁଇ ଅକ୍ଟୋବର ୧୯୧୬ । କିନ୍ତୁ ପରବର୍ତ୍ତୀ ଅବସ୍ଥାର ଭାଷାଭିତ୍ତିକ ପ୍ରଥମ ରାଜ୍ୟ ଭାବରେ ଓଡ଼ିଶା ପ୍ରଦେଶ ଗଠନ ହେଲା ପରେ ଏହି ସମବାୟ ଅନୁଷ୍ଠାନଟିର କାର୍ଯ୍ୟ ପରିସର ଦ୍ୱିଖଣ୍ଡିତ ହୋଇ ଓଡ଼ିଶା ଓ କିଛି ଅଂଶ ଆନ୍ଧ୍ରରେ ରହିବା ଫଳରେ 'ବ୍ୟାଙ୍କ ସଂଘ' ଦୁଇଟି ଅନୁଷ୍ଠାନ ରୂପେ ରେଜିଷ୍ଟ୍ରିଭୁକ୍ତ ହେଲା ୧୯୩୬ରେ । ଓଡ଼ିଶାର ଗଂଜାମ ଜିଲ୍ଲାରେ ଥିବା ବ୍ରହ୍ମପୁର ସମବାୟ କେନ୍ଦ୍ର ବ୍ୟାଙ୍କ ଓ ଅନ୍ୟଟି ଶ୍ରୀକାକୁଳମଠାରେ ଅବସ୍ଥାପିତ ଶ୍ରୀକାକୁଲମ୍ ସମବାୟ କେନ୍ଦ୍ର ବ୍ୟାଙ୍କ୍ । ତା.୩୧.୧୨.୧୯୩୬ରିଖରେ ରେଜିଷ୍ଟ୍ରି ହୋଇଥିବା ବ୍ରହ୍ମପୁର କେନ୍ଦ୍ର ବ୍ୟାଙ୍କର ପରିସର ଆଜିର ସଂପୂର୍ଣ୍ଣ ଗଂଜାମ, ଗଜପତି ଜିଲ୍ଲା ସହ କୋରାପୁଟ ଜିଲ୍ଲାର କେତେକାଂଶ ଯାଏ ବ୍ୟାପ୍ତ ଥିଲା, କିନ୍ତୁ ପରବର୍ତ୍ତୀ ସମୟରେ କୋରାପୁଟ କେନ୍ଦ୍ର ବ୍ୟାଙ୍କର ପ୍ରତିଷ୍ଠା ହେବାରୁ ବର୍ତ୍ତମାନ କେବଳ ଗଂଜାମ ଓ ଗଜପତି ଜିଲ୍ଲାର ଚାଷୀ ଓ ଅଣଚାଷୀ ସହଯୋଗୀ ବନ୍ଧୁମାନଙ୍କ ପାଇଁ କାର୍ଯ୍ୟ କରିଆସୁଛି । ୧୯୬୧ ମସିହାରେ ରୋପ୍ୟ ଓ ୧୯୮୬ ମସିହାକୁ ସ୍ୱର୍ଣ୍ଣ ଜୟନ୍ତୀର ସଫଳତାର ସହ ଆଡ଼େଇ ଦେଇ ଏହି ବ୍ୟାଙ୍କ୍ ତା'ର ହୀରକ ଜୟନ୍ତୀ ଆଡ଼କୁ ଅଗ୍ରସର ହେଉଛି । ଏହା ଏକ ନିରବଚ୍ଛିନ୍ନ ପ୍ରଗତି ଦେଇ ଗତି କରୁଥିବାର ସୌଭାଗ୍ୟ ଅର୍ଜନ କରିଛି । ବ୍ରହ୍ମପୁର କେନ୍ଦ୍ର ସମବାୟ ବ୍ୟାଙ୍କ୍ ଆଜି ପାଇଁ ଏକ ସଫଳ ଆର୍ଥିକ ଅନୁଷ୍ଠାନ ରୂପେ ଗରୀବ ଚାଷୀ ମୂଲିଆଙ୍କୁ ସହଜ କିସ୍ତିରେ ଋଣ ଯୋଗାଣ କରି ଗ୍ରାମାଞ୍ଚଳରେ ରହିଥିବା ଜମିଦାର ଓ ମହାଜନମାନଙ୍କ ଦାଉରୁ ଗ୍ରାମୀଣ ଅର୍ଥନୀତିକୁ ରକ୍ଷା କରିପାରିଛି । ୧୯୩୬ ମସିହାରୁ କାର୍ଯ୍ୟ କରି ଆସୁଥିବା ଏହି ବ୍ୟାଙ୍କ୍ ବର୍ତ୍ତମାନକୁ ଏକୋଇଶି ଗୋଟି ଶାଖା ମାଧ୍ୟମରେ ଗଂଜାମ ଓ ଗଜପତି ଜିଲ୍ଲାର ଗ୍ରାମାଞ୍ଚଳ ଓ ସହରାଞ୍ଚଳମାନଙ୍କରେ ବ୍ୟାଙ୍କ୍ ସେବା ପ୍ରଦାନ କରୁଛି । ଗଂଜାମ ଜିଲ୍ଲାର ବ୍ରହ୍ମପୁରଠାରେ ଓ ଗଜପତି ଜିଲ୍ଲାର ପାରଳାଖେମୁଣ୍ଡିଠାରେ କାର୍ଯ୍ୟ କରୁଥିବା ଦୁଇଟି ମହିଳା ବ୍ୟାଙ୍କ୍ ମହିଳାମାନଙ୍କ କଲ୍ୟାଣ ଓ ବିକାଶ ପାଇଁ ଉଦ୍ଦିଷ୍ଟ ଥାଇ ସ୍ୱତନ୍ତ୍ରତା ବଜାୟ ରଖିଛି । କର୍ମଚାରୀମାନଙ୍କ କଲ୍ୟାଣ ଓ ଦକ୍ଷତା ବୃଦ୍ଧି ପାଇଁ ଏହାର ମୁଖ୍ୟ କାର୍ଯ୍ୟାଳୟ ସମେତ ମୁଖ୍ୟ ଶାଖା ଓ ବ୍ରହ୍ମପୁର ମହିଳା ଶାଖା ସ୍ୱୟଂଚାଳିତ କମ୍ପ୍ୟୁଟରୀକରଣ କରାଯାଇଛି ଓ ଅନ୍ୟ ଶାଖାଗୁଡ଼ିକର ସ୍ୱୟଂଚଳନର ବ୍ୟବସ୍ଥା କରାଯାଉଛି । ସର୍ବଭାରତୀୟ ସ୍ତରରେ ଏହି ବ୍ୟାଙ୍କ୍ କୃଷିଋଣ ଲଗାଣ, ଆଦାୟ, ଜମା ସଂଗ୍ରହ ଓ ଅନ୍ୟାନ୍ୟ ଦାରିଦ୍ର୍ୟ ନିରାକରଣ ଯୋଜନାରେ ରେକଡ଼ ପରିମାଣ କାର୍ଯ୍ୟ ସଂପାଦନ କରି ବିଗତ ୧୯୯୫-୯୬ ବର୍ଷଠାରୁ କ୍ରମାଗତ ଭାବେ ଚାରିବର୍ଷ ଧରି 'ସର୍ବୋତ୍ତମ' ସମବାୟ ବ୍ୟାଙ୍କ୍ ଭାବରେ ସମ୍ମାନିତ ହୋଇଛି ଓ ପ୍ରତିବର୍ଷ ପାଇଁ ୫ ଲକ୍ଷ ଟଙ୍କାର ପୁରସ୍କାର ସାଂଗକୁ, ପ୍ରମାଣପତ୍ର ଓ ସୁନାର ସିଲଡ୍ ହାସଲ କରିବା ଆମ ଓଡ଼ିଶା ପାଇଁ କମ୍ ସୌଭାଗ୍ୟର କଥା ନୁହେଁ ।

ଦକ୍ଷିଣ ଓଡ଼ିଶାର ଗର୍ବ ଓ ଗୌରବ କୁହାଯାଉଥିବା ବ୍ରହ୍ମପୁର କେନ୍ଦ୍ର ସମବାୟ ବ୍ୟାଙ୍କ୍ ଗ୍ରାମାଞ୍ଚଳରେ ବିଛେଇ ହୋଇ ରହିଥିବା ତା'ର ୨୬୬ଟି ସେବା ସମବାୟ ସମିତି ଜରିଆରେ ଚାଷୀମାନଙ୍କୁ ଖରିଫ୍ ଓ ରବିଋଣ ଅତି ସରଳ ସର୍ତ୍ତ ଓ ସହଜ ଉପାୟରେ ଯୋଗାଣ କରି ଏହି ଅଂଚଳର ନିମ୍ନ ଓ ମଧ୍ୟବିତ୍ତ ଶ୍ରେଣୀୟ କୃଷକମାନଙ୍କର ଉପକାର ସାଧନ କରୁଛି । କିଷାନ୍ କ୍ରେଡ଼ିଟ୍ କାର୍ଡ଼, କୃଷିଋଣ ବୀମାକରଣ, ଗୋଲ୍ଡକାର୍ଡ଼ ଇତ୍ୟାଦିର ସରକାରୀ ଯୋଜନାଗୁଡ଼ିକର ସୁସଗଂତ ନିର୍ବାହ ଚାଷୀଙ୍କ ପାଇଁ କଲ୍ୟାଣକର ଅନୁଭୂତ ହେଉଛି ।

**ବ୍ରହ୍ମପୁର କେନ୍ଦ୍ର ସମବାୟ ବ୍ୟାଙ୍କ୍‌ର ପ୍ରଗତି :**

**(ଟଙ୍କା - ଲକ୍ଷରେ)**

| ଆର୍ଥିକ ଅଭିବୃଦ୍ଧିର ସୂଚକ | ଆରମ୍ଭ ୧୯୩୭ | ପଚାଶ ବର୍ଷ ପରେ | ୩୧.୩.୨୦୦୨ ବର୍ଷ ସୁଦ୍ଧା |
|---|---|---|---|
| ୧. ଅଂଶଧନ (ସେର୍ କ୍ୟାପିଟାଲ) | ୦.୪୫ | ୧୩୧.୬୧ | ୧୦୮୭.୦୪ |
| ୨. ଗଚ୍ଛିତ ଧନ (ରିଜର୍ଭ) | ୦.୪୩ | ୧୩୭.୨୪ | ୧୪୩.୭୦ |
| ୩. ନିଜସ୍ୱ ଧନ | ୦.୮୮ | ୨୬୮.୮୬ | ୧୨୩୦.୭୪ |





(ଓନ୍ଡ କ୍ୟାପିଟାଲ)

| | | | |
|---|---|---|---|
| ୪. ଜମା ସଂଗ୍ରହ (ଡିପୋଜିଟ୍) | ୪.୦୨ | ୮୬୦.୨୫ | ୧୩୭୨୮.୫୯ |
| ୫. ଋଣଯୋଗାଣ (ଲୋନ୍-ଆଡଭାନ୍ସ) | ୨.୨୨ | ୧୩୦.୦୫ | ୮୫୧୪.୫୩ |
| ୬. ଋଣ ସଂଗ୍ରହ (ବାରୋଇଂସ୍) | -- | ୭୧୨.୮୩ | ୫୧୯୭.୦୮ |
| ୭. କାର୍ଯ୍ୟକାରୀ ମୂଳଧନ (ୱାର୍କିଂ କ୍ୟାପିଟାଲ) | ୪.୩୬ | ୨୦୮୦.୯୮ | ୨୦୮୧୩.୦୧ |

**ଆଧାର :** ୧. ବ୍ରହ୍ମପୁର କେନ୍ଦ୍ର ବ୍ୟାଙ୍କ୍ ସ୍ୱର୍ଣ୍ଣ ଜୟନ୍ତୀ ସଂଖ୍ୟା ୧୯୩୬-୧୯୮୬।

୨. ୬୪ତମ ବାର୍ଷିକ ବିବରଣୀ ପୁସ୍ତିକା, ବ୍ରହ୍ମପୁର କେନ୍ଦ୍ର ସମବାୟ ବ୍ୟାଙ୍କ୍ ଲିଃ. ୨୦୦୦-୨୦୦୧।

ଏହି ବ୍ୟାଙ୍କର ଅନ୍ୟ କେତେକ ଆର୍ଥିକ ଅଭିବୃଦ୍ଧି ସୂଚକକୁ ଅନୁଧ୍ୟାନ କଲେ ଜାଣି ହୁଏ ଯେ, ୧୯୩୭ ମସିହାର ମାତ୍ର ୪୫ ହଜାର ଟଙ୍କାର ଅଂଶଧନ ୧୯୮୭ ବେଳକୁ ଏକ କୋଟିରୁ ଊର୍ଦ୍ଧ୍ୱ ଓ ୨୦୦୨ ଆର୍ଥିକ ବର୍ଷ ଶେଷ ବେଳକୁ ଏହା ପାଖାପାଖି ଏଗାର କୋଟି ଟଙ୍କାକୁ ବଢ଼ିଛି। ସେଭଳି ଜମା ସଂଗ୍ରହ ମଧ୍ୟ ପ୍ରଥମ ବର୍ଷ ଚାରିଲକ୍ଷ ଟଙ୍କା ବେଳେ ପଚାଶ ବର୍ଷ ପରେ ଆଠକୋଟି ଷାଠିଏ ଲକ୍ଷ ଏବଂ ୨୦୦୨ ଶେଷ ବେଳକୁ ୧୩୭ କୋଟି ଟଙ୍କାରୁ ଅଧିକା। ସମବାୟ ବ୍ୟାଙ୍କର ମୁଖ୍ୟ ସେବା ହେଉଛି କୃଷି ଋଣ। ଏ କ୍ଷେତ୍ରରେ ବ୍ୟାଙ୍କ୍ ତା'ର ଜନ୍ମ ବର୍ଷର ମାତ୍ର ଦୁଇ ଲକ୍ଷ ବାଇଶି ହଜାରରୁ ବଢ଼ି ପଚାଶ ବର୍ଷର ପ୍ରଗତିରେ ପାଖାପାଖି ଚଉଦ କୋଟି ଓ ୬୫ ବର୍ଷ ୨୦୦୨ ଆର୍ଥିକ ବର୍ଷ ବେଳକୁ ଏହି ପରିମାଣ ପଞ୍ଚାଅଶୀ କୋଟି ଟଙ୍କାରୁ ଅଧିକା ହୋଇଛି। ବ୍ୟାଙ୍କ୍ ଆର୍ଥିକ ପରିଚାଳନାକୁ ସମୀକ୍ଷା କରିବାକୁ ଗଲେ ତା'ର କାର୍ଯ୍ୟକାରୀ ମୂଳଧନର ସ୍ଥିତିକୁ ଦୃଷ୍ଟି ନିକ୍ଷେପ କରିବାକୁ ହୁଏ। ଏହି ପରିମାଣ ଚାରି ଲକ୍ଷ ଛତିଶି ହଜାରରୁ ବଢ଼ି ୧୯୮୭କୁ କୋଡ଼ିଏ କୋଟିରୁ ଅଧିକା ଓ ୨୦୦୨ ବର୍ଷ ଶେଷକୁ ଏହାଠାରୁ ଦଶଗୁଣ ବୃଦ୍ଧି ପାଇ ଦୁଇଶହ ଆଠ କୋଟି ଟଙ୍କାକୁ ଟପି ଯାଇଛି। ୨୦୦୨-୦୩ ଆର୍ଥିକ ବର୍ଷରେ ଏହି ସବୁ ପ୍ରଗତି ଆହୁରି ବୃଦ୍ଧି ପାଇବାର ଆଶା ରହିଛି। ଏମିତିକି ଅଂଶଧନ ୧୨ରୁ ୧୩ କୋଟି, ଜମା ସଂଗ୍ରହ ପରିମାଣ ଶହେ ଷାଠିଏ କୋଟି, ଋଣ ଯୋଗାଣ ଶହେ ପାଞ୍ଚ କୋଟି ଓ କାର୍ଯ୍ୟକାରୀ ମୂଳଧନ ପ୍ରାୟ ୨୨୫ କୋଟି ଟଙ୍କାରେ ପହଞ୍ଚି ଯିବାର ଲକ୍ଷ୍ୟ ଅଛି। ଏହିସବୁର ସତ୍ୟାସତ୍ୟ ହିସାବର ସମୀକ୍ଷା କରାଯିବା ପରେ ଜଣାଯିବ। ବ୍ୟାଙ୍କର ଆୟ ୨୦୦୧-୦୨ ବର୍ଷରେ ପୂର୍ବ ବର୍ଷଠାରୁ ୧୪.୩% ଶତାଂଶ ବୃଦ୍ଧି ଘଟି ୨୦.୨୯ କୋଟି ଟଙ୍କାରେ ପହଞ୍ଚିଛି ଏବଂ ଏହି ପରିମାଣ ବୃଦ୍ଧି ପାଇ ୨୦୦୨-୦୩କୁ ୨୨ କୋଟିରେ ପହଞ୍ଚି ଯିବାର ସୂଚନା ମିଳୁଛି। କର୍ମଚାରୀ ପିଛା ବ୍ୟବସାୟ ୧.୧୬ କୋଟି ଟଙ୍କାରୁ ୧.୩୯ କୋଟି ଟଙ୍କାକୁ ୨୦୦୧-୦୨ ମସିହାରେ ବଢ଼ିଛି। ଏଥିରେ ୨୦.୫ ଶତାଂଶ ଅଭିବୃଦ୍ଧି ଘଟି ୨୦୦୨-୦୩ରେ ୧.୬୮ କୋଟି ଟଙ୍କାରେ ପହଞ୍ଚିବାର ଆଶା ହେଉଛି, ଯାହା ଏହି ବ୍ୟାଙ୍କର କର୍ମଚାରୀମାନଙ୍କ ଦକ୍ଷତାର ବୃଦ୍ଧି ସାଂଗକୁ ବ୍ୟବସାୟର ପ୍ରଗତିକୁ ପ୍ରତିପାଦିତ କରାଏ

ବିଜ୍ଞାନ ମହାବିଦ୍ୟାଳୟ
ଆସିକା- ୭୬୧୧୧୧, ଗଂଜାମ

# ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାରେ ଅର୍ଥନୈତିକ ସ୍ୱଚ୍ଛଳତା




ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ନୀଳଗିରି ଏନ୍.ଏ.ସି. ୪ ନଂ ୱାର୍ଡ଼ ମିରିଗିଣି ବାସିନ୍ଦା ଶ୍ରୀ ବୃନ୍ଦାବନ ରଥ। ତାଙ୍କ ଶିକ୍ଷାଗତ ଯୋଗ୍ୟତା ସ୍ନାତକ ଓ ବୟସ ବର୍ତ୍ତମାନ ୩୫ ବର୍ଷ। ତାଙ୍କ ପିତା ଜଣେ ଦରିଦ୍ର ବ୍ରାହ୍ମଣ ଓ ସେ ଯଜମାନୀ କରିବା ସହ ପ୍ରାୟ ଚାଷ ଜମି ୪ ଏକରରୁ ଯାହା ମିଳୁଥିଲା, ସେଥିରେ ସେ ବର୍ଷସାରା ପରିବାର ପ୍ରତିପୋଷଣ କରିବା କଷ୍ଟକର ହୋଇ ପଡୁଥିଲା। ଏଣେ ବୃନ୍ଦାବନ ଚାକିରି ଅନ୍ୱେଷଣ କରି କରି ଥକି ଯାଇଥିଲେ। ବେକାରି ଓ ତା'ସାଙ୍ଗକୁ ଘରର ଆର୍ଥିକ ପରିସ୍ଥିତି ତାଙ୍କୁ ନିରାଶା ମଧ୍ୟକୁ ଠେଲି ଦେଇଥିଲା। ଏହିପରି ଏକ ମୁହୂର୍ତ୍ତରେ ବୃନ୍ଦାବନ ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନା ମାଧ୍ୟମରେ ଆତ୍ମନିଯୁକ୍ତି ସଂପର୍କରେ ଜାଣିବାକୁ ପାଇଥିଲେ। ଏହା ଜାଣିବାପରେ ତାଙ୍କ ମନରେ ଆଶାର ସଂଚାର ହୋଇଥିଲା। ଏହି ପରିପ୍ରେକ୍ଷୀରେ ସେ ଏକ ତେଜରାତି ଦୋକାନ କରିବାକୁ ଇଚ୍ଛା ପ୍ରକାଶ କରି ବାଲେଶ୍ୱର ଜିଲ୍ଲା ଶିଳ୍ପ କେନ୍ଦ୍ର ଅଧିକାରୀଙ୍କ ଦରଖାସ୍ତ ଦେଇଥିଲେ। ବୃନ୍ଦାବନଙ୍କ ପ୍ରକଳ୍ପଟି ଟ.୫୩,୦୦୦.୦୦ଙ୍କାର ଥିଲା। ଜିଲ୍ଲା ଶିଳ୍ପ କେନ୍ଦ୍ର ଅଧିକାରୀଙ୍କ ସୁପାରିଶ ପରେ ନୀଳଗିରି ୟୁକୋ ବ୍ୟାଙ୍କ ଟ୫୦,୦୦୦.୦୦ଙ୍କା ଉକ୍ତ ଯୋଜନାରେ ବୃନ୍ଦାବନଙ୍କୁ ୨୦୦୨-୦୩ ଆର୍ଥିକ ଋଣ ସହାୟତା ଯୋଗାଇ ଦେଇଥିଲେ। ଏହି ଋଣ ସହାୟତା ପାଇବା ପରେ ସେ ମାରୁତି ତେଜରାତି ଦୋକାନ ନାମରେ ମିରିଗିଣିଠାରେ ଏକ ତେଜରାତି ଦୋକାନ ଆରମ୍ଭ କରିଥିଲେ। ବର୍ତ୍ତମାନ ତାଙ୍କର ଏହି ଦୋକାନରେ ମାସିକ ଆୟ ପ୍ରାୟ ଟ.୨୫୦୦.୦୦ଙ୍କା ଏବଂ ଏଥିମଧ୍ୟରେ ଟ.୨୧,୩୦୦.୦୦ଙ୍କା ସେ ଋଣ ପରିଶୋଧ କରି ସାରିଲେଣି। ଏବେ ବୃନ୍ଦାବନଙ୍କର ପରିବାରର ଆର୍ଥିକ ଅବସ୍ଥାର ଉନ୍ନତି ଘଟିଛି ଏବଂ ବେକାର ଅବସ୍ଥା ଦୂରୀଭୂତ ହେବା ସଂଗେସଂଗେ ତାଙ୍କର ନିରାଶାଭାବ ମଧ୍ୟ ଦୂରେଇ ଯାଇଛି। ପ୍ରସଙ୍ଗକ୍ରମେ ସେ ବେକାର ଯୁବକଯୁବତୀମାନଙ୍କୁ ଏହି ଯୋଜନାରେ ସାମିଲ ହୋଇ ବିଭିନ୍ନ ପ୍ରକଳ୍ପ ମାଧ୍ୟମରେ ଅର୍ଥନୈତିକ ସ୍ୱଚ୍ଛଳତା ନିମନ୍ତେ ଆହ୍ୱାନ ଦେଇଛନ୍ତି।

ସୌଜନ୍ୟ : ଆଶୁତୋଷ ପାଇକରାୟ, ଉପଖଣ୍ଡ ସୂଚନା ଓ ଲୋକ ସଂପର୍କ ଅଧିକାରୀ, ନୀଳଗିରି





# ଓଡିଶାର ଅମ୍ଳାନ ସ୍ଥାପତ୍ୟ କୀର୍ତ୍ତିରାଜି

ଡଃ. ଚନ୍ଦ୍ରଭାନୁ ପଟେଲ

**ସ୍ଥା**ପତ୍ୟ-କଳାରେ ଉନ୍ନତିର ଚରମ ସୋପାନରେ ଆରୂଢ, ଓଡିଶାର ବୈଭବ ସମ୍ବନ୍ଧରେ ଚିନ୍ତା କଲେ, ବାସ୍ତବିକ୍ ବିସ୍ମିତ ହେବାକୁ ପଡେ । ଏ ଦେଶର ସ୍ଥାପତ୍ୟ କଳା, ପୃଥିବୀର ବହୁ ମନୀଷୀଙ୍କୁ ଆକୃଷ୍ଟ କରିଛି । ଓଡିଶାର ସ୍ଥାପତ୍ୟ-କଳା ସମ୍ବନ୍ଧରେ ଆଲୋଚନା କଲେ, ପ୍ରଥମେ ଆମର ଦୃଷ୍ଟି ପଡେ, ଅଶୋକଙ୍କ ନିର୍ଦ୍ଦେଶରେ ଧଉଳିଗିରିର ନିକଟସ୍ଥ 'କୌଶଲ୍ୟାଗଙ୍ଗ' ପୁଷ୍କରିଣୀର ଅନତିଦୂରରେ ଥିବା କ୍ଷୁଦ୍ର ପାହାଡ ଉପରେ ଖୋଦିତ ହସ୍ତୀର ସୁନ୍ଦର ମୂର୍ତ୍ତି ଉପରେ । ଚଣ୍ଡାଶୋକ ବୀରଦର୍ପରେ କଳିଙ୍ଗର ମାନମର୍ଦ୍ଦନ ଲାଗି ଧାଇଁ ଆସିଥିଲେ ସୁଦୂର ମଗଧ ଦେଶରୁ । ତତ୍‌ପୂର୍ବରୁ କଳିଙ୍ଗରେ ଜୈନଧର୍ମର ପ୍ରଚଳନ ଥିଲା ଏବଂ କଳିଙ୍ଗର ଶିଳ୍ପୀମାନେ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ମୂର୍ତ୍ତି ନିର୍ମାଣରେ ସୁଦକ୍ଷ ଥିଲେ । ଅଶୋକଙ୍କ ପୂର୍ବରୁ ମହାପଦ୍ମ ନନ୍ଦରାଜ କଳିଙ୍ଗ ଜୟକରି ଏଠାରୁ କଳିଙ୍ଗ ଜିନ-ମୂର୍ତ୍ତିଟିକୁ ନେଇଯାଇଥିଲେ । ସେହି ଜିନ-ମୂର୍ତ୍ତିଟି ଜୈନ ଧର୍ମର ଦଶମ ତୀର୍ଥଙ୍କର ଶୀତଳାନାଥଙ୍କର ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ପରବର୍ତ୍ତୀ କାଳରେ ଓଡିଶା ପୁଣି ଏକ ଶକ୍ତିଶାଳୀ ରାଜ୍ୟରେ ପରିଣତ ହେଲା ଏବଂ ସମ୍ରାଟ ଅଶୋକ ଏହି ବୀରଜାତିର ଗୌରବକୁ ଧୂଳିସାତ୍ କରିବା ପାଇଁ କଳିଙ୍ଗ ଆକ୍ରମଣ କରିଥିଲେ । କିନ୍ତୁ ମହାପରାକ୍ରମୀ ଅଶୋକ ଏହି କଳିଙ୍ଗ ଭୂମିରେ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ପୃଥିବୀରେ ଶାନ୍ତିର ଦୂତରୂପେ ଖ୍ୟାତି ଅର୍ଜ୍ଜନ କଲେ । ତେଣୁ ଖୁବ୍ ସମ୍ଭବତଃ ଅଶୋକଙ୍କ କଳିଙ୍ଗ ଯୁଦ୍ଧ ପରେ ତାଙ୍କରି ନିର୍ଦ୍ଦେଶରେ ଧଉଳିରେ ଶାନ୍ତିର ପ୍ରତୀକ ସ୍ୱରୂପ ହସ୍ତୀର ସମ୍ମୁଖ ଭାଗ ଖୋଦିତ ହୋଇଥିଲା । ଏହା ହିଁ ହେଉଛି, କଳିଙ୍ଗର ପ୍ରଥମ ସ୍ଥାପତ୍ୟ-କଳାର ନିଦର୍ଶନ ।



ଐରକୁଳତିଳକ ମହାମେଘବାହନ ଖାରବେଳଙ୍କ ରାଜତ୍ୱ ସମୟରେ ଆଧୁନିକ ଆନ୍ଧ୍ର ରାଜ୍ୟଠାରୁ ଆରମ୍ଭ କରି ଗୋରଥ ଗିରି (ଗୋବର୍ଦ୍ଧନ ଗିରି) ପର୍ଯ୍ୟନ୍ତ ପ୍ରବଳ ଆକ୍ରମଣ କରି କଳିଙ୍ଗର ହୃତ-ଗୌରବ ଫେରାଇ ଆଣିଥିଲେ । ଖାରବେଳଙ୍କ ରାଜତ୍ୱର ଶେଷଭାଗରେ ତାଙ୍କରି ଦ୍ୱାରା ଭୁବନେଶ୍ୱରର ଅନତିଦୂରରେ ଅବସ୍ଥିତ କୁମାରୀ ପର୍ବତ ଆଧୁନିକ ଖଣ୍ଡଗିରି ଓ ଉଦୟଗିରିରେ ସାଧୁସନ୍ନ୍ୟାସୀଙ୍କ ବସବାସ ପାଇଁ ବହୁ କାରୁକାର୍ଯ୍ୟପୂର୍ଣ୍ଣ ଗୁମ୍ଫାମାନ ନିର୍ମାଣ କରିଥିଲେ ଏବଂ ନନ୍ଦରାଜାଙ୍କ ଦ୍ୱାରା ଅପହୃତ ଜିନ-ମୂର୍ତ୍ତିଟିକୁ ମଗଧରୁ ଅଣାଇ, କଳିଙ୍ଗରେ ପୁନଃ ପ୍ରତିଷ୍ଠିତ କରିଥିଲେ ।

ଖାରବେଳଙ୍କ ପରେ ପ୍ରାୟ ୪/୫ ଶହ ବର୍ଷ ପର୍ଯ୍ୟନ୍ତ ଓଡିଶାର ଇତିହାସ ଅନ୍ଧକାରାଚ୍ଛନ୍ନ । ଏହାପରେ ଦୃଷ୍ଟି ପଡେ, ଶୈଳୋଦ୍ଭବଃ ବଂଶୀୟ ରାଜାମାନଙ୍କ ଦ୍ୱାରା ପଞ୍ଚମ-ଷଷ୍ଠ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର 'ଲକ୍ଷ୍ମଣେଶ୍ୱର', 'ଭରତେଶ୍ୱର', 'ଶତୃଘ୍ନେଶ୍ୱର', ତଥା 'ପରଶୁରାମେଶ୍ୱର' ମନ୍ଦିର ଉପରେ । ଏହି ସବୁ ମନ୍ଦିରର କାରୁକାର୍ଯ୍ୟ ତଥା ସ୍ଥାପତ୍ୟ-କଳା ବିଶ୍ୱବାସୀଙ୍କୁ ବିମୁଗ୍ଧ କରିଛି । ସପ୍ତମ-ଅଷ୍ଟମ ଶତାବ୍ଦୀରେ ଓଡିଶାର କଳା ଭାସ୍କର୍ଯ୍ୟ ସୁନ୍ଦର ଭାବରେ ଖୋଦିତ ହୋଇଛି ଯାଜପୁର ଜିଲ୍ଲାର 'ଉଦୟଗିରି', 'ଲଳିତଗିରି' ଓ 'ରତ୍ନଗିରି'ଠାରେ । ବୌଦ୍ଧ ସଂସ୍କୃତିରେ ପ୍ରଭାବିତ ଏହି ସ୍ଥାପତ୍ୟ-କଳାରେ ପ୍ରକାଶ ପାଇଛି, ଓଡିଆ ଶିଳ୍ପୀର ନିହାଣ-ମୁନର ସୂକ୍ଷ୍ମ କାରିଗରୀ ।

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଓଡିଶାରେ ପ୍ରତିଷ୍ଠିତ ହୁଏ 'ଭୌମକର' ରାଜବଂଶ । ଏହି ବଂଶର କଳାପ୍ରିୟ ରାଜା ରାଣୀମାନଙ୍କ





ଦ୍ୱାରା ଓଡିଶାର ବିଭିନ୍ନ ସ୍ଥାନରେ ଗଢିଉଠେ ଅନେକ ମନ୍ଦିର ଓ ମୂର୍ତ୍ତିବିଶେଷ । ଏହି ସମୟରେ ଯେଉଁସବୁ ମନ୍ଦିର ନିର୍ମିତ ହୋଇଥିଲା, ତନ୍ମଧ୍ୟରେ ରାଣୀ ମାଧବୀଦେବୀଙ୍କ ଦ୍ୱାରା 'ଯାଜପୁର'ରେ 'ମାଧବେଶ୍ୱର' ମନ୍ଦିର, ମହାରାଣୀ ହୀରାଦେବୀଙ୍କ ଦ୍ୱାରା ଭୁବନେଶ୍ୱରର ଅନତିଦୂରରେ ନିର୍ମିତ 'ହୀରାପୁର'ର ଚଉଷଠି ଯୋଗିନୀ ମନ୍ଦିର, ଯାଜପୁରର 'ବିରଜା ମନ୍ଦିର', ମହାରାଣୀ ଗୌରୀ ଦେବୀଙ୍କ ଦ୍ୱାରା ଭୁବନେଶ୍ୱରର 'ଗୌରୀ ମନ୍ଦିର' ଓ ମହାରାଣୀ ମୋହିନୀ ଦେବୀଙ୍କ ଦ୍ୱାରା ନିର୍ମିତ ମୋହିନୀ ମନ୍ଦିର ତଥା ବଇତାଳ ମନ୍ଦିର ବିଶେଷ ଉଲ୍ଲେଖଯୋଗ୍ୟ ।

ଏହି ସମୟରେ ଓଡିଶାରେ ତାନ୍ତ୍ରିକ ପୂଜା-ପଦ୍ଧତିର ପ୍ରଚଳନ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ତେଣୁ ଓଡିଶାର ଅନେକ ସ୍ଥାନରେ ତାନ୍ତ୍ରିକ ଦେବଦେବୀ ମୂର୍ତ୍ତି ନିର୍ମାଣ କରାଯାଇ ବିଭିନ୍ନ ମନ୍ଦିରରେ ପ୍ରତିଷ୍ଠା କରାଯାଉଥିଲା । ସେହି ମୂର୍ତ୍ତିମାନଙ୍କ ମଧ୍ୟରେ ଯାଜପୁରର ସପ୍ତମାତୃକା ମୂର୍ତ୍ତି ଓ କଟକ ଜିଲ୍ଲାର ଧର୍ମଶାଳା ଅଞ୍ଚଳରୁ ପ୍ରାପ୍ତ ତଥା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ବାରାହୀ, ବୈଷ୍ଣବୀ, 'ଇନ୍ଦ୍ରାଣୀ', ରୁଦ୍ରାଣୀ, ଚାମୁଣ୍ଡା ଓ ତାରା ଆଦି ମୂର୍ତ୍ତି ଅନ୍ୟତମ ।

ଖ୍ରୀଷ୍ଟୀୟ ନବମ, ଦଶମ ଶତାବ୍ଦୀରେ ଓଡିଶାରେ 'ସୋମବଂଶ'ର ରାଜତ୍ୱ ଆରମ୍ଭ ହୁଏ । ସୋମବଂଶୀମାନେ କାଳକ୍ରମେ ଶୈବଧର୍ମ ପ୍ରତି ଆକୃଷ୍ଟ ହୁଅନ୍ତି । ଏହି ବଂଶର ରାଜା 'ମହାଭବଗୁପ୍ତ ଜନ୍ମେଜୟ', 'ମହାଶିବଗୁପ୍ତ ଯଯାତି', 'ଉଦ୍ୟୋତକେଶରୀ' ଓ ରାଣୀ କୋଳାବତୀଙ୍କ ଦ୍ୱାରା ଭୁବନେଶ୍ୱରର ବିଖ୍ୟାତ ଲିଙ୍ଗରାଜ ମନ୍ଦିର, ମୁକ୍ତେଶ୍ୱର ମନ୍ଦିର, ସ୍ୱର୍ଣ୍ଣଜଳେଶ୍ୱର ମନ୍ଦିର, ଶୁକ୍ଳେଶ୍ୱରର 'ମାଣିକେଶ୍ୱର', ବେଳଖଣ୍ଡିର 'ଧବଳେଶ୍ୱର' ମନ୍ଦିର, ଭୁବନେଶ୍ୱରର 'ଶିଶିରେଶ୍ୱର', 'ମାର୍କଣ୍ଡେଶ୍ୱର' ଓ ପଞ୍ଚାୟତନ 'ବ୍ରହ୍ମେଶ୍ୱର' ମନ୍ଦିର, ବଡମ୍ବାର ସିଂହନାଥ ମନ୍ଦିର, ସୋନପୁରର 'କୁଶଳେଶ୍ୱର' ମନ୍ଦିର, ପଟିଆର ଜଳେଶ୍ୱର ମନ୍ଦିର, ପ୍ରାଚୀ ଉପତ୍ୟକାର 'ସୋମେଶ୍ୱର', 'ଅମରେଶ୍ୱର', 'ନାସିକେଶ୍ୱର', 'ଲତାହରଣ' ଓ ଖିଚିଂର ଉମାମହେଶ୍ୱର ମନ୍ଦିର ଓ କୀଚକେଶ୍ୱରୀ ମନ୍ଦିର ଆଦିର ନିର୍ମାଣ ଓଡିଆ ସ୍ଥାପତ୍ୟ କଳାର ପ୍ରକୃଷ୍ଟ ଉଦାହରଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସୋମବଂଶୀ ରାଜାଙ୍କଦ୍ୱାରା ଯେତେ ମନ୍ଦିର ନିର୍ମିତ ହୋଇଛି ତନ୍ମଧ୍ୟରେ 'ରାଜାରାଣୀ' ଓ 'ମୁକ୍ତେଶ୍ୱର' ମନ୍ଦିରର ଗଠନ ଅତି ସୁନ୍ଦର ଓ ସର୍ବୋକୃଷ୍ଟ ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ମୁକ୍ତେଶ୍ୱର ମନ୍ଦିର ଗାତ୍ରରେ ଭିନ୍ନ ଭିନ୍ନ ଭଙ୍ଗୀରେ ଦଣ୍ଡାୟମାନା ଅଳସକନ୍ୟା, ଗଜବିଡାଳ 'ଗଜସିଂହ', ସିଂହ ଉପରେ ଉପବିଷ୍ଟା 'ବୀରା ରମଣୀ', ନୃତ୍ୟରତା ମୁଗ୍‌ଧା ନାୟିକା, ମୈଥୁନ, ନରକିନ୍ନର, ଅଷ୍ଟଦଳ ପାଖୁଡାରେ ଉପବିଷ୍ଟା ସପ୍ତମାତୃକା, ମୃଗୟାର ଦୃଶ୍ୟ, ସନ୍ନ୍ୟାସୀଙ୍କ ନିକଟରେ ଅଧ୍ୟୟନରତ ଶିଷ୍ୟବର୍ଗ ତଥା ପରସ୍ପର ସଂଶ୍ଳିଷ୍ଟ ନାନାବିଧ ଗୋଲାକାର, ବର୍ଗାକାରି, ଆୟତାକାର ଚିତ୍ର ଓ ଲତାମାଳ ମନ୍ଦିରର ଶୋଭାକୁ ଅଧିକ ରୁଦ୍ଧିମନ୍ତ କରିଛି ।

ସୋମବଂଶର ରାଜତ୍ୱ ପରେ ଏକାଦଶ ଶତାବ୍ଦୀରେ ଓଡିଶାରେ ଗଙ୍ଗବଂଶ ରାଜତ୍ୱ ଆରମ୍ଭ ହୁଏ । ଗଙ୍ଗବଂଶର ଯଶସ୍ୱୀ ରାଜା ଓ ତାଙ୍କ ପରିବର୍ଗଙ୍କ ଦ୍ୱାରା ଓଡିଶାରେ ସ୍ଥାପତ୍ୟ କଳାର ଉନ୍ନତି ବିଧାନ ସ୍ୱରୂପ ଅନେକ ମନ୍ଦିର ଓ ମୂର୍ତ୍ତି ନିର୍ମିତ ହୋଇଥିଲା । ଏହି ମନ୍ଦିରମାନଙ୍କ ମଧ୍ୟରେ ପୁରୀର 'ଶ୍ରୀଜଗନ୍ନାଥ' ମନ୍ଦିର, କୋଣାର୍କର 'ସୂର୍ଯ୍ୟମନ୍ଦିର', ଭୁବନେଶ୍ୱରର 'ଅନନ୍ତ ବାସୁଦେବ' ମନ୍ଦିର, 'ଚାଟେଶ୍ୱର' ମନ୍ଦିର, 'ମେଘେଶ୍ୱର' ମନ୍ଦିର, ନିଆଳିର 'ଶୋଭନେଶ୍ୱର' ମନ୍ଦିର, ନିମାପଡାର ଅନତି ଦୂରରେ ଅବସ୍ଥିତ 'ସୋମନାଥ' ମନ୍ଦିର ଅନ୍ୟତମ ।

କୋଣାର୍କର ସୂର୍ଯ୍ୟ ମନ୍ଦିରର ଅମ୍ଳାନ କଳା ଓ ସ୍ଥାପତ୍ୟ ଆଜି ମଧ୍ୟ ଦର୍ଶକଙ୍କୁ ବିସ୍ମୟାଭିଭୂତ ଓ ବିମୁଗ୍‌ଧ କରେ । ସୂର୍ଯ୍ୟବଂଶର କପିଳେନ୍ଦ୍ରଦେବ  ପ୍ରତାପରୁଦ୍ରଦେବଙ୍କ ଦ୍ୱାରା ନିର୍ମିତ ଭୁବନେଶ୍ୱରର କପିଳେଶ୍ୱର ମହାନଦୀ ଗର୍ଭରେ ଧବଳେଶ୍ୱର ମନ୍ଦିର ଆଜି ମଧ୍ୟ ଓଡିଆ କଳାପରଂପରାର ସ୍ମାରକୀ ସ୍ୱର୍ଣ୍ଣାକ୍ଷରରେ ପ୍ରତିଫଳିତ କରେ ।

ଅଧ୍ୟକ୍ଷ
ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

■ ■ ■



# ଅନେକ ସମ୍ଭାବନାରେ ଭରା ଆମ ଇସ୍ପାତ ଓ ଆଲୁମିନା ଶିଳ୍ପ

ତାଜୁଦ୍ଦିନ ଅହେମଦ

**ଖ**ଣିଜ ସମ୍ପଦରେ ଭରପୂର ଓଡ଼ିଶାରେ, ଖଣିଜ ଉନ୍ନୟନ କ୍ଷେତ୍ରରେ ଏକ ନୂତନ ସମ୍ଭାବନା ସୃଷ୍ଟି ହୋଇଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଦ୍ୱିତୀୟଥର ଶାସନଭାର ଗ୍ରହଣ କରିଥିବା ସରକାରଙ୍କର ଏହା ଏକ ଯୁଗାନ୍ତକାରୀ ସଫଳତା । ଅତୀତରେ ଖଣିଜ ଉନ୍ନୟନ ତଥା ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା ପାଇଁ ଏଭଳି ବଡ଼ ଧରଣର ଯୋଜନା ପୂର୍ବରୁ କେବେ କାର୍ଯ୍ୟକାରୀ କରାଯାଇନଥିଲା ।

ଗତ ୨୦୦୩ ଅକ୍ଟୋବର ମାସରୁ ଏ ପର୍ଯ୍ୟନ୍ତ ୧୫ ଗୋଟି ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ଏବଂ ଘରୋଇ କମ୍ପାନୀମାନଙ୍କ ମଧ୍ୟରେ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇ ଏକ ନୂତନ ରେକର୍ଡ଼ ସୃଷ୍ଟି ହୋଇଛି । ରାଜ୍ୟ ସରକାରଙ୍କର ବିଶ୍ୱାସନୀୟତା, ସ୍ୱଚ୍ଛ ନିର୍ମଳ ପ୍ରଶାସନ ତଥା ଶିଳ୍ପପତିମାନଙ୍କୁ ସହଯୋଗ କରିବା ପାଇଁ ସିଙ୍ଗଲୱିଣ୍ଡୋ ବ୍ୟବସ୍ଥା ପ୍ରଚଳନ, ରାଜ୍ୟ ବାହାରର ବହୁ ବିଶିଷ୍ଟ ଶିଳ୍ପପତିମାନଙ୍କୁ ଏହି ରାଜ୍ୟରେ ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା ପାଇଁ ଆକୃଷ୍ଟ କରିପାରିଛି । ଏପର୍ଯ୍ୟନ୍ତ ପ୍ରସ୍ତାବିତ ଲୌହ ଇସ୍ପାତ ଓ ଆଲୁମିନା କାରଖାନାମାନଙ୍କରେ ପ୍ରାୟ ୫୦ ହଜାର କୋଟି ଟଙ୍କାର ପୁଞ୍ଜି ବିନିଯୋଗ ହେବ ବୋଲି ଅଟକଳ କରାଯାଇଛି ।

ସରକାରୀ ସୂତ୍ରରୁ ପ୍ରକାଶ ଯେ, ଆହୁରି ୧୫ ଗୋଟି ଘରୋଇ କମ୍ପାନୀ ମେଗା ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ତନ୍ମଧ୍ୟରେ 'ଟାଟା ଷ୍ଟିଲ', 'ଦକ୍ଷିଣ କୋରିଆର ପୋସ୍କୋ', ଦୁଇଗୋଟି ପ୍ରମୁଖ ସଂସ୍ଥା ଅଟନ୍ତି । କର୍ଣ୍ଣାଟକରେ ଥିବା ଭାରତ ସରକାରଙ୍କର କୁଦ୍ରାମୁଖୀ ଇସ୍ପାତ କାରଖାନା, ଓଡ଼ିଶାରେ ଏକ ଇସ୍ପାତ ପ୍ରକଳ୍ପ ପ୍ରତିଷ୍ଠା କରିବା ପାଇଁ ଆଗ୍ରହ ପ୍ରକାଶ କରି ରାଜ୍ୟ ସରକାରଙ୍କୁ ସୁବିଧା-ସୁଯୋଗ ଯୋଗାଇ ଦେବାପାଇଁ ଅନୁରୋଧ କରିଛି । ଏବେ ରାୟଗଡ଼ା ଜିଲ୍ଲାର କାଶୀପୁରଠାରେ ଏକ ରପ୍ତାନୀଭିତ୍ତିକ ଆଲୁମିନିୟମ ପ୍ରକଳ୍ପ 'ଉତ୍କଳ ଆଲୁମିନା କାରଖାନା', ଆଦିତ୍ୟ ବିରଳା କମ୍ପାନୀ ପକ୍ଷରୁ ପ୍ରତିଷ୍ଠା ହେବାକୁ ଯାଉଛି । ଏହିପରି ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କମ୍ପାନୀ ବି.ଏଚ୍.ପି. ବିଲିଟନ୍ ନିଜେ ୧୦ ହଜାର କୋଟି ଟଙ୍କାର ଏକ ଇସ୍ପାତ ପ୍ରକଳ୍ପ ଆମ ରାଜ୍ୟରେ ପ୍ରତିଷ୍ଠା କରିବା ସହ ଆଉ ଏକ କମ୍ପାନୀ 'ପୋହାଙ୍ଗ ଇସ୍ପାତ କମ୍ପାନୀ' ସହ ମିଶି ୩୫ ହଜାର କୋଟି ଟଙ୍କାର ବିଶ୍ୱର ଏକ ବୃହତ୍ତମ ମିଳିତ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଆଗ୍ରହ ପ୍ରକାଶ କରିଛି । ସଂପ୍ରତି, ବ୍ରିଟେନର ଖ୍ୟାତନାମା ଇସ୍ପାତ କାରଖାନା 'ଷ୍ଟେମ୍‌କୋ' ମଧ୍ୟ ଓଡ଼ିଶାରେ ଲୌହ କାରଖାନା ପ୍ରତିଷ୍ଠା ପାଇଁ ଇଚ୍ଛା ପ୍ରକାଶ କରିଛି । ଆମ ରାଜ୍ୟରେ ବୁଝାମଣାପତ୍ର ସ୍ୱାକ୍ଷର କରିଥିବା ଶିଳ୍ପ ସଂସ୍ଥା ମଧ୍ୟରୁ ଏକ ନିୟୁତ ଟନରୁ ଅଧିକ କ୍ଷମତା ସମ୍ପନ୍ନ ୩ ଗୋଟି ମେଗା ଇସ୍ପାତ ପ୍ରକଳ୍ପ ହେଲା - 'ଭୂଷଣ ଗ୍ରୁପ୍', 'ଷ୍ଟେରଲାଇଟ୍' ଓ 'ଜିନ୍ଦଲ ସଂସ୍ଥା' ।

ରାଜ୍ୟର ପ୍ରତିଷ୍ଠିତ ଶିଳ୍ପ ସଂସ୍ଥା ରାଉରକେଲା ଇସ୍ପାତ କାରଖାନାକୁ ଛାଡ଼ି ଦେଲେ, ପ୍ରାୟ ୨୫ରୁ ୩୦ଟି ଯାଏଁ ପିଗ୍‌ଲୁହା କାରଖାନା ଆମ ରାଜ୍ୟରେ ରହିଛି । ତନ୍ମଧ୍ୟରୁ କେବଳ ୨/୩ଟି କାରଖାନାରେ ବାର୍ଷିକ ଏକ ନିୟୁତ ଟନ୍ ପିଗ୍ ଇସ୍ପାତ ଉତ୍ପାଦନ କରାଯାଏ । ରାଜ୍ୟରେ ପୁଞ୍ଜି ବିନିଯୋଗକୁ ପ୍ରୋତ୍ସାହିତ କରିବା ପାଇଁ ରାଜ୍ୟ ସରକାର ଗ୍ରହଣ କରୁଥିବା ପଦକ୍ଷେପଗୁଡ଼ିକ ଦ୍ୱାରା ଆକୃଷ୍ଟ ହୋଇ ଗତ ନଭେମ୍ବର ୨୭ ତାରିଖ ଦିନ ଆଉ ୧୦ ଗୋଟି ଶିଳ୍ପ ସଂସ୍ଥା ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ସରକାରଙ୍କ ସହ ଚୁକ୍ତିବଦ୍ଧ ହୋଇଛନ୍ତି । ଗୋଟିଏ ଦିନରେ ଏକକାଳୀନ ୧୦ଟି ଶିଳ୍ପ ସଂସ୍ଥା ସରକାରଙ୍କ ସହ ବୁଝାମଣାପତ୍ର ସ୍ୱାକ୍ଷର କରିବା ଓଡ଼ିଶାରେ ପ୍ରଥମ ଘଟଣା । ଏହି ସଂସ୍ଥାମାନଙ୍କ ମଧ୍ୟରେ ମେସର୍ସ ଓ.ସି.ଏଲ୍. ଇଣ୍ଡିଆ ଲିଃ ସୁନ୍ଦରଗଡ଼ ଜିଲ୍ଲାର ରାଜଗାଙ୍ଗପୁରଠାରେ ମେସର୍ସ ଏ.ଏମ୍.ଏଲ୍. ଷ୍ଟିଲ୍ ଆଣ୍ଡ ପାୱାର ଲିଃ, ଯାଜପୁର ଜିଲ୍ଲାର କଳିଙ୍ଗନଗରଠାରେ, ମେସର୍ସ ମାହେଶ୍ୱରୀ ଇସ୍ପାତ ପ୍ରାଇଭେଟ୍ ଲିଃ, କଟକ ଜିଲ୍ଲାର ଖୁଣ୍ଟୁଣି ନିକଟସ୍ଥ ରମ୍ପୈଇଠାରେ, ମେସର୍ସ ମୋନେଟ୍ ଇସ୍ପାତ ଲିଃ, ଢେଙ୍କାନାଳ ଜିଲ୍ଲାର ମଙ୍ଗଳପୁରଠାରେ, ମେସର୍ସ ଆରିୟାନ୍ ଇସ୍ପାତ୍ ଆଣ୍ଡ୍ ପାୱାର ପ୍ରାଇଭେଟ୍ ଲିଃ., ସମ୍ବଲପୁର ଜିଲ୍ଲାର ବୋମଲାଇଠାରେ, ମେସର୍ସ ଆକ୍‌ସନ୍ ଇସ୍ପାତ ଆଣ୍ଡ ପାୱାର ଲିଃ. ଝାରସୁଗୁଡ଼ା ଜିଲ୍ଲାର ପାଣ୍ଡ୍ରିପଥରଠାରେ, ମେସର୍ସ ଅଗ୍ରୀମ ଷ୍ଟିଲ୍ ଇଣ୍ଡିଷ୍ଟ୍ରିଜ୍ ଲିଃ, ଝାରସୁଗୁଡ଼ା ଜିଲ୍ଲାର ପାଣ୍ଡ୍ରିପଥରଠାରେ, ମେସର୍ସ ଶ୍ରୀ ମେଟାଲିକସ୍ ସୁନ୍ଦରଗଡ଼ ଜିଲାର ଲୋଇପଡ଼ା ନିକଟସ୍ଥ ବରବିଲଠାରେ, ମେସର୍ସ ଏମ୍.ଏସ୍.ପି. ମେଟାଲିକ୍ସ ପ୍ରାଇଭେଟ୍ ଲିଃ, ଝାରସୁଗୁଡ଼ା ଜିଲ୍ଲାର ମାରକୁଟାଠାରେ, ମେସର୍ସ ମାଲ୍ ଇଣ୍ଡିଷ୍ଟ୍ରିଜ୍ ଯାଜପୁର ଜିଲ୍ଲା କଳିଙ୍ଗନଗରଠାରେ ଇସ୍ପାତ କାରଖାନାମାନ ପ୍ରତିଷ୍ଠା





କରିବେ । ଏହି ଦଶଗୋଟି ପ୍ରକଳ୍ପ ପାଇଁ ପ୍ରାୟ ଦୁଇହଜାର ଆଠଶହ କୋଟି ଟଙ୍କା ବିନିଯୋଗ କରାଯିବ ଓ ସମସ୍ତ ପ୍ରକଳ୍ପ ସମ୍ପୂର୍ଣ୍ଣ ହୋଇ କାର୍ଯ୍ୟକ୍ଷମ ହେଲେ ବାର୍ଷିକ ୨୭ ନିୟୁତ ଟନ୍ ଇସ୍ପାତ ଉତ୍ପାଦିତ ହେବ । ଏହିସବୁ କମ୍ପାନୀ ରାଜ୍ୟରେ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ପରେ, ସେମାନଙ୍କ ଆବଶ୍ୟକତାକୁ ଚାହିଁ ରାଜ୍ୟ ସରକାରଙ୍କ ପକ୍ଷରୁ ଖଣି ନିଗମ ଜରିଆରେ କଞ୍ଚାମାଲ ଯୋଗାଇ ଦିଆଯିବ ବା ଖଣି ଲିଜ୍ ନିମନ୍ତେ କେନ୍ଦ୍ର ସରକାରଙ୍କ ନିକଟକୁ ସୁପାରିଶ କରିବା ପାଇଁ ସରକାରୀ ସ୍ତରରେ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଯାଜପୁର ଜିଲ୍ଲାର କଳିଙ୍ଗନଗର ଶିଳ୍ପାଞ୍ଚଳରେ ପ୍ରାୟ ୧୩ ଗୋଟି ଇସ୍ପାତ କାରଖାନା ନିର୍ମିତ ହେବାକୁ ଯାଉଛି । ଏହି କାରଖାନା ନିର୍ମାଣ ସରିଲେ ଉକ୍ତ ଅଞ୍ଚଳ ସମଗ୍ର ବିଶ୍ୱରେ ଇସ୍ପାତ ଉତ୍ପାଦନ ତଥା ବ୍ୟବହାରୀକାରୀଙ୍କ ଦୃଷ୍ଟି ଆକର୍ଷଣ କରିବା ସହ ଇସ୍ପାତ ଶିଳ୍ପ ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିବ । ଯାଜପୁର ଜିଲ୍ଲାର ଡୁବୁରୀଠାରେ ନୀଳାଚଳ ଇସ୍ପାତ କାରଖାନା ପ୍ରତିଷ୍ଠିତ ହୋଇ ପିଗ୍ ଆଇରନ୍ ଉତ୍ପାଦନ ଆରମ୍ଭ କରିଛି । ବ୍ୟାସନଗର ସହରାଞ୍ଚଳକୁ ଲାଗି ଯଖପୁରା ଅଞ୍ଚଳରେ ଦୀନବନ୍ଧୁ ଷ୍ଟିଲ କାରଖାନା, ଜିନ୍ଦଲ ଷ୍ଟିଲ୍, ଭିସା ଇଣ୍ଡଷ୍ଟ୍ରି, ମେସ୍‌କୋ, କେ.ଜେ. ଆଦିତ୍ୟ, ମହାରାଷ୍ଟ୍ରର ସିମ୍‌ଲେଶ କମ୍ପାନୀ । ମୈଥାନ ଗ୍ରୁପ୍ ଓ ପଟନି ଗ୍ରୁପ୍ ପ୍ରଭୃତି ସଂସ୍ଥା ଭୂମି ଦଖଲ କରି ଦ୍ରୁତ ଗତିରେ ନିଜର କାରଖାନା ନିର୍ମାଣରେ ଲାଗି ପଡ଼ିଛନ୍ତି ଏବଂ କେତେକ କାରଖାନାର ନିର୍ମାଣ ପ୍ରାୟ ଶେଷ ପର୍ଯ୍ୟାୟରେ । ଏହି ଅଞ୍ଚଳରେ ଦକ୍ଷିଣ କୋରିଆର ପୋସ୍‌କୋ, ଜାମସେଦ୍‌ପୁରର ଟିସ୍‌କୋ ଏବଂ ସରିତା ଷ୍ଟିଲ ମଧ୍ୟ ଖୁବ୍‌ଶିଘ୍ର ସେମାନଙ୍କ କାରଖାନା ନିର୍ମାଣ କରିବାକୁ ଯାଉଛନ୍ତି । ସମ୍ବଲପୁର ଜିଲ୍ଲାର ରେଙ୍ଗାଲି ବ୍ଲକ୍ ଅନ୍ତର୍ଗତ ଠେଙ୍ଗୁଲିଠାରେ ଭୂଷଣ ଷ୍ଟିଲ୍ କାରଖାନା ଓ ଝାରସୁଗୁଡ଼ା ଏସ୍.ପି.ଏସ୍. କାରଖାନାର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି । ଶିଳ୍ପଶୂନ୍ୟ କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ଠାରେ ଷ୍ଟେରଲାଇଟ୍ କମ୍ପାନୀ ଦ୍ୱାରା ବେଦାନ୍ତ ଆଲୁମିନା ପ୍ରକଳ୍ପ କାର୍ଯ୍ୟ ମଧ୍ୟ ଆଗେଇ ଚାଲିଛି ।

ଓଡ଼ିଶାରେ ବର୍ତ୍ତମାନ ୪୦ ଗୋଟିରୁ ଅଧିକ ସ୍ପଞ୍ଜ ଆଇରନ୍ କାରଖାନା ଥିବାବେଳେ ସେଗୁଡ଼ିକର ଉତ୍ପାଦନ କ୍ଷମତା ହେଉଛି ତିନି ମିଲିୟନ ଟନ୍ । ୨୦୧୦ ମସିହା ସୁଦ୍ଧା ଦେଶର ଇସ୍ପାତ ବଜାର ଦୁଇଗୁଣ ହେବାକୁ ଥିବାବେଳେ ସ୍ପଞ୍ଜ ଆଇରନ୍‌ଗୁଡ଼ିକର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ହେବ ଏହା ନିଃସନ୍ଦେହ । ରାଜ୍ୟ ସରକାର ସ୍ପଞ୍ଜ ଆଇରନ୍ କାରଖାନାଗୁଡ଼ିକୁ ଖଣି ଲିଜ୍ ଦେବାର କୌଣସି ବ୍ୟବସ୍ଥା ନାହିଁ । ସେମାନେ ଖୋଲା ବଜାରରୁ ଆବଶ୍ୟକୀୟ ଲୁହାପଥର କିଣି ନିଜର ଆବଶ୍ୟକତା ପୂରଣ କରିପାରିବେ ।

ନିକଟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଯାଜପୁର ଜିଲ୍ଲାର ଡୁବୁରୀ, ସମ୍ବଲପୁର ଓ ଝାରସୁଗୁଡ଼ା ଜିଲ୍ଲା ଗସ୍ତକରି ସେଠାରେ ନିର୍ମାଣାଧୀନ ଇସ୍ପାତ କାରଖାନା ଓ ବିଦ୍ୟୁତ୍ ପ୍ରକଳ୍ପଗୁଡ଼ିକ ପରିଦର୍ଶନ କରି ଏହାର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରିଥିଲେ । ନିର୍ମାଣ କାର୍ଯ୍ୟରେ ଦେଖା ଦେଉଥିବା ବିଭିନ୍ନ ଅସୁବିଧା ଓ ସମସ୍ୟା ସମ୍ପର୍କରେ ସରକାରୀ ପଦାଧିକାରୀ ଓ ଶିଳ୍ପୋଦ୍ୟୋଗୀଙ୍କ ସହ ଆଲୋଚନା କରିଥିଲେ । ଏହି ଗସ୍ତ ଅବସରରେ ଯାଜପୁର ଜିଲ୍ଲା ଯଖପୁରାଠାରେ ଭିସା ଇଣ୍ଡଷ୍ଟ୍ରି ପକ୍ଷରୁ ନିର୍ମାଣ ହେବାକୁ ଥିବା ଏକଶହ କୋଟି ମୂଳଧନର ଫେରୋକ୍ରୋମ କାରଖାନାର ଶିଳାନ୍ୟାସ କରିଥିଲେ ଓ ଝାରସୁଗୁଡ଼ା ଜିଲ୍ଲା ଏସ୍.ଏମ୍.ସି. ପାୱାର ଜେନେରେସନ୍ ଲିମିଟେଡ୍‌ର ସ୍ପଞ୍ଜ ଆଇରନ୍ କାରଖାନାର ପରୀକ୍ଷାମୂଳକ ଉତ୍ପାଦନର ଶୁଭାରମ୍ଭ କରିଥିଲେ । ପ୍ରକଳ୍ପ ନିର୍ମାଣ କ୍ଷେତ୍ରରେ ଥିବା ବିଭିନ୍ନ ପ୍ରତିବନ୍ଧକ ହୃଦବୋଧ କରି ଏହାର ପ୍ରତିକାର କରିବା, ସ୍ଥାନୀୟ ଲୋକମାନଙ୍କ ମଧ୍ୟରେ ସହଯୋଗର ମନୋବୃତ୍ତି ଜାଗ୍ରତ କରିବା, ସରକାର ରାଜ୍ୟରେ ଶିଳ୍ପ ପ୍ରତିଷ୍ଠା ପ୍ରତି ବିଶେଷ ଆଗ୍ରହୀ ତଥା ଗୁରୁତ୍ୱାରୋପ କରୁଥିବା ଏବଂ ଘରୋଇ ଶିଳ୍ପପତିମାନଙ୍କୁ ପ୍ରଶାସନିକ ଅଧିକାରୀମାନେ ଯେପରି ଆନ୍ତରିକତାର ସହ ତତ୍କାଳ ସାହାଯ୍ୟ ସହଯୋଗ ଯୋଗାଇଦେବା ପାଇଁ ଯତ୍ନବାନ ହେବେ, ଏହି ବାର୍ତ୍ତା ମୁଖ୍ୟମନ୍ତ୍ରୀ ନିଜର ଗସ୍ତ ମାଧ୍ୟମରେ ପ୍ରଦାନ କରିଥିଲେ ।

ପ୍ରସ୍ତାବିତ ଇସ୍ପାତ ଓ ଆଲୁମିନା ପ୍ରକଳ୍ପଗୁଡ଼ିକ ଆଗାମୀ କିଛି ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ହୋଇ ଉତ୍ପାଦନ ଆରମ୍ଭ କଲେ ରାଜ୍ୟର ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଘଟିବ । ସରକାର ବର୍ଷକୁ କୋଟି କୋଟି ଟଙ୍କା ରୟାଲଟି ପାଇବେ । ରାଜ୍ୟର ଇଞ୍ଜିନିୟରିଂ ତାଲିମପ୍ରାପ୍ତ ଛାତ୍ରଛାତ୍ରୀ ତଥା ଶିକ୍ଷିତ ବେକାର ଯୁବକ ଯୁବତୀମାନଙ୍କୁ ନିଯୁକ୍ତି ମିଳିବ । ଦୈନିକ ହଜାର ହଜାର ଶ୍ରମିକ କାମ ପାଇପାରିବେ । କାରଖାନାର କର୍ମଚାରୀମାନଙ୍କ ପାଇଁ ବାସଗୃହ ନିର୍ମାଣ ହେବା ଫଳରେ ନୂତନ ଜନବସତି ଓ ସହରାଞ୍ଚଳ ଓ ବ୍ୟବସାୟ ପ୍ରତିଷ୍ଠାନମାନ ଗଢ଼ି ଉଠିବ । କାରଖାନାରୁ ଉତ୍ପାଦିତ ଦ୍ରବ୍ୟର ପରିବହନ ଲାଗି ଗମନାଗମନର ବିକାଶ ଘଟିବ । ରାସ୍ତାଘାଟ ନିର୍ମାଣ କରାଯିବ, ବିଭିନ୍ନ କାରଖାନାକୁ ରେଳପଥ କିମ୍ବା ସାମୁଦ୍ରିକ ବନ୍ଦର ସହ ସଂଯୋଗ କରାଯିବ । ରେଳ ଓ ଟ୍ରକ ଯୋଗେ ମାଲ ପରିବହନ କାର୍ଯ୍ୟ ଦ୍ରୁତ ହେବ । ବିଭିନ୍ନ କାରଖାନା ଓ ତତ୍‌ସଂଲଗ୍ନ ସହରାଞ୍ଚଳକୁ ନଦୀରୁ ପାନୀୟ ଜଳ ଯୋଗାଣ ଓ ବିଦ୍ୟୁତ ଯୋଗାଣ ହେବା ଫଳରେ ଉକ୍ତ ଅଞ୍ଚଳବାସୀ ଉପକୃତ ହେବେ । କାରଖାନା ନିର୍ମାଣ ପାଇଁ ଆବଶ୍ୟକୀୟ ବ୍ୟକ୍ତିଗତ ମାଲିକାନାରେ ଥିବା ଜମିକୁ ଭୂ-ଅର୍ଜନ ଆଇନ ଅନୁସାରେ ସରକାର ଅଧିଗ୍ରହଣ କରୁଥିବାରୁ ଜମି ମାଲିକମାନେ କ୍ଷତିପୂରଣ ବାବଦ ପର୍ଯ୍ୟାପ୍ତ ଟଙ୍କା ସରକାରଙ୍କଠାରୁ ପାଇବେ । ବାସଚ୍ୟୁତ ଲୋକମାନଙ୍କୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଥିବା ନୂତନ କଲୋନୀ ଜରିଆରେ ଥଇଥାନ କରାଯିବ । ସ୍ଥାନୀୟ ଓ ବାସଚ୍ୟୁତମାନଙ୍କର ମନୋନୀତ ବ୍ୟକ୍ତିମାନଙ୍କୁ ପ୍ରତ୍ୟକ୍ଷ ନିଯୁକ୍ତି ମିଳିବା ସହ, କ୍ଷତିଗ୍ରସ୍ତ ଲୋକମାନଙ୍କୁ ଯୋଗ୍ୟତା ଭିତ୍ତିରେ ନିଯୁକ୍ତି ମିଳିବା ଭଳି ଅନେକ ସମ୍ଭାବନା ସୃଷ୍ଟି କରିଛି ଆମ ଇସ୍ପାତ ଓ ଆଲୁମିନା ଶିଳ୍ପ ।

ତଥ୍ୟ ଓ ଗବେଷଣା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# କନ୍ଧ ଚିତ୍ରକଳା : ମାଞ୍ଜିଗୁଣ୍ଡା

ସୁମତୀ ବେହେରା

ଓଡ଼ିଶାରେ ବାସ କରୁଥିବା ଆଦିବାସୀମାନଙ୍କ ମଧ୍ୟରେ କନ୍ଧ ଜନଜାତିଙ୍କର ସଂଖ୍ୟା ସର୍ବାଧିକ । ଏମାନେ ମୁଖ୍ୟତଃ ଫୁଲବାଣୀ, କୋରାପୁଟ, ଗଂଜାମ, କଳାହାଣ୍ଡି, ସମ୍ବଲପୁର, ଢେଙ୍କାନାଳ ଓ ପୁରୀ ଜିଲ୍ଲାମାନଙ୍କରେ ବାସ କରନ୍ତି । ୧୯୮୧ ମସିହା ଜନଗଣନା ଅନୁସାରେ ଏମାନଙ୍କର ସଂଖ୍ୟା ୯,୮୯,୩୪୨ । କନ୍ଧମାନେ ସାଧାରଣତଃ କୁଟିଆ କନ୍ଧ, ଡଙ୍ଗରିଆ କନ୍ଧ ଓ ଦେଶିଆ କନ୍ଧ ଏହିପରି ତିନି ଭାଗରେ ବିଭକ୍ତ । ଏମାନଙ୍କ ଭାଷା କୁଭି ବା କୁଇ ନାମରେ କଥିତ । ଏହା ଦ୍ରାବିଡ଼ ଭାଷା ପରିବାରର ଅନ୍ତର୍ଭୁକ୍ତ ।

### ଜନବସତି

କୁଟିଆ କନ୍ଧମାନେ ଫୁଲବାଣୀ ଜିଲ୍ଲାର ବେଲଘର ଅଞ୍ଚଳ ଯଥା- ମାଦଲ କୁନା, ଗଙ୍ଗାବାରୁ, ତୁଆକେଲା, ଦେଓଗଡ଼ା, ତାଲାମ୍ ପଦର, କୁସୁମୁଣ୍ଡା ଇତ୍ୟାଦି କ୍ଷୁଦ୍ର ଗ୍ରାମରେ ବାସ କରନ୍ତି । ଡଙ୍ଗରିଆ କନ୍ଧମାନେ କୋରାପୁଟ ଜିଲ୍ଲାର ଖମ୍ବେସି, ଚାଟିକଣା ଓ କୁର୍ଲି ପାହାଡ଼ ଶୀର୍ଷରେ ବାସ କରନ୍ତି ଓ ଦେଶୀଆ କନ୍ଧମାନେ ନିକଟସ୍ଥ ସମତଳ ଅଞ୍ଚଳରେ ଅଣ-ଆଦିବାସୀମାନଙ୍କ ସହ ବସତି ସ୍ଥାପନ କରନ୍ତି ।

ଏମାନେ ବାସ କରୁଥିବା ଗ୍ରାମଗୁଡ଼ିକରେ ଧାଡ଼ି ଧାଡ଼ି ହୋଇ ବାସ ଗୃହମାନ ଦାଣ୍ଡର ଉଭୟ ପାର୍ଶ୍ୱରେ ଅବସ୍ଥିତ । ଏହି ଗ୍ରାମରେ ଅବିବାହିତ ବାଳକମାନଙ୍କ ପାଇଁ ଧାଙ୍ଗଡ଼ା ଘର ଓ ବାଳିକାମାନଙ୍କ ପାଇଁ ଧାଙ୍ଗଡ଼ି ବସା ସ୍ୱତନ୍ତ୍ର ଭାବେ ନିର୍ମିତ ହୋଇଥାଏ ।

### ଜୀବନଯାପନ ପ୍ରଣାଳୀ

କନ୍ଧମାନେ କେତେକ ଗୋତ୍ରରେ ବିଭକ୍ତ । ଏମାନଙ୍କ ମଧ୍ୟରେ ସମଧିକ ପରିମାଣରେ ଗୋଷ୍ଠୀଗତ ଜୀବନ ଦେଖାଯାଏ । ପ୍ରତି ଗ୍ରାମରେ ଦେବପୂଜା ପାଇଁ ଜାନି ବା ଦେହୁରି ଓ ଭଲମନ୍ଦ ତିଥି, ବାର ଦର୍ଶାଇବାକୁ ଦିଶାରି ଥାଏ ।

ଜୀବିକା ଅର୍ଜନ ପାଇଁ କନ୍ଧମାନେ କୃଷି, ବନ୍ୟଜନ୍ତୁ ଶିକାର, ଫଳମୂଳ ସଂଗ୍ରହ, ବ୍ୟତୀତ ଅନ୍ୟାନ୍ୟ କୁଟୀର ଶିଳ୍ପ ମଧ୍ୟ କରିଥାନ୍ତି । ପାହାଡ଼ ଉପରେ ଏମାନେ ପୋଡୁ ଚାଷ କରନ୍ତି ।



### ଧର୍ମ ଧାରଣା ଓ ସାମାଜିକ ସଂସ୍କୃତି

ଉକ୍ତ ଅଧ୍ୟାୟରେ ପ୍ରଥମେ ଡଙ୍ଗରିଆ କନ୍ଧଙ୍କ ବିଷୟରେ ଆଲୋଚିତ ହେବାକୁ ଯାଉଛି । ଡଙ୍ଗରିଆ କନ୍ଧମାନେ ବିଭିନ୍ନ ପର୍ବପର୍ବାଣି ପାଳନ କରନ୍ତି । ସେମାନଙ୍କ ମୁଖ୍ୟ ଦେବତା 'ଧରଣୀ ପେନୁ' । ସେମାନେ ପୂଜା କରୁଥିବା ୮୪ଟି ଦେବଦେବୀ ମଧ୍ୟରେ ଧରମ୍‌ପେନୁ, ସାରୁପେନୁ, ତାରୁପେନୁ ହେଉଛନ୍ତି ମୁଖ୍ୟ ଦେବତା । ଏମାନଙ୍କର ଗ୍ରାମ ଦେବତା ହେଉଛନ୍ତି 'ଜାକାରୁ ପେନୁ' । ରୋଗ ବଇରାଗ, ଫସଲ ନିମନ୍ତେ ଏମାନେ ଭୂମି ଦେବତାଙ୍କୁ ପୂଜା କରନ୍ତି । ପୂଜାରେ ଦିଆଯାଉଥିବା ବଳି 'ଜାନି'ଙ୍କ ଦ୍ୱାରା ସମାହିତ ହୁଏ ।

ଏମାନେ ଖୁବ୍ ସରଳ ବିଶ୍ୱାସୀ ଓ ଅତିଥି ପରାୟଣ । ଏମାନଙ୍କ ପରିବାରରେ ସନ୍ତାନ ଜନ୍ମ ପରେ କୁକୁଡ଼ା ବଳି ଦେଇ ଠାକୁରଙ୍କୁ ସନ୍ତୁଷ୍ଟ କରନ୍ତି ଓ ବଳି କୁକୁଡ଼ାର ଏକ ଅଂଶ ବାସ ଗୃହରେ ଝୁଲାଇ ରଖନ୍ତି । ସେମାନଙ୍କର ବିଶ୍ୱାସ, ଭୂତପ୍ରେତମାନେ ଘରେ ପ୍ରବେଶ କରି ପିଲାର ଅନିଷ୍ଟ କରି ପାରିବେ ନାହିଁ ।

କନ୍ଧ ସମାଜରେ ଏକା ଗୋତ୍ର ଓ ରକ୍ତ ସମ୍ପର୍କରେ ବିବାହ ହୋଇ ନଥାଏ । ବିବାହ ପୂର୍ବରୁ ନାନା ନିୟମ ପାଳନ ପୂର୍ବକ ବିବାହ





ପ୍ରସ୍ତାବ ସ୍ଥିର ହୋଇଥାଏ । ନାଚ, ଗୀତ, ମଦ ଓ ଭୋଜିଭାତ କନ୍ଧମାନଙ୍କ ବାହାଘରର ମୁଖ୍ୟ ଅଂଗ ।

**ବେଶ ପୋଷାକ ଓ କଳାନୁରକ୍ତି**

କନ୍ଧମାନଙ୍କର ବେଶ ପୋଷାକ ସାଧାରଣ ହେଲେ ହେଁ ସ୍ୱତନ୍ତ୍ର ରୁଚିରେ ପୁଅମାନେ ନିଜକୁ ସୁସଜ୍ଜିତ କରିଥାନ୍ତି । ମୁଣ୍ଡକୁ ତେଲରେ ଚିକ୍କଣ କରି କୁଣ୍ଡାଇ ସେଥିରେ ପାନିଆ ଖୋସିଥାନ୍ତି ଓ ସୁନ୍ଦର ନକ୍ସା ହୋଇଥିବା ହାତବୁଣା ଛୋଟ ଚାଦର ଦେହରେ ପକାଇଥାନ୍ତି । ଆଖିରେ କଜଳ ଲଗାଇଥାନ୍ତି । ଏହା ତାଙ୍କର ପାରମ୍ପରିକ ବେଶଭୂଷା ।

ବିବାହିତ କନ୍ଧ ରମଣୀମାନେ କାନରେ ବଳା ପିନ୍ଧନ୍ତି । ବେକର ମାଳି ଓ କେଶ ସଜ୍ଜା ସ୍ତ୍ରୀମାନଙ୍କ ସୌନ୍ଦର୍ଯ୍ୟ ବର୍ଦ୍ଧନ କରେ । ହାତରେ ବାଲାଙ୍ଗା (ଚୁଡ଼ି), ଖଗଲା (ମାଳି), ମୁଣ୍ଡ ପାଇଁ ଗୋନାରା, ମୁହରଙ୍ଗ ବା କାନ ବଳା ବ୍ୟବହାର କରନ୍ତି ।



ଗ୍ରାମ ମଝିରେ ଯୁବକମାନଙ୍କ ନିମନ୍ତେ ଯେଉଁ ଧାଙ୍ଗରାବସା ନିର୍ମିତ ହୋଇଥାଏ, ସେ ଗୃହରେ ଲାଗିଥିବା ଖୁଣ୍ଟ ଓ ଓରା ଇତ୍ୟାଦିରେ ଖୋଦନ କଳାର ସଂକେତ ମିଳିଥାଏ । ତାହା ତାନ୍ତ୍ରିକ ପୃଷ୍ଠଭୂମି ଉପରେ ଆଧାରିତ ।

**ଚିତ୍ରକଳା**

ସଉରା ଚିତ୍ରକଳା ପରି ଏମାନଙ୍କର ଚିତ୍ରକଳା ସେତେ ଉନ୍ନତ ଧରଣର ନୁହେଁ । ଯଦିଓ ସେମାନେ ଘର ଭିତରେ ଝୋଟି ଚିତ୍ର ପରି ସାଇତି ରଖିଥାନ୍ତି । ସଉରାମାନଙ୍କର ଚିତ୍ରକଳା ଯେପରି ପୂଜାପାଏ ଓ ଘରର ଶ୍ରୀବୃଦ୍ଧି ନିମନ୍ତେ ତାହା ମଧ୍ୟ ଅଭିପ୍ରେତ । କନ୍ଧ ସମାଜରେ ଘରର ବାହାର କାନ୍ଥମାନଙ୍କରେ ଯେଉଁ ଚିତ୍ରକଳା ଦେଖାଯାଏ, ତାହା ଅବଶ୍ୟ ପୂଜା ଯୋଗ୍ୟ ନୁହେଁ, କିନ୍ତୁ ଘର ମଧରେ ଚିତ୍ରକଳାର ରକ୍ଷଣ ଶୀଳତା ଓ ପାରମ୍ପରିକ ବିଶ୍ୱାସର ଗୂଢ଼ ରହସ୍ୟ ଭେଦ କରିବା ଅନୁଧ୍ୟାନ ସାପେକ୍ଷ ।

ଲକ୍ଷ୍ମୀପୂଜା, ଦଶହରା ଇତ୍ୟାଦି ହିନ୍ଦୁ ପର୍ବପର୍ବାଣିମାନଙ୍କରେ ମଧ୍ୟ ଏମାନେ ଚିତା ପକାନ୍ତି ଓ ଆନନ୍ଦ ଉତ୍ସବ କରନ୍ତି । ସଉରା ଚିତ୍ରକର ପରି ଏମାନଙ୍କର ନିର୍ଦ୍ଦିଷ୍ଟ ଚିତ୍ରକର କେହି ନଥାନ୍ତି । ଏମାନେ ନିଜେ ନିଜେ ଚାଉଳ ଚୂନାରେ ପିଠଉ କରି ଚିତ୍ର କରିଥାନ୍ତି । ପର୍ବତରୁ ମିଳୁଥିବା ଢାଉ ପଥରରୁ ଗେରୁ ରଂଗ ତିଆରି କରି ଚିତ୍ରରେ ବ୍ୟବହାର କରନ୍ତି । କେହି କେହି ବିଭିନ୍ନ ରଂଗ ତିଆରି କରିବାକୁ ଯାଇ ପାଖ ହାଟ ବା ବଜାରରୁ ଗୁଣ୍ଡ ରଙ୍ଗ କିଣି ଆଣି ସେଥିରେ ଜଡ଼ା ତେଲ ମିଶାଇ ଚିତ୍ର ଉପରେ ଲେପି ଦିଅନ୍ତି । ଚିତ୍ର କରିବା ପାଇଁ ଏମାନେ ସରୁ ତନ୍ତୁଯୁକ୍ତ ଦାନ୍ତକାଠିର ଅଗ୍ର ଭାଗକୁ ଛୋଟ ବ୍ରସ୍ ପରି କରି ବ୍ୟବହାର କରନ୍ତି । ଏହି କାଠି ସାଧାରଣତଃ ଖଜୁରୀ କାଠି, ବାଉଁଶ କାଠି ଓ କିଆ ପଟରୁ ପ୍ରସ୍ତୁତ ହୋଇଥାଏ ।

ଚିତ୍ର କରିବା ନିମନ୍ତେ ଏମାନେ ତାଲିମ ପ୍ରାପ୍ତ ନହେଲେ ବି ଦେଖାଶିଖା ରୀତିରେ ଏବଂ ନିଜର କଳା ଅଭ୍ୟାସ ଯୋଗୁଁ ଆପେ ଆପେ ଏଥିରେ ଅଗ୍ରସର ହୁଅନ୍ତି । ଯେ କେହି ପୁଅ ବା ଝିଅ ଏହି ଚିତ୍ର କାର୍ଯ୍ୟ କରିଥାନ୍ତି । ମାତ୍ର ଏପରି ଚିତ୍ର କରିବା ବିଧିପୂର୍ବକ ସମ୍ପାଦନ ହୋଇଥାଏ ।

**ଚିତ୍ର କରିବା ବିଧି**

ବିଭିନ୍ନ ପର୍ବପର୍ବାଣିରେ କାନ୍ଥ ଚିତ୍ର କରିବା ଏମାନଙ୍କର ପରମ୍ପରା ଗତ ବିଧି । ତେବେ ଚିତ୍ରର ରକ୍ଷଣଶୀଳତା ସଉରାମାନଙ୍କ ପରମ୍ପରାଠାରୁ ସ୍ୱତନ୍ତ୍ର ଥିବା ପରି ମନେହୁଏ । ସଉରାମାନେ ପାଳନ କରୁଥିବା ପର୍ବପର୍ବାଣିରେ ପ୍ରାୟ କୌଣସି ଚିତ୍ର କରନ୍ତି ନାହିଁ । ମାତ୍ର ଡଙ୍ଗରିଆ କନ୍ଧମାନେ ପାଳନ କରୁଥିବା ବିଭିନ୍ନ ପର୍ବପର୍ବାଣିରେ ବାହାର କାନ୍ଥ ତଥା ଭିତର କାନ୍ଥରେ ମଧ୍ୟ ଚିତ୍ର କରନ୍ତି । ବାହାର ଚିତ୍ର ଏବଂ ଭିତର ଚିତ୍ର ପୃଥକ୍ ଭାବରେ ଅଙ୍କିତ ହୋଇଥିବାର ଦେଖାଯାଏ । ପ୍ରତିବର୍ଷ ସେଇ ଚିତ୍ର ଲିଭା ହୁଏ ଓ ନୂଆ କରି ହୁଏ । ଚିତ୍ର ପ୍ରତିଷ୍ଠା ପର୍ବ ଉପରେ ଆନୁଷଙ୍ଗିକ ବିଧିବିଧାନ ନଥିବା ପରି ମନେହୁଏ ।

**ବାହାର କାନ୍ଥ ଚିତ୍ର**

ଯେଉଁ ଚିତ୍ରଟି ବାହାର କାନ୍ଥ ହୋଇଥିବାର ଦେଖାଯାଏ ତାହାର ନମୁନା ସାଧାରଣ ତ୍ରିଭୁଜ ପରି । ଲମ୍ବ ଭାବରେ ଧାଡ଼ି ଧାଡ଼ି ହୋଇ ଏକ ରେଖା ଉପରେ ତ୍ରିଭୁଜଗୁଡ଼ିକ ଅଙ୍କା ହୋଇଯାଏ । ଏହି ତ୍ରିଭୁଜର ନମୁନା ସେମାନଙ୍କର ପ୍ରିୟ ସଂକେତ ରୂପେ ବ୍ୟବହୃତ ହୋଇଥିବାର ଦେଖାଯାଏ । ସେମାନେ ଯେଉଁ ହାତବୁଣା ଲୁଗା ବ୍ୟବହାର କରନ୍ତି, ସେଥିରେ ମଧ ଏହି ତ୍ରିଭୁଜର ନମୁନା ଦେଖାଇଥାନ୍ତି । ଲୁଗାର ନକ୍ସାରେ ସେମାନେ ଗେରୁ, କଳା ଇତ୍ୟାଦି ରଂଗ ଗର୍ଭିତ କରି ଆକର୍ଷଣୀୟ କରିଥାନ୍ତି ।

ସେମାନେ ପାଳନ କରୁଥିବା ମେରିଆ ପର୍ବ, ଘଣ୍ଟପର୍ବ, କେଦୁପର୍ବ ଇତ୍ୟାଦି ଅନୁଷ୍ଠାନମାନଙ୍କରେ କାନ୍ଥରେ ନୂଆକରି ଏହିପରି ଚିତ୍ର ଆଙ୍କିଥାନ୍ତି ଓ ଉକ୍ତ ନମୁନା ମଧ୍ୟ ଅରୁଆ ଚାଉଳ ଚୂର୍ଣ୍ଣରେ ଯନ୍ତ୍ରକାଟି ଦେବୀଙ୍କ ଆବାହନ କରନ୍ତି ।

**ଭିତର କାନ୍ଥ ଚିତ୍ର**

ଭିତର କାନ୍ଥ ଚିତ୍ରଗୁଡ଼ିକ ସର୍ବସାଧାରଣ ନିମନ୍ତେ ଗୋପ୍ୟ ରହିଥାଏ । ତାହା ସେମାନଙ୍କର ଆରାଧ୍ୟ ଚିତ୍ର । କାହାରି କାହାରି ଘରେ





ଅନ୍ଧାରୁଆ ସ୍ଥାନରେ ଏ ଚିତ୍ର ହୋଇଥାଏ । ଉକ୍ତ ଚିତ୍ର ସାମୟିକ ଭାବେ ପୂଜା ପାଉଥିବାରୁ ଏହାର ରକ୍ଷଣଶୀଳତା ଦୀର୍ଘଦିନ ଧରି ହୋଇପାରି ନଥାଏ । ଯେଉଁମାନେ ନୂଆକରି ଆଙ୍କି ପାରନ୍ତି ନାହିଁ, ସେମାନଙ୍କର ଚିତ୍ର ସେଭଳି ଥାଏ, ତାହାକୁ ଲିଭାଇବା ଦରକାର ମନେ କରନ୍ତି ନାହିଁ । ଭିତର ଚିତ୍ରରେ ବିଷୟ ବସ୍ତୁ ତାହାର କାନ୍ଥ ପରି ହୋଇନଥାଏ । ତାହା କେବଳ ବଡ଼ ବଡ଼ ବିନ୍ଦୁ ଦ୍ୱାରା ଅଙ୍କିତ ହୋଇଥାଏ ।

ସଉରାମାନେ ଯେପରି ନୂଆଘର କରିବା ସମୟରେ କିମ୍ବା କୌଣସି କାର୍ଯ୍ୟ କରିବା ପୂର୍ବରୁ ପିତୃପୁରୁଷଙ୍କ ନିର୍ଦ୍ଦେଶରେ ଚିତ୍ର କାର୍ଯ୍ୟ କରନ୍ତି, ଡଙ୍ଗରିଆ କନ୍ଧମାନଙ୍କର ସେପରି ଥିବାର ଜଣାଯାଏ ନାହିଁ । ବର୍ଷକ ମଧରେ ବିଭିନ୍ନ ପ୍ରକାର ଧର୍ମାନୁଷ୍ଠାନ ପାଳିତ ହୋଇଥାଏ । ସବୁ ସମୟରେ ସେମାନେ ଏକତ୍ର ଚିତ୍ର କରିବା ପ୍ରାୟ ଦେଖାଯାଏ ନାହିଁ । ମାତ୍ର ଘରଦ୍ୱାରା ଲିପା ପୋଛା କରି ସୁନ୍ଦର ଭାବେ ସଜାଇବା ଯେପରି ପ୍ରତ୍ୟେକ ପରିବାରର କର୍ତ୍ତବ୍ୟ ତାହା ସେମାନେ ଭଲ ଭାବେ ବୁଝିଥାନ୍ତି । ତେଣୁ ବର୍ଷର ବିଭିନ୍ନ ସମୟରେ ଖୋଟି ଚିତ୍ର ଲେଖିବା ପାରମ୍ପରିକ ନିୟମ ଭାବେ ସମାଜରେ ପ୍ରଚଳିତ ।

ଯେଉଁ ବ୍ୟକ୍ତି ଜଣକ ଚିତ୍ର କରିବା ପାଇଁ ଅନ୍ୟ ଜଣଙ୍କ ଘରକୁ ଯାଏ, ସେ ସେଦିନ ଉପବାସ ରହି ନୂଆ ଲୁଗାପିନ୍ଧି ଚିତ୍ରକରେ । ସେ ବ୍ୟକ୍ତି ଜଣକ ଯଦି ନିଜ ପରିବାରର କେହି ହୋଇଥାଆନ୍ତି, ତା'ହେଲେ ଚିତ୍ରକାର୍ଯ୍ୟ ଦିନକରେ ନ ସରିଲେ ତହିଁ ଆରଦିନ ସମାପ୍ତ ହୋଇଥାଏ । ତା'ହେଲେ ତାକୁ ଚିତ୍ରକାର୍ଯ୍ୟ ସରିବା ପର୍ଯ୍ୟନ୍ତ ସେ ଘରେ ରହେ ଓ ଚିତ୍ରକାର୍ଯ୍ୟ ସାରି ବିଦାୟ ନେବା ସମୟରେ କୁକୁଡ଼ା ଓ ନୂଆ ଲୁଗା ନେଇ ଘରକୁ ଯାଏ । ଚିତ୍ର କଳାକୁ ଉପଯୁକ୍ତ ସମ୍ମାନ ଦିଅନ୍ତି ଓ ସେଦିନ ଚିତ୍ର ପାଖରେ ନୂଆ ଋତୁର ଫଳ ଓ ଫସଲ ପ୍ରଥମେ ଅର୍ପଣ କଲାପରେ ଖାଆନ୍ତି ।

ସେହି ଦିନଠାରୁ ପର ମୁହୂର୍ତ୍ତ ପର୍ଯ୍ୟନ୍ତ ଚିତ୍ର ସେମିତି ଥାଏ । ଘର ଭିତରେ ଯେଉଁ ଚିତ୍ର ଅଙ୍କା ହୋଇଥାଏ, ସେ ଚିତ୍ର ଉପରେ ଗୋଟିଏ କିମ୍ବା ଦୁଇଟି ନୂଆ କୁଲା ହଳଦୀ ବୋଳା ହୋଇ କୀଳକ ଦ୍ୱାରା ଘୋଡ଼ିଆ ହୋଇ ଲଟକାଇ ଦିଆଯାଇଥାଏ । କେହି କେହି ଚିତ୍ର ପାଖରେ ଲାଉଡ଼ଙ୍କି ଓ ଅନ୍ୟାନ୍ୟ ଘରକରଣା ଜିନିଷ ରଖିଥାନ୍ତି । ତଳେ ମଧ୍ୟ ହାଣ୍ଡିମାଠିଆ, ବାସନକୁସନ ଇତ୍ୟାଦି ଥୁଆ ହୋଇଥାଏ । ଉପରେ ଶିକାରେ ମାଠିଆ କିମ୍ବା ଆଟିକା ଟଙ୍ଗା ହୋଇଥିବାର ମଧ୍ୟ ଦେଖାଯାଏ ।

ଚିତ୍ର ଉପରେ ଯେଉଁ ନୂଆକୁଲା ଘୋଡ଼ାଯାଇ ରଖାଯାଇଥାଏ ତାହା ଲୌକିକ ବିଶ୍ୱାସ ଅନୁସୃତ । ଘରେ କଦବା କାହାରି ଦେହ ଖରାପ ହେଲେ କାନ୍ଥରେ ଯେଉଁ ଖୋଟି ଚିତ୍ର ଅଙ୍କା ହୋଇଥାଏ, ସେ ଚିତ୍ର ପାଖରେ ରୋଗୀକୁ ଶୁଆଇ ଦିଆଯାଏ । ଚିତ୍ର ପାଖରୁ କୁଲାକୁ ଆଣି ସେଥିରେ ଚାଉଳ ଓ ହଳଦୀ ମିଶାଇ ଝୁଣାଧୂପ ଦେଇ ଚିତ୍ର ପାଖରେ ଥୋଇ ଗୁହାରୀ କରନ୍ତି । ରୋଗୀ ଭଲ ହୋଇ ଯିବାର ପାରମ୍ପରିକ ବିଶ୍ୱାସ ଅଟଳ ଥିବାରୁ ସେମାନଙ୍କର ଇଚ୍ଛା ପୂରଣ ହୋଇଥାଏ ।

## ଚିତ୍ରର ବିଷୟ ବସ୍ତୁ

କିଛି ପୁରୁଣା କାନ୍ଥ ଚିତ୍ରକୁ ଅନୁଧ୍ୟାନ କରି ଦେଖାଯାଇଛି ଯେ, ଚିତ୍ରରେ ବିଷୟ ବସ୍ତୁ ଗୌଣ ବା ସେପରି କିଛି ନାହିଁ କହିଲେ ଚଳେ । ସେମାନେ ଏପରି ଏକ ନକ୍ସା ଆଙ୍କନ୍ତି ଯେଉଁ ନକ୍ସାରେ କି କୌଣସି ଜୀବଜନ୍ତୁ, ମନୁଷ୍ୟ, ବୃକ୍ଷଲତା, ଦେବଦେବୀର ସାଦୃଶ୍ୟ ବା ସଂକେତ ଦେଖିବାକୁ ମିଳେ ନାହିଁ । ମାତ୍ର ଜ୍ୟାମିତିକ ସୂତ୍ର ଅନୁସାରେ କେବଳ ଯେଉଁ ତ୍ରିଭୁଜାକୃତି ନକ୍ସାମାନ ବାହାର କାନ୍ଥରେ ଦେଖାଯାଏ, ସେଗୁଡ଼ିକର ସାଙ୍କେତିକ ଭାବ ଧରିବା କଠିନ । ସେ ଚିତ୍ରଗୁଡ଼ିକ କେତେକ କାଠି ଦ୍ୱାରା ହୋଇଥାଏ ଓ ଆଉ କେତେକ ଆଙ୍ଗୁଠି ଛାପ ଦ୍ୱାରା ହୋଇଥାଏ । ଘର ମଧରେ ଥିବା ଚିତ୍ରଗୁଡ଼ିକ ଚାଉଳ ଚୂନା ପିଠଉ ସାହାଯ୍ୟରେ ହୋଇଥାଏ ଓ ଚିତ୍ରର ଶୈଳୀ, ଭାବଧାରା ଅପ୍ରାସଂଗିକ ହେଲେ ହେଁ ସେ ଚିତ୍ରକାର୍ଯ୍ୟ ମୂଳରେ ଯେଉଁ ପାରମ୍ପରିକ ଲୌକିକ ବିଶ୍ୱାସ ବଳବତ୍ତର ହୋଇ ରହିଛି ଏକଥା କେବଳ ସେମାନଙ୍କୁ ଜଣା ।

## ଚୈତ୍ରିକ ବିଶ୍ଳେଷଣ

ପାରମ୍ପରିକ ଚିତ୍ର ଶୈଳୀ ସହ ଆଧୁନିକ ଚିତ୍ର (କ୍ୟାଲେଣ୍ଡରର ଚିତ୍ର)ର କିପରି ସମନ୍ୱୟ ଘଟିଛି, ତାହାର ଏକ ଉଦାହରଣ ମଧ୍ୟ ଏଠାରେ ଉପସ୍ଥାପିତ କରାଯାଇଅଛି ।

ସେମାନଙ୍କର ପ୍ରାଚୀନ ମୌଳିକ ଭାବଧାରା ସହ ଏ ଚିତ୍ରର ଭାବଧାରା ସମ୍ପୂର୍ଣ୍ଣ ଭିନ୍ନ । ଚିତ୍ରଗୁଡ଼ିକରେ ଦକ୍ଷିଣ ଭାରତୀୟ ଚିତ୍ରଶୈଳୀ ସୁସ୍ପଷ୍ଟ । ମାତ୍ର ପ୍ରାଚୀନ ଖୋଟି ଚିତ୍ରଗୁଡ଼ିକରେ ଓଡ଼ିଆ ଚିତା ଲେଖାର ଛାପ ଥିବାପରି ଜଣାପଡ଼େ । ଯଦିଓ ଏମାନଙ୍କର ଚିତା ଲେଖାରେ ରେଖାର ସାବଲୀଳ ଗତି ନାହିଁ, କେବଳ ବିନ୍ଦୁ ଓ ଆଙ୍ଗୁଳି ଛାପ ଦ୍ୱାରା କେତୋଟି ନମୁନାର ସାମଞ୍ଜସ୍ୟ ମାତ୍ର ରହିଛି ।

କନ୍ଧ ଚିତ୍ରକର ଆଧୁନିକ ସଭ୍ୟତା ସହ ପରିଚିତ ହେବାପରେ ଛବିଳ କ୍ୟାଲେଣ୍ଡରକୁ କାନ୍ଥରେ ପ୍ରତିଫଳିତ କରିବା ପାଇଁ ଚେଷ୍ଟା କରିଥାଇପାରେ ।

କନ୍ଧ ଭାଷାରେ 'ବୋମା' ଅର୍ଥ ଚିତ୍ର, 'ବୋମାରେ ନାୟୁ'ର ଅର୍ଥ ଯେ ଚିତ୍ର କରେ । ଚିତ୍ରରେ ବ୍ୟବହୃତ ହେଉଥିବା ରଙ୍ଗକୁ ଗୁଉଣ୍ଡି କହନ୍ତି । ତଥାକଥିତ କାନ୍ଥରେ ହୋଇଥିବା ଚିତ୍ରକୁ 'ମାଞ୍ଜି ଗୁଣ୍ଡା' କହନ୍ତି ।

ସମସାୟିକ ପରିବର୍ତ୍ତିତ ଚିତ୍ର ବହୁଳ ଭାବରେ ଦୃଷ୍ଟିଗୋଚର ହୋଇଥାଏ । ଏପରିକି ହିନ୍ଦୁ ଧର୍ମର ରାମ, ସୀତା, ଦୁର୍ଗାଦେବୀ ଓ ଜଗନ୍ନାଥଙ୍କର ଚିତ୍ର ସେମାନେ କାନ୍ଥରେ ଆଙ୍କିଥାନ୍ତି । ଏହାଛଡ଼ା ହିନ୍ଦୁଧର୍ମର ପ୍ରତୀକ ଚିତ୍ର ପଦ୍ମଫୁଲ, ଧନୁଶର, ତ୍ରିଶୂଳ, ଇତ୍ୟାଦି ଚିତ୍ର ମଧ୍ୟ ଆଙ୍କିଥାନ୍ତି । ଚିତ୍ରଗୁଡ଼ିକର ରେଖା ବନ୍ଧୁର ଓ ସାବଲୀଳ ଗତି ରହିତ । ଚିତ୍ରର ଚରିତ୍ର ସଂଯୋଜନା ପୂର୍ବାନୁସୃତ । ଏପରି ଚିତ୍ର ପୂର୍ବ ପୁରୁଷରୁ ହୋଇ ଆସୁଥିବାର କେହି କେହି ମତ ଦିଅନ୍ତି । ସମୀକ୍ଷାରୁ





ଜଣାପଡ଼େ ଏଭଳି ଚିତ୍ର ଆଞ୍ଚଳିକ ଚିତ୍ରର ନକଲ । ସଉରା ଚିତ୍ର ଗୁମ୍ଫା ଚିତ୍ର ସହ ସମ୍ପର୍କ ରକ୍ଷା ଆସୁଥିବାବେଳେ ଡଙ୍ଗରିଆ କନ୍ଧଙ୍କ ଚିତ୍ର କେବଳ ମୁଦ୍ରା ସର୍ବସ୍ୱ । ସମ୍ଭବତଃ ଅତତୀରେ ଏମାନେ ବହୁକାଳ ଆର୍ଯ୍ୟମାନଙ୍କ ସଂସ୍ପର୍ଶରେ ଆସିଥିବାରୁ ଏପରି ପରିବର୍ତ୍ତନ ହେଇଛି । ଏକଥା କେତେକ ଗବେଷକଙ୍କର ମତ । କେହି କେହି କହନ୍ତି ପ୍ରାଚୀନ କାଳରେ ଚିତ୍ରକଳା ନଥିଲା । କାରଣ ସେମାନଙ୍କ ଚିତ୍ରରେ ଚିତ୍ରକରର ଅଙ୍କନ ପଟୁତା ଅଭାବ ପରିଲକ୍ଷିତ ହୋଇଥାଏ । ତେବେ ସେ ସମସ୍ତ ଚିତ୍ରରେ ଯେଉଁ ଧର୍ମର ଐକ୍ୟ ଭାବଧାରା ପ୍ରତିଫଳିତ, ତାହା ସେମାନଙ୍କର ଚିତ୍ରକଳା ପ୍ରତି ପ୍ରଗାଢ଼ ଅନୁରାଗ ତଥା କଳାତ୍ମକ ମୋହ ଜଡ଼ିତ, ଏଥିରେ ସନ୍ଦେହ ନାହିଁ ।

ଚିତ୍ରଗୁଡ଼ିକ ତ୍ରିଭୁଜ, ବୃତ୍ତ, ବିନ୍ଦୁ, ଛକି, ଲମ୍ବରେଖା ଦ୍ୱାରା ସଂଯୋଜିତ । ବିନ୍ଦୁଦ୍ୱାରା ଅଳଙ୍କରଣ ଯୋଗୁଁ ରେଖାର ନିଛକ ଗତି ନାହିଁ । କେତେକ ଚିତ୍ରରେ ରେଖା ଦ୍ୱାରା ଛକି କଟାଯାଇ ସମଲମ୍ବ ଭାବେ ରେଖା ଦ୍ୱୟର ମଧ୍ୟଭାଗ ପୂର୍ଣ୍ଣ ହୋଇଥାଏ । ଏଥିରେ ନୂତନତ୍ୱ ତଥା ସୌନ୍ଦର୍ଯ୍ୟ ଭାବ ନଥିବାର ଜଣାପଡ଼େ । କେତେକ ଚିତ୍ରର ଉପର ଭାଗରେ ଓଡ଼ିଆ ଅକ୍ଷର 'ଓଁ' ନାଲି ରଂଗରେ ଲେଖାଯାଇଥିବାର ଦେଖାଯାଇଛି । ଶୁଭର ସଙ୍କେତ ସ୍ୱରୂପ ଚନ୍ଦ୍ରବିନ୍ଦୁ ମଧ୍ୟ ଦିଆଯାଇଛି ।

**ଶୈଳ୍ପିକ ବିଚାର**

ଚିତ୍ରକଳା ବ୍ୟତୀତ ଡଙ୍ଗରିଆ କନ୍ଧମାନଙ୍କର ଆଉ ଏକ କଳାପ୍ରୀତି ସେମାନଙ୍କର କାଷ୍ଠ ଖୋଦନ ଶିଳ୍ପରେ ଦେଖାଯାଏ । ତାହା ତାନ୍ତ୍ରିକ ଭାବଧାରା ଉପରେ ପର୍ଯ୍ୟବସିତ । ବହୁ ଅଜ୍ଞାତ ରହସ୍ୟ କାଷ୍ଠ ଖୋଦିତ ଚିତ୍ରରେ ପ୍ରତିଫଳିତ ହୋଇଥାଏ । ଗ୍ରାମ ମଝିରେ ଯେଉଁ ସଂଗଠନ ଗୃହ ଥାଏ, ତାହାକୁ ସେମାନେ 'କୁଡ଼ି' କହନ୍ତି । ଏଠାରେ ଗ୍ରାମବାସୀମାନେ ମିଳାମିଶା ହୁଅନ୍ତି । କୌଣସି ପର୍ବପର୍ବାଣି ଆରମ୍ଭ ପୂର୍ବରୁ ଯୋଜନାବଦ୍ଧ ହୋଇ କାର୍ଯ୍ୟ କରିବା ନିମନ୍ତେ ନିଷ୍ପତ୍ତି ନିଅନ୍ତି । ଯିଏ ପୂଜା କରିବାକୁ ଆସନ୍ତି, ସେ ଏ ଗୃହରେ ଅତିଥି ରୂପେ ପ୍ରଥମେ ଯୋଗ ଦିଅନ୍ତି । କାଠ ନିଆଁ ଜାଳି ସମସ୍ତେ ଅତିଥିକୁ ସ୍ୱାଗତ କରନ୍ତି । ଏଇ ଘରଟି ଚାରିଆଡୁ ମେଲା ଥାଏ । ଏଥିରେ ବ୍ୟବହୃତ ହୋଇଥିବା ଖମ୍ବ ଦେହରେ ଯେଉଁ ଖୋଦିତ ଚିତ୍ରକଳା ଦେଖାଯାଏ, ତାହାର ଶୈଳ୍ପିକ ବିଚାର କରିବାର କଥା । ସେଥିରେ ଲାଗିଥିବା ଓରା ପଟା, ରୁଅମାନଙ୍କରେ ମଧ୍ୟ ଖୋଦାଇ ହୋଇଥାଏ । ଲମ୍ବ ରୁଅ ପଟା ଉପରେ କେତେକ ସ୍ଥାନରେ ଯେଉଁ ଖୋଦିତ ଚିତ୍ର ଦେଖାଯାଏ ତାହା ଗମ୍ବୁଜାକୃତି ଓ ଉତ୍‌ଥିତ ଦୁଇଟି ଅଂଶ ସେମାନେ ଦେବୀଙ୍କର ବକ୍ଷୋଜ ବୋଲି ବିଚାର କରିଥାନ୍ତି । ତା' ପାଖକୁ ଦୁଇଟି ହାତର ଚିତ୍ର ଥାଏ, ମଝିରେ ଯେଉଁ ଖୁଣ୍ଟଥାଏ, ତାହାକୁ ଲିଙ୍ଗ ବୋଲି କହନ୍ତି । ପ୍ରତି ଖୁଣ୍ଟ ପାଖରେ ଏହିପରି ଦେବୀଙ୍କର ବକ୍ଷୋଜ ଖୋଦିତ ହୋଇଥାଏ । ଏହାଛଡ଼ା ବିଭିନ୍ନ ପର୍ବରେ ବ୍ୟବହୃତ ହେଉଥିବା ବଳିଖୁଣ୍ଟରେ ମଧ୍ୟରେ ଖୋଦାଇ କଳା ଦେଖାଯାଏ ।

କନ୍ଧଙ୍କର ଧର୍ମଧାରା ଯେଉଁ ଅଦୃଶ୍ୟ ଦୈବୀ ଶକ୍ତି ଦ୍ୱାରା ନିୟନ୍ତ୍ରିତ, ତାହାର ମୌଳିକ ସଂକେତକୁ ଚିତ୍ରକଳା କିମ୍ବା କାଷ୍ଠ ଖୋଦନ କଳାରେ ପରମ୍ପରାକ୍ରମେ ସ୍ଥାନିତ କରି ଆସୁଥିବାରୁ, ତନ୍ତ୍ର ବିଦ୍ୟାରେ ଏମାନେ ପ୍ରବୀଣ ଥିବାର ଜଣାପଡ଼େ । ଏମାନଙ୍କ କଳା-କୃତିରେ ମୁଖ୍ୟତଃ ଯେଉଁ ତ୍ରିଭୁଜାବଳୀର ସମାବେଶ ଘଟିଛି, ତାହା ମଧ୍ୟ ତନ୍ତ୍ର ଭାବଧାରାର ପର୍ଯ୍ୟାୟଭୁକ୍ତ । ଦେବୀଙ୍କର କୃପାବିନା କୌଣସି ଅଭିଷ୍ଟ ସାଧନ ହୋଇପାରେ ନାହିଁ । ଏହା ସେମାନଙ୍କର ବିଚାର ଧାରାକୁ ସ୍ପର୍ଶ କରୁଥିବାରୁ ସେମାନେ ପରମ୍ପରା କ୍ରମେ ଏପରି ଏକ ପ୍ରଚ୍ଛନ୍ନ ରହସ୍ୟମୟ ପନ୍ଥା ଅବଲମ୍ବନ କରି ଆସୁଅଛନ୍ତି ଓ ପ୍ରକାଶ୍ୟରେ ଏହାର ରହସ୍ୟାର୍ଥ ଅନ୍ୟକୁ ଜଣାଇବାକୁ କୁଣ୍ଠିତ । ବିଚାରାନ୍ତରେ, ଏହାର ମୌଳିକତତ୍ତ୍ୱ ଗବେଷଣା ସାପେକ୍ଷ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

# ଗୋପାଳପୁର ବେଳାଭୂମି ମହୋତ୍ସବ

ଦାମୋଦର ପାଢ଼ୀ



**ଭ**ଞ୍ଜ, କବିସୂର୍ଯ୍ୟ ମାଟିର ଗୋପାଳପୁର ସୁରମ୍ୟ ବେଳାଭୂମିରେ ଷଷ୍ଠ ବେଳାଭୂମି ମହୋତ୍ସବ ଡିସେମ୍ବର ୮ ତାରିଖରୁ ୧୨ ତାରିଖ, ୨୦୦୪ ଯାଏଁ ଗଞ୍ଜାମ ଜିଲ୍ଲା ସଂସ୍କୃତି ପରିଷଦ, ଜିଲ୍ଲା ହୋଟେଲ ଆସୋସିଏସନ୍ ଆନୁକୂଲ୍ୟରେ ଏବଂ ଓରମାସ, ପୂର୍ବାଞ୍ଚଳ ସଂସ୍କୃତି କେନ୍ଦ୍ର, କୋଲକାତା, ଭାରତ ସରକାରଙ୍କ ସଂଗୀତ ନାଟକ ସଂସ୍ଥା ଓ ଗୋଳାବନ୍ଧ ବାୟୁ ପ୍ରତିରକ୍ଷା ପଦାତିକ ବାହିନୀର ସହଯୋଗକ୍ରମେ ନବ ଉନ୍ମାଦନା ଆଣିପାରିଥିଲା 'ଗୋପାଳପୁର ବେଳାଭୂମି ମହୋତ୍ସବ - ୨୦୦୪'।

ଓଡ଼ିଶାର ୪୮୦ କି.ମି. ଦୀର୍ଘ ବେଳାଭୂମି ମଧ୍ୟରେ ଗଞ୍ଜାମ ଜିଲ୍ଲାର ସୋରଳ, ସୁମାଣ୍ଡି, ମାର୍କଣ୍ଡୀଠାରୁ ଆରମ୍ଭ କରି ପୋତାଗଡ଼, ପାଲୁର ଯାଏଁ ୫୦ କି.ମି. ସୁଦୀର୍ଘ ବେଳାଭୂମି ସୁରମ୍ୟ ଝାଉଁ, କାଜୁବନ ମଧ୍ୟରେ ସୁଶୋଭିତ। ଗୋପାଳପୁରର ପ୍ରାଚୀନତା ଓ ଐତିହାସିକ ପୃଷ୍ଠଭୂମି ଅବଲୋକନ କଲେ ଏହାର ସୁଉଜ୍ଜ୍ୱଳ, ରୁଚିବନ୍ତ ସୁଖ୍ୟାତି ଭରା ଇତିହାସ ଲୁଚି ରହିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜାପାନରେ ଯଦି ବୋମାମାଡ଼ ହୋଇନଥାନ୍ତା, ତେବେ ଅଦ୍ୟାବଧି ଭାରତର କାହିଁକି ସମଗ୍ର ଦକ୍ଷିଣ-ପୂର୍ବ ଏସିଆର ଓ ପୃଥିବୀର ବନ୍ଦର ସହର ମଧ୍ୟରେ ଏହାର ପ୍ରାଧାନ୍ୟ ବଜାୟ ରହିଥାନ୍ତା। ଆଜି ସାଧବପୁଅମାନେ, ସୁପ୍ତ, ଲୁପ୍ତ ଅବସ୍ଥାରେ ନରହି ପୃଥିବୀର ଶ୍ରେଷ୍ଠ ନାବିକର ଦେଶ, ରାଜ୍ୟ ରୂପେ ଓଡ଼ିଶା ରହିଥାନ୍ତା। ଏହାର ବତୀଘର ସନ୍ଧ୍ୟାରେ ଜୁଳୁ ଜୁଳୁ ଆଲୋକ ପୂର୍ବ ଐତିହ୍ୟକୁ କେବଳ ସ୍ମୃତିଚାରଣ କରୁଛି। ଜରାଜୀର୍ଣ୍ଣ, ସୁପ୍ତ, ଲୁପ୍ତ ଗୋଦାମଗୃହ, ସମସ୍ତ ଉପନିବେଶ ବାସସ୍ଥଳୀ ଏହାର ମୂକସାକ୍ଷୀ ରୂପେ ରହିଛି। ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜ ସିଙ୍ଗାପୁର, ରେଙ୍ଗୁନରେ ଯେଉଁ ଚଳଚଞ୍ଚଳ ଭୂମିକା ନେଇ ଅସ୍ତମିତ ହେଉନଥିବା ବ୍ରିଟିଶ ସରକାରକୁ ଭାରତର ଆର୍ଯ୍ୟମାଟିରୁ ସଶସ୍ତ୍ର ସଂଗ୍ରାମରେ ବିତାଡ଼ିତ କରିବାକୁ ଯେଉଁ ବଳିଷ୍ଠ ନେତୃତ୍ୱ ନେଇ ମଣିପୁର, ଇମ୍ଫାଲ ଯାଏଁ ମାଡ଼ି ଆସିଥିଲେ, ସେହି ସେନାବାହିନୀରେ ଗଞ୍ଜାମ ଜିଲ୍ଲାର ତିନି ଚତୁର୍ଥାଂଶ ଫୌଜ ରହିଥିଲେ ଓ ସେହିମାନେ ଏହି ଗୋପାଳପୁର ବନ୍ଦର ଦେଇ ରେଙ୍ଗୁନରେ ପହଞ୍ଚିଥିଲେ। ସମସ୍ତ କୀର୍ତ୍ତି, ଗାରିମା ବହନ କରିଥିବା ଗୋପାଳପୁର ସହର ଆଜି ଶ୍ରୀହୀନ ହୋଇ ପଡ଼ିରହିଛି। ଆନ୍ତର୍ଜାତିକ ପର୍ଯ୍ୟଟନ ମାନଚିତ୍ରରେ ଏହାକୁ ଉପଯୁକ୍ତ ପଦମର୍ଯ୍ୟାଦା ଦେଇ ନବରୋମାଞ୍ଚକର ସହରରୂପେ ଗଢ଼ି ତୋଳିବାକୁ ଗଞ୍ଜାମ ଜିଲ୍ଲା ପ୍ରଶାସନ ତରଫରୁ ବେଳାଭୂମି ମହୋତ୍ସବ ଆରମ୍ଭ କରାଯାଇଛି। ୨୦୦୪ର ମହୋତ୍ସବରେ ୫ ଲକ୍ଷରୁ ଊର୍ଦ୍ଧ୍ୱ ଦର୍ଶକ ସମାଗମ ହୋଇଥିଲେ। ସମସ୍ତ ଗଣମାଧ୍ୟମରେ ଏହାର ପ୍ରସାରଣ, ପ୍ରଚାର ଏହାର ନାମ-ଗାରିମାକୁ ବଢ଼ାଇବାରେ ନିଶ୍ଚିତ ସହାୟତା କରିଛନ୍ତି।

ଗୋପାଳପୁରର ଶୁଭ୍ର, ଚିକ୍କଣ ବାଲୁକାରାଶି ସଦାସର୍ବଦା ରୋମାଞ୍ଚକର ପ୍ରତିବିମ୍ବ ଧରିଆସିଛି। ପ୍ରେମିକ-ପ୍ରେମିକା ଏହି ବାଲୁକାରାଶିର ସ୍ପର୍ଶରେ କିଛି ସମୟ ଅତିବାହିତ କରିବାକୁ ଛଟପଟ ହେଉଥିବାବେଳେ କବି, ଭାବୁକ, ଦାର୍ଶନିକ ଏହାର ସ୍ପର୍ଶରେ ବହୁ ସମୟ ଧରି ଅନ୍ୟ ଭାବଜଗତରେ ନିଜକୁ ଲୀନ କରି ନେଇଛନ୍ତି। ପଞ୍ଚମ ବେଳାଭୂମି ମହୋତ୍ସବରେ ଏହି ଗୋପାଳପୁର ବାଲୁକାରାଶି ରୋମାଞ୍ଚ, ଉନ୍ମାଦ ଓ ଆହ୍ଲାଦ ସୃଷ୍ଟି କରିବାରେ ସଫଳ ଭୂମିକା ନେଇପାରିଛି। ଡିସେମ୍ବର ୮ରୁ ୧୨ ତାରିଖ ସନ୍ଧ୍ୟାରେ ସାଂସ୍କୃତିକ ବିଚିତ୍ରାରେ ନିଜକୁ ହଜାଇ ଦେବାକୁ ବାଲୁକାରାଶିକୁ ଏତେ ଆଦରର ସହିତ ଜାବୁଡ଼ି ଧରିଥାନ୍ତି, ଟିକିଏ ସ୍ଥାନ ମିଳିଲେ ବସି ରହିବାକୁ ଭଲ ପାଇଥାନ୍ତି ଓ ପ୍ରତିଯୋଗିତା ମନୋବୃତ୍ତିରେ ବସି ଯାଆନ୍ତି ତାହା ହିଁ ଏହି ସୁବିସ୍ତୃତ ସୁରମ୍ୟ ବେଳାଭୂମି ମହୋତ୍ସବର ସଫଳତା, ଏଥିରେ ଦ୍ୱିମତ ନାହିଁ।

୧୯୯୬ ମସିହାରୁ କ୍ରମାଗତ ୩ ବର୍ଷ ଯାଏଁ ଜିଲ୍ଲା ପ୍ରଶାସନର ସହଯୋଗକ୍ରମେ ଗଞ୍ଜାମ ଜିଲ୍ଲା ହୋଟେଲ ଏସୋସିଏସନ ଗୋପାଳପୁର





ବେଳାଭୂମି ମହୋତ୍ସବକୁ ପାଳନ କରିଆସୁଥିଲେ । ୧୯୯୯ର ମହାବାତ୍ୟା ଗୋପାଳପୁର ସହରକୁ ଶ୍ରୀହୀନ କରିଦେବା ସଂଗେ ଓଡ଼ିଶାର ଗଞ୍ଜାମ ଜିଲ୍ଲାର ଅର୍ଥନୈତିକ ମେରୁଦଣ୍ଡକୁ ଚୁରମାର କରିଦେଲା, ଅକ୍ଟୋବର, ୧୯୯୯ ଶେଷ ପ୍ରାନ୍ତରେ । କ୍ରମଶଃ ଏହା ପାଳନର ରାସ୍ତା ବନ୍ଦ ହୋଇଗଲା ୨୦୦୧ ଯାଏଁ । ୨୦୦୨, ଡିସେମ୍ବର ୬ରୁ ୧୦ ତାରିଖ ଯାଏଁ ଗୋପାଳପୁର ବେଳାଭୂମି ମହୋତ୍ସବ ପାଳନ କରିବାକୁ ଗଞ୍ଜାମ ଜିଲ୍ଲାପାଳ ତଥା ଜିଲ୍ଲା ସଂସ୍କୃତି ପରିଷଦର ଅଧକ୍ଷ ସଞ୍ଜୀବ କୁମାର ମିଶ୍ର ଆଗେଇ ଆସିଲେ । ଜିଲ୍ଲା ହୋଟେଲ ଏସୋସିଏସନ୍ ଏଥିରେ ମିଳିତ ଉଦ୍ୟମ ଆରମ୍ଭ କଲେ ଓ ସଫଳତାର ସହିତ ୨୦୦୨ ଓ ୨୦୦୩ର ବେଳାଭୂମି ମହୋତ୍ସବ ସମାପ୍ତ ହେଲା ।



ପୂର୍ବାଞ୍ଚଳ ସଂସ୍କୃତି କେନ୍ଦ୍ର କୋଲକାତା ଦ୍ୱାରା ଗୋପାଳପୁର ବେଳାଭୂମି ମହୋତ୍ସବକୁ ଜାତୀୟ ଓ ଆନ୍ତର୍ଜାତିକ ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନିତ କରାଯିବାର ଘୋଷଣାନାମା ପ୍ରକାଶ ପାଇଛି । ପ୍ରତିବର୍ଷ ଡିସେମ୍ବର ୬ରୁ ୧୦ ତାରିଖ ଯାଏଁ ଗୋପାଳପୁର ମହୋତ୍ସବ ଆନ୍ତର୍ଜାତିକ ମାନଚିତ୍ରରେ ସ୍ଥାନିତ ହେବା ଘୋଷଣା ଯୋଗୁଁ ଏହାର ମାନ୍ୟତା ବଜାୟ ରଖିବା ନିମନ୍ତେ ନିଷ୍ପତ୍ତି ନିଆଯାଇ ଜିଲ୍ଲାପାଳ ସଞ୍ଜୟ କୁମାର ସିଂଙ୍କ ଅଧ୍ୟକ୍ଷତାରେ ଏକ ପ୍ରସ୍ତୁତି ବୈଠକ କରାଗଲା । ଚଳିତ ବର୍ଷ ଗୋପାଳପୁର ବେଳାଭୂମି ମହୋତ୍ସବକୁ ଡିସେମ୍ବର ୮ ତାରିଖରୁ ୧୨ ତାରିଖ ୨୦୦୪ ଯାଏଁ ଆୟୋଜନ କରିବାକୁ ଜିଲ୍ଲାପାଳ ନିଷ୍ପତ୍ତି ଗ୍ରହଣ କରିଥିଲେ । ଏହାଦ୍ୱାରା ଉତ୍ସବର ଶେଷ ଦୁଇଦିନ ସରକାରୀ ଛୁଟିଦିବସ ଏବଂ ସରକାରୀ କାର୍ଯ୍ୟ ଦିବସ ସମ୍ପୂର୍ଣ୍ଣ ରୂପେ ବାଧା ସୃଷ୍ଟି ହେବ ନାହିଁ । କ୍ରମଶଃ ଜିଲ୍ଲା ଗ୍ରାମ୍ୟଉନ୍ନୟନ ସଂସ୍ଥାର ପ୍ରକଳ୍ପ ନିର୍ଦ୍ଦେଶକ ମନିଷ କୁମାର ବର୍ମାଙ୍କ ଅଧ୍ୟକ୍ଷତାରେ ଅର୍ଥ, ସାଂସ୍କୃତିକ, ଭିତ୍ତିଭୂମି ସ୍ଥାପନା କମିଟି ଗଠନ କରାଗଲା ଓ ଅନ୍ୟାନ୍ୟ କମିଟି ନିଜର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରି ପ୍ରସ୍ତୁତି କାର୍ଯ୍ୟରେ ଲାଗି ପଡ଼ିଥିଲେ । ଓରମାସ୍ ଦ୍ୱାରା ଏହି ବେଳାଭୂମି ମହୋତ୍ସବରେ ପଲ୍ଲୀଶ୍ରୀମେଳା ଆୟୋଜନ କରାଯାଇ ୭୫ଟି ପ୍ରଦର୍ଶନୀ ମଣ୍ଡପ ଖୋଲାଯିବା ସହ ଜିଲ୍ଲା ଉନ୍ନୟନ ପ୍ରଦର୍ଶନୀରେ ୧୦୦ ଗୋଟି ପ୍ରଦର୍ଶନୀ ମଣ୍ଡପ ବିଭିନ୍ନ ବିଭାଗ, ବାଣିଜ୍ୟ ପ୍ରତିଷ୍ଠାନ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ଖୋଲାଯାଇଥିଲା । ଏହି ମହୋତ୍ସବରେ ୧୭୫ଟି ପ୍ରଦର୍ଶନୀ ମଣ୍ଡପ ଗୋପାଳପୁରର ସୁବିସ୍ତୃତ ବାଲୁକା ଶଯ୍ୟାରେ ଏକ ମନୋରମ ବାତାବରଣ ସୃଷ୍ଟି କରିପାରିଥିଲା ।

ଆନ୍ତର୍ଜାତିକ ବାଲୁକାଶିଳ୍ପ କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିବା ବାଲୁକାଶିଳ୍ପୀ ସୁଦର୍ଶନ ପଟ୍ଟନାୟକଙ୍କ ବାଲୁକାଶିଳ୍ପ କଳା, ଗଞ୍ଜାମ ଜିଲ୍ଲାର ବାଲୁକା ଶିଳ୍ପୀ ସୁବଳ ମହାରଣାଙ୍କ ମା' ତାରାତାରିଣୀଙ୍କ ବିଗ୍ରହ ବାଲୁକା ଶଯ୍ୟାରେ ଉପସ୍ଥାପନା ମହୋତ୍ସବର ଆକର୍ଷଣକୁ ଦ୍ୱିଗୁଣିତ କରିଥିଲା । ମୀନାବଜାର, ରାମଝୁଲା, ମୌତକା କୂଅାଁ ଓ ଗୋଳାବନ୍ଧ ପଦାତିକ ବାହିନୀର ଅସ୍ତ୍ରଶସ୍ତ୍ର ପ୍ରଦର୍ଶନ ନିଶ୍ଚିତ ରୂପେ ମହୋତ୍ସବ ଇତିହାସରେ ଏକ ମାଇଲ ଖୁଣ୍ଟ ହୋଇ ରହିବ । ଉଦ୍‌ଯାପନୀ ଦିବସ ୧୨.୧୨.୦୪ର ସନ୍ଧ୍ୟାରୁ ରଜନୀ ଶେଷଯାଏଁ ଲକ୍ଷ ଲକ୍ଷ ଲୋକଙ୍କ ସମାଗମ, ଭିଡ଼ ଓ ଟ୍ରାଫିକ ଅବରୋଧ ନିଶ୍ଚିତ ରୂପେ ଆସନ୍ତା ଦିନର ମହୋତ୍ସବ ନିମନ୍ତେ ଗୋପାଳପୁର ସହରକୁ ପ୍ରଶସ୍ତ କିମ୍ବା ଦ୍ୱିତୀୟ ସଡ଼କ ପଥ ନିମନ୍ତେ ଚିନ୍ତାର ରେଖାପାତ କରିବ । ଆଶାତୀତ ଭାବେ ଦର୍ଶନ, ସଂସ୍କୃତି, କଳାପ୍ରେମୀମାନେ ସୁଦୂର ପ୍ରାନ୍ତରରୁ ଛୁଟି ଆସିଥିଲେ ବେଳାଭୂମି ମହୋତ୍ସବ ଉପଭୋଗ କରିବା ନିମନ୍ତେ । ଖୋର୍ଦ୍ଧା, ଭୁବନେଶ୍ୱର, କଟକ, ପୁରୀ, ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର, ନୟାଗଡ଼, କନ୍ଧମାଳ, ବାଲିଗୁଡ଼ା, ପାରଳାଖେମୁଣ୍ଡିର ଆରମ୍ଭ କରି ବିଦେଶୀ ପର୍ଯ୍ୟଟକଙ୍କ ଭିତରେ ୧୨.୧୨.୦୪ ତାରିଖର ଭିଡ଼ ଜମି ଯାଇଥିଲା । ବିଦେଶୀ ଗୋରା ପର୍ଯ୍ୟଟକଙ୍କ ସାକ୍ଷାତକାରରେ ମତାମତ ମଗାଯିବାବେଳେ କହିଥିଲେ, 'ବଡ଼ ଆଶ୍ଚର୍ଯ୍ୟ, ଉପଭୋଗପୂର୍ଣ୍ଣ ସମାରୋହ ଏହି ବେଳାଭୂମି ମହୋତ୍ସବ । ଭାରତର ବିଭିନ୍ନ ପ୍ରାନ୍ତରର ବିଭିନ୍ନ ଭାଷାଭାଷୀଙ୍କ ଲୋକ ନୃତ୍ୟ, ସଙ୍ଗୀତ ଓ ବାଦ୍ୟ ସହ ସେମାନଙ୍କ ପୋଷାକ ଅତ୍ୟନ୍ତ ଆମୋଦଦାୟକ ଓ ଆଶ୍ଚର୍ଯ୍ୟଜନକ । ଏହା ଦେଖିବା, ଉପଭୋଗ କରିବା ସୁଯୋଗ ଆମ୍ଭମାନଙ୍କ ନିମନ୍ତେ ଏକ ସୌଭାଗ୍ୟ କଥା ।' ପଞ୍ଜାବର ଗୀଧା, ଆସାମର ବୋରଦାଇ ସିକିଳା, ମହାରାଷ୍ଟ୍ରର ଲାବଣୀ, କେରଳର କଥାକଲି, ଚେନ୍ନାଇର ଭାରତ ନାଟ୍ୟମ, ବିହାରର ଭୋଜପୁରି ଝୁମର ଅତ୍ୟନ୍ତ ମନୋରଞ୍ଜନ ଧର୍ମୀ, ଲୋକନୃତ୍ୟ ଏହି ବେଳାଭୂମି ମହୋତ୍ସବ ୨୦୦୪କୁ ଆକର୍ଷଣୀୟ କରିପାରିଥିଲା ।

କେରଳ, ଚେନ୍ନାଇ, ବିହାର, ପଞ୍ଜାବ, ମହାରାଷ୍ଟ୍ର, ଆସାମର ଲୋକନୃତ୍ୟ ଦଳର କଳାକାରମାନେ ସ୍ତମ୍ଭୀଭୂତ ହୋଇଯାଇଥିଲେ । ସେମାନଙ୍କ ମତରେ 'ବିଭିନ୍ନ ସ୍ଥାନରେ ସେମାନେ ନୃତ୍ୟ ପରିବେଷଣ ପାଇଁ ଅଂଶଗ୍ରହଣ କରିଛନ୍ତି କିନ୍ତୁ ଏହିପରି ସମାବେଶ, ଉତ୍ସବ ଜୀବନରେ ପ୍ରଥମଥର ପାଇଁ ଦେଖିଛୁ । ଏଣୁ ସେମାନେ ଅଧିକ ସମୟ ଦେବାକୁ ବାରମ୍ବାର ଅନୁରୋଧ କରିଥିଲେ ନିଜର ନୃତ୍ୟ ପରିବେଷଣ କରିବା ନିମନ୍ତେ । ମହାରାଷ୍ଟ୍ରର ଲାବଣୀ ନୃତ୍ୟର ଲଳନା କଳାକାରମାନେ ଅତୀବ ନେହୁରା ହୋଇ ନୃତ୍ୟ ସମୟକୁ ଚୋରାଇ ନେଇ ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା ସ୍ୱରୂପ ନାଚି ଦର୍ଶକଙ୍କୁ ମନ୍ତ୍ରମୁଗ୍ଧ କରିଥିଲେ ।





ଜିଲ୍ଲା ପ୍ରଦର୍ଶନୀ ମଣ୍ଡପ ଓ ପଲ୍ଲିଶ୍ରୀ ମେଳାରେ ଭାଗ ନେବାକୁ ଆସିଥିବା ଆତ୍ମସହାୟିକା ଗୋଷ୍ଠୀ ଓଡ଼ିଶାର ବିଭିନ୍ନ ଜିଲ୍ଲାର ଡି.ଆର୍.ଡି.ଏ. ଦ୍ୱାରା ପ୍ରେରିତ ଆତ୍ମ ସହାୟିକା ଗୋଷ୍ଠୀର ଟେରିକୋଟା, ସମ୍ବଲପୁରର ଶାଢ଼ୀ, ପାଟ ଓ ନବରଙ୍ଗପୁର, ରାୟଗଡ଼ା, ସୁନ୍ଦରଗଡ଼ ପ୍ରଭୃତି ଜିଲ୍ଲାର ପ୍ରଦର୍ଶନୀ ମଣ୍ଡପ ଅଂଶଗ୍ରହଣକାରୀ ଦଳର ସଦସ୍ୟମାନଙ୍କ ମତରେ ଏହି ମେଳା ଆଉ ୧୦ ଦିନ ଧରି ହୋଇଥିଲେ ତାଙ୍କର ଅଧିକ ବିକ୍ରୟ ହୋଇଥାନ୍ତା । ସ୍ଥାନୀୟ ବାସିନ୍ଦା, ବ୍ରହ୍ମପୁର ଓ ବିଭାଗୀୟ ଷ୍ଟଲରେ ଖାଦ୍ୟ ବିକ୍ରୟକରି ସଦସ୍ୟା-ସଦସ୍ୟମାନେ ଚାହୁଁଥିଲେ ଅଧିକ ୫ ଦିନ ମହୋତ୍ସବ ଓ ପ୍ରଦର୍ଶନୀକୁ ବଢ଼ାଇ ଦେଲେ ଭଲ ବ୍ୟବସ୍ଥା ହୋଇପାରିଥାନ୍ତା ।

ଏହା ହିଁ ୨୦୦୪, ଗୋପାଳପୁର ବେଳାଭୂମି ମହୋତ୍ସବ ସଫଳତା । ସାଂସ୍କୃତିକ ବିଚିତ୍ରା ପ୍ରତିଦିନ ସନ୍ଧ୍ୟାରେ ଆୟୋଜନ କରିବା ମଧ୍ୟରେ ସ୍ଥାନୀୟ କଳାକାର ଲୋକନୃତ୍ୟ, ସଙ୍ଗୀତ, ବାଦ୍ୟଦଳ ଅଧିକ ପ୍ରତିଯୋଗିତା ମନୋବୃତ୍ତିରେ ଓହ୍ଲାଇଥିଲେ ବିଶାଳ ଖୋଲା ଆକାଶ ବେଳାଭୂମି ରଙ୍ଗମଞ୍ଚ ପ୍ରାଙ୍ଗଣକୁ । ଅଧିକାଂଶ ସମୟ ଅଭାବରୁ ସୁଯୋଗ ପାଇନଥିଲେ । ତଥାପି ସେମାନେ ନିରାଶ ନହୋଇ ଅନ୍ୟ ପ୍ରଦେଶର ନୃତ୍ୟ, ସଙ୍ଗୀତ, ବାଦ୍ୟ, ସଂସ୍କୃତିକୁ ଅଧିକ ସହଯୋଗ ଦେଇଥିଲେ । ଓଡ଼ିଶାର ଓଡ଼ିଶୀ ନୃତ୍ୟକୁ ଶ୍ରୀବୃଦ୍ଧି କରି ପାରିଥିବା ମୀରା ଦାସ ଓ ତାଙ୍କ ସାଥିଙ୍କ ରୁଚିବନ୍ତ ଓଡ଼ିଶୀ ନୃତ୍ୟ ପରିବେଷଣ ଗୋପାଳପୁର ବେଳାଭୂମି ମହୋତ୍ସବର ଉଦ୍‌ଘାଟନୀ ଉତ୍ସବକୁ ଅତ୍ୟନ୍ତ ମନଲୋଭା କରିପାରିଥିଲା ।

କୋଲକାତାର ପୂର୍ବାଞ୍ଚଳ ସଂସ୍କୃତି କେନ୍ଦ୍ରଦ୍ୱାରା ପଞ୍ଜାବର 'ଗୀଧା' ମହାରାଷ୍ଟ୍ରର 'ଲବଣୀ' ଓ ଆସାମର 'ବୋରଦୟୀ ସିକିଳା' ନୃତ୍ୟ ପ୍ରଯୋଜିତ ହୋଇଥିଲା, ଯେଉଁଥିରେ ବୀରରସ, ରୋମାଞ୍ଚ ପ୍ରେମରସ ଓ ଉନ୍ମାଦନା ଭରି ରହି ଦର୍ଶକଙ୍କୁ ବିମୋହିତ କରିଥିଲା । ଭାରତ ସରକାରଙ୍କ ସଂସ୍କୃତି ମନ୍ତ୍ରଣାଳୟର ସଙ୍ଗୀତ-ନାଟକ ଡିଭିଜନ କୋଲକାତା ଦ୍ୱାରା ରାଜସ୍ଥାନର 'ଭବାଇ' ରଘୁରାଜପୁର 'ଗୋଟିପୁଅ ନୃତ୍ୟ' ଦେଶବିଦେଶର ଦର୍ଶକମାନଙ୍କୁ ଆପ୍ୟାୟିତ କରିପାରିଥିଲା । ଏହାସହିତ ଉଦ୍‌ଘାଟନୀ ୮.୧୨.୦୪ ଦିନ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଦ୍ୱାରା ରଘୁରାଜପୁରର ଲୋକନୃତ୍ୟ ଗୋଟିପୁଅ ନାଚ ଅନ୍ୟ ରାଜ୍ୟର କଳାକାରମାନଙ୍କୁ ଏହି ନୃତ୍ୟ ଉପଭୋଗ କରିବାକୁ ସୁଯୋଗ ଦେଇଥିଲା । ଗଞ୍ଜାମ ଜିଲ୍ଲାର ଲୋକନୃତ୍ୟ, ସଙ୍ଗୀତ ଓ ବାଦ୍ୟ ନିଶ୍ଚିତ ରୂପେ ସମଗ୍ର ଭାରତରେ ସର୍ବାଧିକ ସ୍ଥାନ ରଖିଛି । ଏହାର ଯୋଡ଼ି ଶଙ୍ଖ, ରଣପା, ମୃଦଙ୍ଗ, ଜନ୍ତୁ ନାଚ ସମସ୍ତଙ୍କ ମନ ହରଣ କରିଥିବାବେଳେ ଉଦ୍‌ଯାପନୀ ଉତ୍ସବରେ ମୋହିନୀ ଶିଳାଲିପିଙ୍କ ଓଡ଼ିଶୀ ନୃତ୍ୟ ଓ ସମ୍ବଲପୁରୀ ନୃତ୍ୟ ପରିବେଷଣ ଉତ୍ସବର ରଙ୍ଗାରଙ୍ଗ କାର୍ଯ୍ୟକ୍ରମକୁ ବୃଦ୍ଧି କରିପାରିଥିଲା । ଉତ୍ସବର ଦ୍ୱିତୀୟ ରଜନୀର ସାଂସ୍କୃତିକ କାର୍ଯ୍ୟକ୍ରମରେ ଭୁବନେଶ୍ୱରର ନୂପୁର ଅନୁଷ୍ଠାନର କଳାକାରମାନେ ଓଡ଼ିଶୀ ନୃତ୍ୟରେ ସମସ୍ତଙ୍କ ମନ ଭୁଲାଇ ନେଇଥିଲେ । ସମ୍ବଲପୁରର ଉଜିଆ ସାଂସ୍କୃତିକ ଅନୁଷ୍ଠାନର କଳାକାରମାନେ ସମ୍ବଲପୁରୀ ନୃତ୍ୟ ପ୍ରଥମ ଓ ଦ୍ୱିତୀୟ ରଜନୀର ଶୋଭାକୁ ବୃଦ୍ଧି କରିଥିଲେ । ମଡର୍ଣ୍ଣ ଓ ଦେଶାତ୍ମବୋଧକ ନୃତ୍ୟ ପରିବେଷଣରେ ବ୍ରହ୍ମପୁରର ବୁମ୍-ବୁମ୍, କ୍ୱିଏଟ୍, ପ୍ରିନ୍‌ସ ଏକାଡେମୀ, ଡ୍ୟାନ୍ସ ଆଟାକ୍, ସ୍ଲୋ ବିଟ୍, ଗୋପାଳପୁରର ବିନାୟକ ଡ୍ୟାନ୍ସ ଗ୍ରୁପ ଓ ଛତ୍ରପୁରର କିଲର୍ ବିଟ୍, ଏଙ୍ଗିମା ସହ ବକ୍ସିପଲ୍ଲୀର ଚିରାଚରିତ ରାମାୟଣ କଥାମୃତ ନୃତ୍ୟରେ ଡିସେମ୍ବର ମାସର ଶୀତୁଆ ରଜନୀକୁ ଅଧିକ ମତୁଆଳ କରିପାରିଥିଲା ।

ଉଦ୍‌ଘାଟନୀ ଉତ୍ସବରେ ଓଡ଼ିଶାର ସଂସ୍କୃତି ଓ ପଞ୍ଚାୟତିରାଜ ମନ୍ତ୍ରୀ ଡାଃ ଦାମୋଦର ରାଉତ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ପ୍ରଦର୍ଶନୀ, ସାଂସ୍କୃତିକ ସନ୍ଧ୍ୟାର ଶୁଭ ଉଦ୍‌ଘାଟନ କରିବା ସହ 'ଗଞ୍ଜା - ଏ - ଆମ୍'ର ତୃତୀୟ ଭାଗ ଓ ସ୍ମରଣିକା ୨୦୦୪ର ଉନ୍ମୋଚନ କରିଥିଲେ । ଜିଲ୍ଲାପାଳ ତଥା ଜିଲ୍ଲା ସଂସ୍କୃତି ପରିଷଦର ଅଧ୍ୟକ୍ଷ ଉତ୍ସବରେ ଅଧ୍ୟକ୍ଷତା କରିଥିବାବେଳେ ଗୋପାଳପୁର ବିଧାୟକ ଡା. ତ୍ରିନାଥ ବେହେରା, ବ୍ରହ୍ମପୁର ବିଧାୟକ ଡା. ରମେଶଚନ୍ଦ୍ର ଚ୍ୟାଉପଟ୍ଟନାୟକ ଓ ଛତ୍ରପୁର ବିଧାୟକ ଏନ୍. ନାରାୟଣ ରେଡ୍ଡି, ବ୍ରହ୍ମପୁର ପୌରାଧକ୍ଷା ଶ୍ରୀମତୀ ସୁଲୋଚନା ସ୍ୱାଇଁ, ବ୍ରହ୍ମପୁର ଉପନଗରପାଳ ନିରଞ୍ଜନ ଜେନା, ଜିଲ୍ଲା ପରିଷଦର ସଭାପତି ରେବତୀ ମୋହନ ନାୟକ, ଗୋପାଳପୁର ଏନ୍.ଏ.ସି. ନଗରପାଳ ଶଶୀଭୂଷଣ ମହାନ୍ତି ଓ ଉପାଧକ୍ଷା ଶ୍ରୀମତୀ ନାଗରତ୍ନାମା ପ୍ରମୁଖଙ୍କ ସହ ଉତ୍କଳ ସମ୍ମିଳନୀର ସଭାପତି ବସନ୍ତ କୁମାର ପାଣିଗ୍ରାହୀ ସମାବେଶରେ ଉଦ୍‌ବୋଧନ ଦେଇଥିଲେ । ହୋଟେଲ ଆସୋସିଏସନ୍ ସଭାପତି ଉମାଶଙ୍କର ପାଣିଗ୍ରାହୀ ଓ ସମ୍ପାଦକ ବି. ସନ୍ତୋଷ କୁମାର ପ୍ରମୁଖ ଯୋଗ ଦେଇଥିଲେ । ଉଦ୍‌ଯାପନୀ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଶକ୍ତି, ସୂଚନା ପ୍ରଯୁକ୍ତି ଓ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀଯୁକ୍ତ ସୂର୍ଯ୍ୟ ନାରାୟଣ ପାତ୍ର ଓ ସମ୍ମାନିତ ଅତିଥି ରୂପେ ରାଜସ୍ୱ, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ ଶ୍ରୀଯୁକ୍ତ ମନମୋହନ ସାମଲ ଉଦ୍‌ବୋଧନ ଦେଇଥିଲେ । ଉତ୍ସବରେ ଜିଲ୍ଲାପାଳ ଶ୍ରୀ ସଞ୍ଜୟ କୁମାର ସିଂ ଓ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ନିର୍ଦ୍ଦେଶକ ଶ୍ରୀ ମନୀଷ କୁମାର ବର୍ମ୍ମା ଗୋପାଳପୁର ବେଳାଭୂମି ମହୋତ୍ସବ ଉପରେ ସୂଚନା ଦେଇଥିଲେ ।

ଜିଲ୍ଲା ପ୍ରଶାସନ ଓ ପୋଲିସ ପ୍ରଶାସନର ସଫଳ ଦାୟିତ୍ୱ ନିର୍ବାହରେ ଅତି ଶାନ୍ତି, ଶୃଙ୍ଖଳାର ସହିତ ମହୋତ୍ସବ ୫ ଦିନ ସମ୍ପୂର୍ଣ୍ଣ ହୋଇପାରିଥିଲା । ସାଉଥ୍‌କୋର ସମ୍ପୂର୍ଣ୍ଣ ସହାୟତାରେ ଦିନେ ମଧ୍ୟ ବିଦ୍ୟୁତ୍ ବିଭ୍ରାଟ ଦେଖାଯାଇନଥିଲା । ବେଳାଭୂମି ମହୋତ୍ସବର ମୁଖ୍ୟ ତୋରଣରେ ଓଡ଼ିଶାର ସାଧବପୁଅଙ୍କ ବୋଇତର ଝଲକ ପ୍ରତିଫଳନ କରିବାରେ ଭୁବନେଶ୍ୱର ଚିତ୍ରଶିଳ୍ପୀ ଅସୀମ ବସୁ ଓ ସହକର୍ମୀମାନେ ସିଦ୍ଧହସ୍ତ ହୋଇପାରିଥିଲେ ।

ପାଞ୍ଚ ଦିନର ମହୋତ୍ସବରେ ଉଦ୍‌ଘୋଷକ ରୂପେ ନୂତନ ପ୍ରତିଭା ଚୟନରେ ଜିଲ୍ଲା ପ୍ରଶାସନ, ସଂସ୍କୃତି ପରିଷଦ ନିଶ୍ଚିତ ରୂପେ ସଫଳ





ହୋଇପାରିଛି । ଗୋପାଳପୁର ବେଳାଭୂମି ମହୋତ୍ସବ-୨୦୦୪ର ପ୍ରଥମ ରଜନୀରେ ଉଦ୍‌ଘୋଷକ ଦମ୍ପତ୍ତି ହୃଷିକେଶ ପାଣିଗ୍ରାହୀ ଓ ସୁଦୀପ୍ତା ପାଣିଗ୍ରାହୀ କାର୍ଯ୍ୟକ୍ରମକୁ ନିଜର ସୁଲଳିତ କଣ୍ଠସ୍ୱରରେ ପରିଚାଳନା କରି ଦର୍ଶକଙ୍କ ମନ ଛୁଆଁଇଥିବାବେଳେ ଦ୍ୱିତୀୟ ରଜନୀରେ ଚଳଚ୍ଚିତ୍ର ଅଭିନେତ୍ରୀ ଉଷାଶ୍ରୀ ମିଶ୍ର, ତୃତୀୟ ଓ ଚତୁର୍ଥ ରଜନୀରେ ଚଳଚ୍ଚିତ୍ର ଅଭିନେତ୍ରୀ ଗୁନ୍‌ଗୁନ୍ ନିଜ ପଦଲାଳିତ୍ୟରେ ଦର୍ଶକଙ୍କୁ ଅନ୍ୟ ଭାବଜଗତକୁ ନେଇଯାଇଥିଲେ । ଏହାସହିତ ନିରାକାର ସାମଲଙ୍କ ସଂଯୋଜନା କାର୍ଯ୍ୟକ୍ରମର ଆକର୍ଷଣକୁ ବଢ଼ାଇ ପାରିଥିଲା ।

ଗୀତା ମିଶ୍ର ଓ ଶୈଳଭାମା ମହାପାତ୍ରଙ୍କ ମେଲୋଡ଼ି ଚତୁର୍ଥ ରଜନୀକୁ ଅତ୍ୟନ୍ତ ଆକର୍ଷଣୀୟ କରିପାରିଥିଲା । ଜିଲ୍ଲା ଉନ୍ନୟନ ପ୍ରଦର୍ଶନୀ, ସାଂସ୍କୃତିକ ବିଚିତ୍ରା, ସ୍ମରଣିକା-୨୦୦୪ ଓ ଗଞ୍ଜା-ଏ-ଆମ ତୃତୀୟ ଭାଗର ଉନ୍ମୋଚନରେ ବେଳାଭୂମି ମହୋତ୍ସବ-୨୦୦୪କୁ ଚିର ଜୀବନ୍ତ କରାଯାଇପାରିଥିଲା । ପାଞ୍ଚଦିନ ଧରି ଭାରତର ନିରାପତ୍ତା ବିଭାଗର ଗୋଳାବନ୍ଧସ୍ଥିତ ମହାବିଦ୍ୟାଳୟର ଅସ୍ତ୍ରଶସ୍ତ୍ର ପ୍ରଦର୍ଶନ ବେଳାଭୂମି ମହୋତ୍ସବକୁ ଅଧିକ ଆକର୍ଷିତ କରିପାରିଥିଲା ।

ସାହିତ୍ୟ, ସଂସ୍କୃତିର ବିକାଶ ସହ ଲୋକନୃତ୍ୟ, ଲୋକବାଦ୍ୟ, ଲୋକ ସଙ୍ଗୀତର ସୁରକ୍ଷା, ଲୋକପ୍ରିୟତା ପାଇଁ ଏହା ଏକ ଉତ୍କୃଷ୍ଟ ମାଧ୍ୟମ । ଭାରତର ବିଭିନ୍ନ ଅଞ୍ଚଳର କଳା ସଂସ୍କୃତି ସହ ଓଡ଼ିଶା ଓ ଆମ ଜିଲ୍ଲାର କଳାକାରମାନଙ୍କର ପ୍ରତିଭା ଉଦୟ ନିମନ୍ତେ ଅଧିକ ଉତ୍ସାହିତ କରିବାକୁ ଏହି ଉତ୍ସବର ଆୟୋଜନ କରାଯାଇଥିଲା । ଯୁବ କଳାକାରମାନଙ୍କୁ ଉତ୍ସାହିତ କରିବା ସହ ଚିତ୍ରଶିଳ୍ପୀମାନଙ୍କୁ ଚଳିତ ଉତ୍ସବରେ ଉତ୍ସାହିତ କରିବା ନିମନ୍ତେ ବେଳାଭୂମି ଚିତ୍ରପଟ୍ଟ ପ୍ରତିଯୋଗିତାର ଆୟୋଜନ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠ କଳାକାର ରୂପେ ହେଲେନ କେଲର ରେଡକ୍ରସ ବଧିର ବିଦ୍ୟାଳୟ, ବ୍ରହ୍ମପୁରର କଳାଶିକ୍ଷକ କେ. ଧର୍ମାରାଓଙ୍କୁ ପ୍ରଶଂସାପତ୍ର ସହ ଉପଢୌକନ ଓ ଆର୍ଥିକ ପୁରସ୍କାରରେ ସମ୍ମାନିତ କରାଯାଇଥିଲା । ଯଦ୍ୱାରା ଆଗାମୀ ଦିନରେ ଉତ୍କୃଷ୍ଟ ଚିତ୍ର କଳାକାର ସୃଷ୍ଟି କରିବାକୁ ପ୍ରେରଣା ମିଳିବ । ଆନ୍ତର୍ଜାତିକ ବାଲୁକା ଶିଳ୍ପୀଙ୍କ ସହ ସ୍ଥାନୀୟ ବାଲୁକାଶିଳ୍ପୀଙ୍କୁ ଚଳିତ ଥର ସାମିଲ କରାଯାଇଛି । ଏହାବ୍ୟତୀତ ମିଶନ ଶକ୍ତି କାର୍ଯ୍ୟକ୍ରମର ସଫଳତାକୁ ପ୍ରତିପାଦିତ କରିବାକୁ ଓରମାସ ଦ୍ୱାରା ପଲ୍ଲୀଶ୍ରୀ ମେଳା କରାଯାଇଛି । ଗଞ୍ଜାମ ଜିଲ୍ଲାର ବିଭିନ୍ନ ବିଭାଗର ବିକାଶୋଭିମୁଖୀ କାର୍ଯ୍ୟକ୍ରମକୁ ପ୍ରତିଫଳନ କରିବା ନିମନ୍ତେ ଜିଲ୍ଲା ଉନ୍ନୟନ ପ୍ରଦର୍ଶନୀ ଆୟୋଜନ କରାଯାଇଛି । ଏଥିରେ ଘରୋଇ ପ୍ରତିଷ୍ଠାନମାନଙ୍କୁ ଉତ୍ସାହିତ କରାଯାଇଛି । ସ୍ଥାନୀୟ ସମୁଦ୍ର ଉପକୂଳବର୍ତ୍ତୀ ମତ୍ସ୍ୟଜୀବୀ ଯୁବକମାନଙ୍କ ଦକ୍ଷତା, ସାହସିକତାର ବୃଦ୍ଧି ପାଇଁ ନୌକାଚାଳନା ପ୍ରତିଯୋଗିତା ୪ ଦିନ ଧରି ବେଳାଭୂମିରେ ଆୟୋଜନ କରାଯାଇ ଶେଷ ଦିବସରେ ଭାରତୀୟ ଷ୍ଟେଟ ବ୍ୟାଙ୍କ, ଛତ୍ରପୁର ଦ୍ୱାରା ପୁରସ୍କୃତ ଅର୍ଥକୁ ଜିଲ୍ଲାପାଳ ଶ୍ରୀ ସଞ୍ଜୟ କୁମାର ସିଂ ପ୍ରଦାନ କରିଥିଲେ । ଶିଶୁମାନଙ୍କ ମନୋରଞ୍ଜନ ନିମନ୍ତେ ମୌତକା କୁଆଁ, ମୀନାବଜାର, ରାମଦୋଳି ପ୍ରଭୃତି ମନୋରଞ୍ଜନ ଧର୍ମୀ ସାଧନର ବ୍ୟବସ୍ଥା ଚଳିତବର୍ଷ ଅତ୍ୟନ୍ତ ସଫଳତାର ସହ କରାଯାଇପାରିଥିଲା ।

ସୂଚନା ଅଧିକାରୀ
ଜିଲ୍ଲା ସୂଚନା ଓ ଲୋକ ସଂପର୍କ ବିଭାଗ
ଛତ୍ରପୁର, ଗଞ୍ଜାମ

---

# ସାଧାରଣତନ୍ତ୍ର ଦିବସ

କାଞ୍ଚନ ମିଶ୍ର

ଅତୀତ କାଳରେ ଫିରିଙ୍ଗି ଶାସନ
ଭାରତରେ ଥିଲା ରହି,
ଜନଆନ୍ଦୋଳନ ଜାଗରଣ ହେଲା
ସ୍ୱାଧୀନତା ଲାଭ ପାଇଁ ।
ବିଦ୍ରୋହର ଅଗ୍ନି ତେଜିଲା ଦେଶରେ
କ୍ରମଶଃ ଦିନକୁ ଦିନ
ବିଦେଶୀ ହଟିଲେ ଏ ଦେଶ ମାଟିରୁ
ଭାରତ ହେଲା ସ୍ୱାଧୀନ ।
ସ୍ୱାଧୀନ ଭାରତେ ବ୍ରିଟିଶ ନିୟମ
ଚାଲିଥିଲା କିଛି ଦିନ
ଲୋକ ପ୍ରତିନିଧି ଶାସନ ଖସଡ଼ା
ଲେଖା କଲେ ଆୟୋଜନ ।

ପଚାଶ ମସିହା ଜାନୁଆରୀ ମାସ
ଛବିଶ ତାରିଖ ଦିନ,
କାର୍ଯ୍ୟକାରୀ ହେଲା ଏହି ଦେଶ ପାଇଁ
ଆମ ନୂଆ ସମ୍ବିଧାନ ।
ଏ ଦେଶ ଜନତା ଜନତାଙ୍କ ଦ୍ୱାରା
ଜନତାର ସେବା ପାଇଁ
ଗଣତନ୍ତ୍ର ରାଷ୍ଟ୍ର ଚଳାଉଛୁ ଆମେ
ଶାସନର ଭାର ନେଇ ।
ଜାତି, ଧର୍ମ, ଭାଷା, ଭେଦଭାବ ଭୁଲି
ସଭିଏଁ ହୋଇବା ଏକ
ହିଂସା, ଦ୍ୱେଷ, କ୍ରୋଧ, ଲୋଭ ତ୍ୟାଗ କରି
ରଖିବା ଦେଶର ଟେକ ।

ଏ ଦେଶର ନଈ, ପାହାଡ଼, ପର୍ବତ
ସବୁଜିମା ତରୁଲତା
ତା' ପାଣି, ପବନ, ପ୍ରାଚୀନ କୀରତି
ଗାଉଥିବ ଦେଶ ଗାଥା ।
ଜାନୁଆରୀ ମାସ ଛବିଶ ତାରିଖ
ଭାରତ ପାଇଁ ମହାନ,
ସାଧାରଣତନ୍ତ୍ର ରାଷ୍ଟ୍ର ଜନ୍ମ ନେଲା
ଆଜି ସେହି ଶୁଭ ଦିନ ।

ୟୁନିଟ୍-୯, ଭୁବନେଶ୍ୱର-୨୨

# ଭଦଭଦଳିଆ ପକ୍ଷୀ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

### ଓଡ଼ିଶା ଓ ବନ୍ୟପ୍ରାଣୀ

ଓଡ଼ିଶାର ଭୌଗଳିକ ପରିସ୍ଥିତି ଓ ଜଳବାୟୁ ତଥା ଜଙ୍ଗଲ ପରିବେଶକୁ ନେଇ ଦେଖାଯାଆନ୍ତି ବିଭିନ୍ନ ପ୍ରକାରର ପ୍ରାଣୀ । ପରିବେଶର ଅବକ୍ଷୟ ଓ ମନୁଷ୍ୟର ବିଭିନ୍ନ ଅମାନୁଷିକ ଅତ୍ୟାଚାର ଫଳରେ ପରିବେଶର ଦ୍ରୁତ ଅବକ୍ଷୟ ରାଜ୍ୟର ଉଦ୍ଭିଦ ଓ ପ୍ରାଣୀମାନଙ୍କୁ ଠେଲି ଦେଉଛି ହ୍ରାସ ପାଇବାରେ । କାହିଁ କେତେ ଯେ ପ୍ରାଣୀ ମରି ହଜିଗଲେଣି ତାହା ଗଣି ବାହାର କରିବା କଷ୍ଟ । କିନ୍ତୁ ଦୁଃଖ ଓ ପରିତାପର ବିଷୟ ଯେ ଯେଉଁ କେତେକ ପ୍ରାଣୀ ଆମ ଆଖି ଆଗରେ ଦେଖାଯାଉଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଆମ ନଜରକୁ ଆଉ ଆସୁନାହିଁ । କୁଆଡ଼େ ଗଲେ ସେମାନେ ଭାବିଲେ ଅନେକ ଦୁଃଖ ଆସେ ମନରେ । ତେବେ ଯେତିକି ଜୀବ ବଞ୍ଚି ରହିଛନ୍ତି, ସେମାନଙ୍କୁ ଭଲରେ ରକ୍ଷଣାବେକ୍ଷଣ କରିବା ପାଇଁ ରାଜ୍ୟ ସରକାର ବେଶ୍ ତତ୍ପର ଓ ସତର୍କ । ସେଥିପାଇଁ ସରକାରଙ୍କର ଅଭୟାରଣ୍ୟ, ପାର୍କ, ଜୀବଉଦ୍ୟାନ, ସଫାରି, ନିର୍ଦ୍ଦିଷ୍ଟ ଜୀବ ପାଇଁ ସଂରକ୍ଷିତ ସ୍ଥାନ ଜୈବମଣ୍ଡଳ (Bioshpere Reserve) ଆଦିର ପ୍ରତିଷ୍ଠା ହିଁ ଜୀବ ସୁରକ୍ଷାର ବଳୟ । ପ୍ରାଣୀମାନଙ୍କର ସୁରକ୍ଷା, ପ୍ରଜନନ ଓ ନିରାପଦରେ ଚରାବୁଲା ପାଇଁ ସ୍ଥାପିତ ଅଭୟାରଣ୍ୟ ଆଦି ବ୍ୟତୀତ ମୟୂରଭଂଜର ଘୋଷିତ ଶିମିଳିପାଳ ଜୈବମଣ୍ଡଳ ଆମ ରାଜ୍ୟ ତଥା ଦେଶର ବଡ଼ ଗର୍ବ । ଅନେକ ପ୍ରକାର ଛୋଟ ବଡ଼ ପ୍ରାଣୀମାନଙ୍କ ସହ ଉଦ୍ଭିଦମାନଙ୍କର ସଂରକ୍ଷଣ ହିଁ ଆମ ବନ୍ୟ ଜୀବନକୁ ସୁରକ୍ଷା ଦେବା ସହ ବଂଶବୃଦ୍ଧିରେ ସହାୟକ ହେବ ନିଶ୍ଚୟ । ଏଥିସହ ନନ୍ଦନକାନନ ପ୍ରାଣୀଉଦ୍ୟାନ (Nandankanan Zoological Park) ମଧ୍ୟରେ ଉପଭୋଗ କରୁଥିବା ଅନେକ ପ୍ରକାର ପ୍ରାଣୀମାନଙ୍କର ସମାବେଶ ଓ ପ୍ରାକୃତିକ ପରିବେଶରେ ରହୁଥିବା ପଶୁପକ୍ଷୀମାନଙ୍କୁ ଦର୍ଶକମାନେ ଦେଖି ଯେତିକି ଉପଭୋଗ କରୁଛନ୍ତି, ପ୍ରାଣୀମାନେ ମଧ୍ୟ ସେତିକି ଖୁସିରେ ଚଳପ୍ରଚଳ କରି ବଂଶବୃଦ୍ଧିକୁ ଅବ୍ୟାହତ ରଖିଛନ୍ତି । ଏହା ଓଡ଼ିଶାର ବନ୍ୟପ୍ରାଣୀ ଓ ରାଜ୍ୟ ପାଇଁ ପ୍ରଗତିର ସୂଚନା ।

### ଓଡ଼ିଶାର ରାଜ୍ୟ ଉଦ୍ଭିଦ ଓ ପ୍ରାଣୀ

ବନ୍ୟ ଜୀବନ କ୍ଷୟ ହେବା ଯୋଗୁଁ ଅନେକ ଲୋକଙ୍କ ମନରେ ନୈରାଶ୍ୟ ସୃଷ୍ଟି ହେବାର ଦେଖାଯିବା ପରେ କିଛି ବୈଜ୍ଞାନିକ ଓ



ଚିନ୍ତାଶୀଳ ବ୍ୟକ୍ତି ଜନସାଧାରଣଙ୍କ ମନ ମଧ୍ୟରେ ସଚେତନତା ସୃଷ୍ଟି କରିବା ଲାଗି ପଦକ୍ଷେପ ନେଲେ । ଲକ୍ଷ୍ୟ ରହିଥିଲା ଯେ ପିଲା ଓ ବଡ଼ଲୋକମାନଙ୍କ ମନରେ ଜୀବମାନଙ୍କ ପ୍ରତି ଶ୍ରଦ୍ଧା, ସ୍ନେହ ଓ ପ୍ରେମ ଜାଗ୍ରତ କରିବା । ପ୍ରାଣୀମାନଙ୍କୁ ଭଲ ନ ପାଇଲେ ସେମାନେ ଆମ ପରିବେଶରେ ତିଷ୍ଠିବା କଷ୍ଟ ହୋଇଯିବା ସ୍ୱାଭାବିକ । ସେଥିପାଇଁ ଉଦ୍ଭିଦ, ପ୍ରାଣୀ, ପୁଷ୍ପ ଓ ପକ୍ଷୀମାନଙ୍କୁ ଚିହ୍ନିତ କରାଯିବା ସତରେ ସୌଭାଗ୍ୟର ବିଷୟ । ଓଡ଼ିଶାର ରାଜ୍ୟ ଉଦ୍ଭିଦ (State Tree) ହେଉଛି ଅଶ୍ୱତ୍ଥ (Ficus religiosa) ଯାହାକି ଏକ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷର ଏକ ପ୍ରଥା ଅନୁଯାୟୀ ଧର୍ମ ଓ ସଂସ୍କୃତି ସହ ସଂଶ୍ଳିଷ୍ଟ । ଅଶୋକ (Saraca Asoka) ଏ ରାଜ୍ୟର ରାଜ୍ୟ ପୁଷ୍ପ (State flower) । ତା'ପରେ ପ୍ରାଣୀମାନେ ବା ବାଦ ଯିବେ କିପରି ? ସମ୍ବର (Cervus Unicolour) ନାମକ ହରିଣ ରାଜ୍ୟ ପଶୁ (State Animal) ହେବାବେଳେ ରାଜ୍ୟର ରାଜ୍ୟପକ୍ଷୀ (State Bird) । ଏ ଭଦଭଦଳିଆ (Coracias Benghalensis) ଓଡ଼ିଆମାନଙ୍କର ଏକ ଶୁଭ ପକ୍ଷୀ । ଉଦ୍ଭିଦ, ପୁଷ୍ପ, ପଶୁ ଓ ପକ୍ଷୀମାନଙ୍କର ଆମ ପ୍ରତି ଅବଦାନ । ଆମର ସେମାନଙ୍କ ପ୍ରତି ସ୍ନେହ ଓ ସଦିଚ୍ଛା ତଥା ବିଶେଷ କରି ପରିପାର୍ଶ୍ୱ ପ୍ରତି ସେମାନଙ୍କର





ଭାରସାମ୍ୟ ରକ୍ଷା ଦିଗରେ ଗୁରୁତ୍ୱକୁ ଉପଲବ୍ଧି କରାଯାଇ ଉପଯୁକ୍ତ ଭାବରେ ରାଜ୍ୟର ଗର୍ବ ହିସାବରେ ସ୍ଥାନିତ କରାଯାଇଛି । ବଡ଼ ଦୁଃଖର ବିଷୟ ଯେ ଆମେ ଅନେକ ସମୟରେ ଏମାନଙ୍କୁ ଜାଣି ନଥାଉ ବା ଜାଣି ମଧ୍ୟ ଅଜଣା ଭାବରେ ସେମାନଙ୍କୁ ଆମର ସୁନ୍ଦର ପରିବେଶରୁ ଲୋପ କରି ଦେବାପାଇଁ ପଶ୍ଚାତ୍ ପଦ ହେଉ ନାହୁଁ । ଯଦି ସେମାନଙ୍କ ପ୍ରତି ସାମାନ୍ୟ ଦୟାଭାବ ପ୍ରଦର୍ଶନ ନକରିବା ସେମାନେ ହୁଏତ ଦିନେ ନା ଦିନେ ଡୋଡୋ ପକ୍ଷୀ ପରି ଆମ ପାଖରୁ ଲୋପ ପାଇଯିବେ ବା ଦୂରେଇ ଯିବେ ।

**ଓଡ଼ିଶାର ଗର୍ବ ଓ ସଙ୍କେତ ଭଦଭଦଳିଆ ପକ୍ଷୀ**

ଭଦଭଦଳିଆ (Blue Jay)କୁ ସାଧାରଣ ଭାବରେ ଲୋଟଣୀ (Roller) ମଧ୍ୟ କୁହାଯାଏ । ଅନ୍ୟ ଦେଶରେ ଲୋଟଣୀମାନେ ଦେଖାଗଲେ ବି ଭାରତରେ ଦେଖାଯାଉଥିବା ଲୋଟଣୀ (Indian Roller Bird) ଅନ୍ୟ ଲୋଟଣୀମାନଙ୍କଠାରୁ ଦେଖିବାକୁ ଭିନ୍ନ । ଯାହା ହେଉ ଭଦଭଦଳିଆକୁ ହିନ୍ଦୀ ଭାଷାରେ ନୀଳକଣ୍ଠ (Neelkanth) ବା ସବ୍‌ଜକ୍ (Sabzak) ବୋଲି କୁହାଯାଏ । ଏହା ଦେଖିବାକୁ ମାଛରଙ୍କା (King-fisher) ପକ୍ଷୀପରି ଦେଖାଯାଏ । କିନ୍ତୁ ମାଛରଙ୍କା ଓ ଭଦଭଦଳିଆ ମଧ୍ୟରେ ପାର୍ଥକ୍ୟ ଅନେକ । ଭଦଭଦଳିଆ ଏକ ଅତି ସୁନ୍ଦର ପକ୍ଷୀ ।

ଶାନ୍ତ କୋଳାହଳ ଶୂନ୍ୟ ପଡ଼ିଆ ଏମାନଙ୍କର ପ୍ରିୟ ସ୍ଥାନ । ଜଙ୍ଗଲକୁ ବେଶୀ ଭଲପାଆନ୍ତି ନାହିଁ । ଖୋଲା ଗୋଟିକିଆ ଗଛ, ଟେଲିଫୋନ ଖୁଣ୍ଟ, ତାର ଓ ବତୀଖୁଣ୍ଟ ଆଦି ସ୍ଥାନରେ ଏକାକୀ ବସିଥିବାର ଦେଖାଯାଏ । ଏମିତି ଚୁପ୍‌ଚାପ୍ ବସିଥିବାବେଳେ ଶିକାର ବା ଖାଦ୍ୟ ନଜରରେ ପଡ଼ିଲେ ଭୂଇଁରୁ ଶିକାରକୁ ଝାମ୍ପି ନେଇ ପୁଣି ଉଚ୍ଚ ଜାଗାରେ ବସି ଖାଇବାରେ ସେମାନେ ଖୁସି ହୋଇଥାଆନ୍ତି । ଏମାନଙ୍କର ଖାଇବା ଶିକାରଗୁଡ଼ିକ ହେଉଛନ୍ତି ବିଭିନ୍ନ ପ୍ରକାର ପୋକ ବା କୀଟ, ପ୍ରଜାପତି, ମଥ ଓ ପତଙ୍ଗ ପରି ପ୍ରାଣୀ । ତା'ଛଡ଼ା ବଡ଼ ବଡ଼ ପ୍ରାଣୀମାନେ ବି ତାଙ୍କ ହାବୁଡ଼ରୁ ବାଦ ପଡ଼ନ୍ତିନି । ସେମାନେ ହେଲେ ବେଙ୍ଗ, ଏଣ୍ଡୁଅ, ଝିଟିପିଟି, ଚମ୍ପେଇନେଉଳ, ମୂଷା ଓ ଅନ୍ୟାନ୍ୟ ଛୋଟ ଛୋଟ ମେରୁଦଣ୍ଡୀ ପ୍ରାଣୀ ।

ଭଦଭଦଳିଆ ଦେଖିବାକୁ ଆକାରରେ ପାରା ପରି । ପାରାଠାରୁ ମୁଣ୍ଡଟି ବଡ଼ ଓ ଶକ୍ତ । ଥଣ୍ଟଟି ମଧ୍ୟ ଓଜନିଆ ଏବଂ ମୁନିଆ । ପେଟ ପାଖର ବର୍ଣ୍ଣ ଧୂସର, ମାତ୍ର ଲାଞ୍ଜର ତଳଭାଗଟି ପାଣିଚିଆ ନୀଳ । ଡେଣା ଦୁଇଟି ନୀଳ ଓ କଳାରଙ୍ଗର ପଟା ପଟା ଦାଗ ରହିଥାଏ । ଦୂରରୁ ଦେଖିଲେ ଶରୀରଟି ପ୍ରାୟ ଚକ୍‌ଚକ୍ ନୀଳବର୍ଣ୍ଣର ଦିଶେ । ଦେହ ତୁଳନାରେ ଲାଞ୍ଜଟି ଛୋଟ ଓ ଆୟତାକାର । ନୀଳବର୍ଣ୍ଣ ଯୋଗୁଁ ହିନ୍ଦୀରେ 'ନୀଳକଣ୍ଠ' ବୋଲି ନାମକରଣ କରାଯାଇଛି । ଦେହଟି ବେଶ୍ ଚଉଡ଼ା । ପିଠି ପାଖରୁ ଦେଖିଲେ ଦେଖାଯାଏ ନୀଳବର୍ଣ୍ଣର ପରଗୁଡ଼ିକ ଦୁଇ ପାର୍ଶ୍ୱରେ କିଏ ଖଞ୍ଜିଦେବା ପରି । ମୋଟାମୋଟି ଶରୀରର ବର୍ଣ୍ଣ ବେଶ୍ ମନୋହର ଓ ମନୋଲୋଭା ।

ଭଦଭଦଳିଆର ବିଶେଷତ୍ୱ ହେଉଛି ଆକାଶରେ ଉଡ଼ାଣ । ଶୂନ୍ୟରେ ଉଡ଼ିବା ସମୟରେ ଏତେ ପ୍ରକାର କୌଶଳରେ ସେ ଉଡ଼ିପାରେ ଯେ ତାହା ନଦେଖିଲେ ବିଶ୍ୱାସ କରିବା ଅସମ୍ଭବ । ଘିରିଘିରି ହୋଇ ଚକର କାଟି ଉଡ଼ିବା, ତଳୁ ଉପରକୁ ରକେଟ୍ ଯିବା ପରି ଖୁବ୍ ଜୋର୍‌ରେ ଉଠିବା, ଉପରୁ ତଳକୁ ଖସିବା ବେଳେ ମୁଣ୍ଡକୁ ଲମ୍ବାଇ ତଳକୁ ଉଡ଼ି ଉଡ଼ି ଖସିବା, ସର୍କସରେ ଖେଳ ଦେଖାଇବା ପରି ଚିତ୍‌ପଟାଙ୍ଗ ମାରିବା ଏବଂ ବାମରୁ ଡାହାଣକୁ ବା ଡାହାଣରୁ ବାମକୁ କଡ଼େଇ କଡ଼େଇ ଉଡ଼ିବା ଆଦି ଉଡ଼ାଣ ଶୈଳୀ ଅତି ଆକର୍ଷଣୀୟ । ଦେଖିଲେ ମନେହୁଏ ସତେ ଯେପରି ଆକାଶରେ ବ୍ୟାୟମ କରୁଛି ଏ ଭଦଭଦଳିଆ ! କିଏ ବୋଧହୁଏ ଶିଖାଇଛି ଏମିତି ଖେଳ ପ୍ରଦର୍ଶନ କରିବା ପାଇଁ ଶୂନ୍ୟରେ !

ଭଦଭଦଳିଆ ବଡ଼ ବଡ଼ ଗଛର କୋରଡ଼କୁ ଭଲପାଆନ୍ତି ଅଣ୍ଡା ଦେବା ପାଇଁ । ଅଣ୍ଡା ଦେବା ସମୟ ଆସିଲେ ସେମାନେ କାଠି, କୁଟା, ପକ୍ଷୀମାନଙ୍କର ପର ଓ ଅନ୍ୟାନ୍ୟ ନରମ ଜିନିଷ ଆଦି ଥଣ୍ଟରେ ସଂଗ୍ରହ କରି ଗଛ କୋରଡ଼ ମଧ୍ୟରେ ସୁନ୍ଦର ଭାବରେ ସଜାଇଥାନ୍ତି । ତା'ଉପରେ ଅଣ୍ଡା ଦେଉଥାଆନ୍ତି । ଅଣ୍ଡାର ସଂଖ୍ୟା ଚାରିଟି ବା ପାଞ୍ଚଟି । ଅଣ୍ଡାଗୁଡ଼ିକ ଦେଖିବାକୁ ଚକ୍ ଚକ୍ ଧଳାବର୍ଣ୍ଣର । ଅଣ୍ଡା ଫୁଟି ଛୁଆ ବାହାରିଲେ ବସାରେ କିଛି ଦିନ ରହିବା ପରେ ବଡ଼ ହୋଇଯାଆନ୍ତି ଓ ତା'ପରେ ପରେ ଡେଣା ଶକ୍ତ ହୋଇଯିବା ପରେ ମାଆ ପରି ଉଡ଼ି ବୁଲିବା ଆରମ୍ଭ କରନ୍ତି ।

ଭଦଭଦଳିଆର ରୂପ ଓ ଗୁଣ ସାଙ୍ଗକୁ ଉଡ଼ିବା କୌଶଳ ବାସ୍ତବିକ ବେଶ୍ ମର୍ମସ୍ପର୍ଶୀ । ବୋଧହୁଏ ଏପରି ବୈଶିଷ୍ଟ୍ୟକୁ ଉପଲବ୍ଧି କରି ଓଡ଼ିଶାବାସୀ ଏ ପକ୍ଷୀକୁ ଏକ ଶୁଭ ପକ୍ଷୀ (Auspicious Bird) ଭାବରେ ବିବେଚନା କରନ୍ତି । ବିଶେଷକରି ଦେଖାଯାଇଛି ଯେ ଦୁର୍ଗାପୂଜା ବା ଦଶହରା ସମୟରେ ଅନେକ ଚଢ଼େଇଆ ପୁରପଲ୍ଲୀର କେତେକ ସ୍ଥାନରେ ଘରକୁ ଘର ବୁଲି ଏ ପକ୍ଷୀକୁ ଦେଖାଇ ଦୁଇ ପଇସା ରୋଜଗାର କରିଥାଆନ୍ତି । ଲୋକମାନଙ୍କର ବିଶ୍ୱାସ ଯେ ଏ ପକ୍ଷୀକୁ ଦେବୀପୂଜା ସମୟରେ ଦେଖିଲେ ଶୁଭ ଓ ମଙ୍ଗଳମୟ ହୋଇଥାଏ । ପୂଜା ପରଠାରୁ ଦୁର୍ଘଟଣା, ଅମଙ୍ଗଳ ପରିସ୍ଥିତି ତଥା ଅସ୍ୱାଭାବିକ ଘଟଣା ପରିବାର ମଧ୍ୟରେ ଘଟିବ ନାହିଁ ବୋଲି ଧାରଣା ରହିଥାଏ । ଭଦଭଦଳିଆ ପକ୍ଷୀଟିର ଗୁଣଗାରିମା, ସୌନ୍ଦର୍ଯ୍ୟ ତଥା ଓଡ଼ିଶାବାସୀଙ୍କର ଏ ପକ୍ଷୀ ପ୍ରତି ଅନାବିଳ ପ୍ରେମ ଓ ଶୁଭ ବିଶ୍ୱାସ ଆଦି ଯୋଗୁଁ ହିଁ ଏହାକୁ ରାଜ୍ୟର ଏକ ଗର୍ବ ହିସାବରେ ଗଣ୍ୟ କରାଯାଇଛି । ନଜାଣିଥିବା ବ୍ୟକ୍ତିବିଶେଷ ଓ ପିଲାମାନେ ଏହାକୁ ରାଜ୍ୟପକ୍ଷୀ ବୋଲି ଜାଣି ରଖିଲେ ଆହୁରି ଭଲ । ଏହାକୁ ଜାଣିରଖି ଚିହ୍ନିବା ସହ ଶୂନ୍ୟରେ ସର୍କସ କରାମତି ପର୍ଯ୍ୟବେକ୍ଷଣ କରିବା ବଡ଼ ଆମୋଦଦାୟକ ।





**ଭଦଭଦଳିଆ ଓ ସଂରକ୍ଷଣ ପଦକ୍ଷେପ**

ମନୁଷ୍ୟର ଅମାନୁଷିକ ଅତ୍ୟାଚାର, ଶିକାର ଓ ଲୋଭ ହିଁ ଆମର ପରିବେଶ ମଧ୍ୟସ୍ଥ ପ୍ରାଣୀମାନଙ୍କୁ ନିଶ୍ଚିହ୍ନ ହେବାପଇଁ ଠେଲି ଦେଉଛି । ଫଳରେ, ନିର୍ଭୟରେ ଓ ନିରାପଦରେ ରହିବା ପାଇଁ ବା ବଞ୍ଚିବା ପାଇଁ ରାଜ୍ୟ ସରକାର ସୃଷ୍ଟି କରିଛନ୍ତି ଅଭୟାରଣ୍ୟ ଓ ଜୀବଉଦ୍ୟାନ ପରି ସୁରକ୍ଷିତ ସ୍ଥାନ । ସେଗୁଡ଼ିକ ମଧ୍ୟରେ ପ୍ରଧାନ କୃତିଗୁଡ଼ିକ ଭାବରେ ନିରବରେ ଠିଆ ହୋଇଛନ୍ତି ଶିମିଳିପାଳ ଜୈବମଣ୍ଡଳ (୨୭୫୦ ବର୍ଗ କି.ମି.), ଭିତରକନିକା ବନ୍ୟପ୍ରାଣୀ ଅଭୟାରଣ୍ୟ (Bhitarkanika Wildlife Sanctuary) (୬୭୨ ବର୍ଗ କି.ମି.) ଓ ଭିତରକନିକା ଜାତୀୟ ଉଦ୍ୟାନ (Bhitarkanika National Park) (୧୪୫ ବର୍ଗ କି.ମି.), ୧୯୮୭ ମସିହାରେ ଆରମ୍ଭ ହୋଇଥିବା ଚିଲିକାସ୍ଥିତ ନଳବଣ ବନ୍ୟପ୍ରାଣୀ ଅଭୟାରାଣ୍ୟ (Chilika Nalabana Wildlife Sanctuary) (୧୫.୫୮ ବର୍ଗ କି.ମି.), ୧୯୮୨ ମସିହାରେ ସ୍ଥାପିତ ଚନ୍ଦକା-ଡମପଡ଼ା ଅଭୟାରାଣ୍ୟ (Chandaka-Dampara Sanctuary) (୧୭୫.୭୯ ବର୍ଗ କି.ମି.) ଏବଂ ୧୯୬୦ ମସିହାରେ ସ୍ଥାପିତ ହୋଇଥିବା ନନ୍ଦନକାନନ ପ୍ରାଣୀ ଉଦ୍ୟାନ (Nandankanan Zoological Park) (୧୪.୧୬୮୯ ବର୍ଗ କି.ମି.) । ତେବେ ଭଦଭଦଳିଆ ପାଇଁ ନନ୍ଦନକାନନ ପରି ପାର୍କ, ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର, ଭୁବନେଶ୍ୱର (Regional Science Centre, Bhubaneswar) ଓ ଢେଙ୍କାନାଳ ପରି ବିଜ୍ଞାନ କେନ୍ଦ୍ରଗୁଡ଼ିକରେ ପର୍ଯ୍ୟଟକମାନଙ୍କ ନିମନ୍ତେ ରଖାଗଲେ ସେମାନେ ଚିହ୍ନି ପାରିବା ସହ ମନେରଖିବାର ସୁଯୋଗ ପାଆନ୍ତେ ବୋଲି ଆଶା । ଜନସାଧାରଣଙ୍କୁ ଅବଗତ ଓ ସଚେତନ କରାଯିବାର ଏହା ହେଉଛି ଏକ ପ୍ରକୃଷ୍ଟ ମାଧ୍ୟମ । ଆଶା କରାଯାଏ ଯେ ଓଡ଼ିଶାର ରାଜ୍ୟପକ୍ଷୀ ଭାବରେ ଭଦଭଦଳିଆକୁ ବିବେଚନା କରାଯିବା ସତରେ ଯଥାର୍ଥ୍ୟ । ଆମେ ସମସ୍ତେ ଏହାକୁ ମନେରଖି ଓ ଚିହ୍ନି ତା'ର ସଂରକ୍ଷଣ ଦିଗରେ ଚେଷ୍ଟିତ ଓ ପଦକ୍ଷେପ ନେଲେ ଭଦଭଦଳିଆ ଭଲରେ ବଂଚି ରହିବା ସହ ରାଜ୍ୟର ଗର୍ବ ଓ ଗୌରବର ଶୋଭା ମଣ୍ଡନ କରିବା ସମ୍ଭବ ହୋଇପାରିବ ।

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାର
ଭୁବନେଶ୍ୱର - ୭୫୧୦୦୪

# ଭୁବନେଶ୍ୱରରେ ୱିପ୍ରୋ ସଫ୍ଟୱେର ସେଣ୍ଟର ସ୍ଥାପନ

ଭୁବନେଶ୍ୱରସ୍ଥିତ ଇନ୍‌ଫୋସିଟି ପରିସରରେ ଏକ ବୃହତ୍ ସଫ୍‌ଟୱେର ଡେଭଲେପମେଣ୍ଟ ଏବଂ ବିପିଓ ସର୍ଭିସ ସେଣ୍ଟର ପ୍ରତିଷ୍ଠା ଲାଗି ରାଜ୍ୟ ସରକାର ଏବଂ ୱିପ୍ରୋ କଂପାନୀ ମଧ୍ୟରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଅଛି । ୱିପ୍ରୋର ମୁଖ୍ୟ ସୂଚନା ଅଧିକାରୀ ତାମଲ ଦାସଗୁପ୍ତା ଏବଂ ରାଜ୍ୟ ସରକାରଙ୍କ ସୂଚନା ପ୍ରଯୁକ୍ତି ସଚିବ ଏ.କେ. ତ୍ରିପାଠୀଙ୍କ ମଧ୍ୟରେ ରାଜ୍ୟ ସଚିବାଳୟଠାରେ ଉକ୍ତ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଅଛି । ଏହି ସ୍ୱାକ୍ଷର ସମୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ସୂଚନା ପ୍ରଯୁକ୍ତି ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଏବଂ ମୁଖ୍ୟ ଶାସନ ସଚିବ ଡଃ ସୁବାସ ପାଣି ଉପସ୍ଥିତ ଥିଲେ । ୩୦ ଏକର ପରିମିତ ଜମିରେ ଏହି ବୃହତ୍ ସେଣ୍ଟର ପ୍ରତିଷ୍ଠା କରାଯିବ ଏବଂ ଆସନ୍ତା ବର୍ଷଠାରୁ କାର୍ଯ୍ୟ ଆରମ୍ଭ କରାଯାଇ ୨ ବର୍ଷ ମଧ୍ୟରେ ଏହା ଶେଷ କରାଯିବ । ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆଇ.ଟି. ଶିଳ୍ପରେ ପୁଞ୍ଜି ବିନିଯୋଗ କ୍ଷେତ୍ରରେ ଭୁବନେଶ୍ୱର ଏକ ପ୍ରମୁଖ କେନ୍ଦ୍ର ହୋଇପଡ଼ିଛି । ଇନ୍‌ଫୋସିସ୍ ଓ ସତ୍ୟମ ପରେ ଟାଟା କନସଲଟାନ୍ସି ସର୍ଭିସ ଏବଂ ୱିପ୍ରୋ ଏଠାକୁ ଆସିବାକୁ ସମ୍ମତି ପ୍ରଦାନ କରିଛନ୍ତି । ଉକ୍ତ ଚାରୋଟି କଂପାନୀ କାର୍ଯ୍ୟ ଆରମ୍ଭ କରିବା ପରେ ରାଜ୍ୟର ଆଇ.ଟି. ରପ୍ତାନୀ ଆସନ୍ତା ୩ ବର୍ଷ ମଧ୍ୟରେ ୧୦୦୦ କୋଟି ଟଙ୍କାରେ ପହଞ୍ଚିବ । ଏହି ଅବସରରେ ଶ୍ରୀ ଦାସଗୁପ୍ତା କହିଥିଲେ ଯେ ଆଇ.ଟି. କ୍ଷେତ୍ରରେ ରାଜ୍ୟ ସରକାରଙ୍କ ମନୋଭାବ ଉତ୍ସାହଜନକ । ରାଜ୍ୟରେ ଆଇ.ଟି. ଅଭିବୃଦ୍ଧି ପାଇଁ ପ୍ରଚୁର ସମ୍ଭାବନା ରହିଛି । ୱିପ୍ରୋ ଭୁବନେଶ୍ୱରରେ ଏକ ଅତ୍ୟାଧୁନିକ ଡେଭଲେପ୍‌ମେଣ୍ଟ ସେଣ୍ଟର ପ୍ରତିଷ୍ଠା କରିବ, ଯେଉଁଥିରେ ୧୦୦୦ରୁ ୧୫୦୦ ପର୍ଯ୍ୟନ୍ତ ଇଂଜିନିୟର ନିଯୁକ୍ତି ପାଇପାରିବେ ।

ସଂକଳନ : ଗବେଷଣା ଓ ତଥ୍ୟ ସୂଚନା ଶାଖା

# ନୂଆପଡ଼ା ଜିଲ୍ଲାରେ ସାମାଜିକ ସୁରକ୍ଷା ଯୋଜନାର ସଫଳ ପ୍ରୟାସ

ନୂଆପଡ଼ା ଜିଲ୍ଲା ୫ ଗୋଟି ବ୍ଲକ୍ ଓ ୨ ଗୋଟି ବିଜ୍ଞାପିତ ଅଞ୍ଚଳ ପରିଷଦ ଏବଂ ୧୦୯ ଗୋଟି ଗ୍ରାମପଞ୍ଚାୟତକୁ ନେଇ ଗଠିତ ମୋଟ ୬୫୫ ଗୋଟି ଗ୍ରାମାଞ୍ଚଳ ଜିଲ୍ଲାରେ ରହିଛି । ୨୦୦୧ ମସିହା ଜନଗଣନା ଅନୁଯାୟୀ ଜିଲ୍ଲାର ମୋଟ ଲୋକ ସଂଖ୍ୟା, ୫,୩୦,୫୨୪ ଜଣ । ଏଥିମଧ୍ୟରୁ ୨,୫୦,୪୮୦ ଜଣଙ୍କୁ ଜିଲ୍ଲାରେ କାର୍ଯ୍ୟକାରୀ ସରକାରଙ୍କ ସାମାଜିକ ସୁରକ୍ଷା ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇ ସେମାନଙ୍କୁ ଆବଶ୍ୟକୀୟ ସହାୟତା ପ୍ରଦାନ କରାଯାଇଛି । ଏହି ଯୋଜନାରେ ବିଶେଷକରି ଅନାହାର ମୃତ୍ୟୁଜନିତ ପରିସ୍ଥିତି ମୁକାବିଲା ନିମନ୍ତେ ଜିଲ୍ଲାପ୍ରଶାସନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ସରପଞ୍ଚମାନଙ୍କୁ ପ୍ରଚଳିତ ବ୍ୟବସ୍ଥା ସଂପର୍କରେ ଦାୟିତ୍ୱ ଦିଆଯାଇଅଛି । ସଂପୃକ୍ତ ସରପଞ୍ଚମାନେ ସେମାନଙ୍କ ସ୍ଥାନୀୟ ୱାର୍ଡମେମ୍ବରଙ୍କ ଜରିଆରେ ପ୍ରକୃତ ଅଭାବଗ୍ରସ୍ତ ନିଃସ୍ୱ ଅସହାୟ ବ୍ୟକ୍ତିମାନଙ୍କର ତାଲିକା ସଂଗ୍ରହ କରି ଯଥାର୍ଥରେ ଯେଉଁ ବ୍ୟକ୍ତି ଅନାହାରରେ ସମ୍ମୁଖୀନ ହେଉଛନ୍ତି, ସେମାନଙ୍କୁ ୧୦ଦିନ ପର୍ଯ୍ୟନ୍ତ ମାଗଣାରେ ବଡ଼ ଲୋକଙ୍କୁ ୫୦୦ ଗ୍ରାମ ଓ ଛୋଟମାନଙ୍କୁ ୨୫୦ ଗ୍ରାମ ହିସାବରେ ଦୈନିକ ଚାଉଳ ମଞ୍ଜୁର କରିବା ପାଇଁ ଜିଲ୍ଲାପ୍ରଶାସନ ପକ୍ଷରୁ ବିହିତ ପଦକ୍ଷେପ ଗ୍ରହଣ କରାଯାଇଅଛି । ଏହି ପରିସ୍ଥିତିରେ ଅଧିକ ସମୟ ପାଇଁ ସହାୟତା ଯୋଗାଇ ଦେବାର ଆବଶ୍ୟକ ହେଲେ ସଂପୃକ୍ତ ସରପଞ୍ଚ ସଂପୃକ୍ତ ଉପଜିଲ୍ଲାପାଳଙ୍କ ଦୃଷ୍ଟିଗୋଚର କରି କାର୍ଯ୍ୟ ତ୍ୱରାନ୍ୱିତ କରିବାକୁ ଜିଲ୍ଲାପ୍ରଶାସନ ପକ୍ଷରୁ ପରାମର୍ଶ ଦିଆଯାଇଅଛି । ସେହିପରି ଶିଶୁ ବିକାଶ ପ୍ରକଳ୍ପ ଜରିଆରେ ପରିଚାଳିତ ପ୍ରତ୍ୟେକ ଅଙ୍ଗନୱାଡ଼ି କେନ୍ଦ୍ରରେ ମଧ୍ୟ ରନ୍ଧା ଖାଦ୍ୟ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇ ଅନାହାର ପରିସ୍ଥିତିର ମୁକାବିଲା ନିମନ୍ତେ ବିଶେଷଧ୍ୟାନ ଦିଆଯାଇଅଛି । ବିଶେଷକରି ବଣ ଜଙ୍ଗଲ ଘେରା ଦୁର୍ଗମ ଅଞ୍ଚଳରେ ବସବାସ କରିଥିବା ଆଦିବାସୀ ହରିଜନ ତଥା ଅନ୍ୟାନ୍ୟ ଗରିବ ବର୍ଗର ଲୋକମାନଙ୍କୁ ଏଥିରେ ସାମିଲ କରି ସହାୟତା ଯୋଗାଇ ଦିଆଯାଇଅଛି । ଅଦ୍ୟାବଧି ଜିଲ୍ଲାରେ ୬୫୦୦ ଜଣଙ୍କୁ ଜି.ଆର୍. କାର୍ଡ ବା ଅନୁତୋଷିତ ସାହାଯ୍ୟପତ୍ର ପ୍ରଦାନ କରାଯାଇଅଛି । କେନ୍ଦ୍ର ତଥା



ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ ସାମାଜିକ ନିରାପତ୍ତା ଯୋଜନା ନୂଆପଡ଼ା ଜିଲ୍ଲାରେ ସଫଳତାର ସହ କାର୍ଯ୍ୟକାରୀ କରାଯାଇଅଛି । ଏହି ଯୋଜନା ଅନ୍ତର୍ଗତ ବିଭିନ୍ନ ସହାୟତା ମଧ୍ୟରେ ଜାତୀୟ ବାର୍ଦ୍ଧକ୍ୟଭତ୍ତା ୧୯,୭୫୦ ଜଣ ହିତାଧିକାରୀ, ରାଜ୍ୟ ବାର୍ଦ୍ଧକ୍ୟ ଭତ୍ତା ୧୫,୫୧୧ ଜଣ ହିତାଧିକାରୀ, ରାଜ୍ୟ ଅକ୍ଷମ ଭତ୍ତା ୨୧୩୯ ଜଣ, ଜରୁରୀକାଳୀନ ଖାଦ୍ୟ ଯୋଜନାରେ ୨୧,୦୦୦ ଜଣ ଅସହାୟ ବୃଦ୍ଧ ବୃଦ୍ଧା ଉପକୃତ ହେଉଛନ୍ତି । କେୟାର ଆଦ୍ୟ ବା ସ୍ୱତନ୍ତ୍ର ପୁଷ୍ଟିସାର ଖାଦ୍ୟ ଯୋଜନାରେ ଗର୍ଭବତୀ ମହିଳା ଓ ଶିଶୁମାନଙ୍କୁ ୫୮୫ ଗୋଟି ଅଙ୍ଗନୱାଡ଼ି କେନ୍ଦ୍ର ଏବଂ ୧୮୧ ଗୋଟି ଉପକେନ୍ଦ୍ରରେ ମୋଟ ୫୭,୨୨୦ ଜଣ ହିତାଧିକାରୀଙ୍କୁ ସାମିଲି କରି ୫ ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁମାନଙ୍କୁ ଅଙ୍ଗନୱାଡ଼ି କେନ୍ଦ୍ରରେ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ପ୍ରଦାନ କରାଯାଇ ସେମାନଙ୍କର ଶାରୀରିକ ତଥା ସ୍ୱାସ୍ଥ୍ୟ ପ୍ରତି ବିଶେଷ ଯତ୍ନ ନିଆଯାଇଅଛି । ମଧ୍ୟାହ୍ନ ଭୋଜନ ଯୋଗାଣ ୭୪୧ ଗୋଟି ପ୍ରାଥମିକ ବିଦ୍ୟାଳୟରେ ମୋଟ ୯୭,୦୬୩ ଜଣ ଛାତ୍ରଛାତ୍ରୀ ଉପକୃତ ହେଉଛନ୍ତି । ବାଳିକା ସମୃଦ୍ଧି ଯୋଜନାରେ ୭୪୧ ଜଣ ଉପକୃତ ହେଉଥିବା ବେଳେ ମାତୃ ମଙ୍ଗଳ ସହାୟତା ଯୋଜନାରେ ୫୫୦୦ ଜଣ ମହିଳା ଉପକୃତ ହୋଇଛନ୍ତି । ସେହିପରି ଜିଲ୍ଲାରେ ବି.ପି.ଏଲ୍. କାର୍ଡ଼ଧାରୀ ହିତାଧିକାରୀ ୯୩,୧୨୬ ପରିବାର ଅନ୍ତର୍ଭୁକ୍ତ





କରାଯାଇଅଛି । ଅନ୍ନପୂର୍ଣ୍ଣା ଯୋଜନାରେ ୯୬୧ ଜଣ ହିତାଧିକାରୀ ଅନ୍ତର୍ଭୁକ୍ତ ହୋଇ କାର୍ଡ଼ପ୍ରତି ୧୦ କି.ଗ୍ରା ଚାଉଳ ପ୍ରତିମାସରେ ହିତାଧିକାରୀମାନଙ୍କୁ ମାଗଣାରେ ଯୋଗାଇ ଦିଆଯାଉଥିବାବେଳେ ଅନ୍ତ୍ୟୋଦୟ ଅନ୍ନ ଯୋଜନାରେ ୮,୯୨୨ ଜଣ ହିତାଧିକାରୀଙ୍କୁ କି.ଗ୍ରା. ପ୍ରତି ୩ ଟଙ୍କା ଦରରେ ପ୍ରତି ମାସରେ ୩୫ କି.ଗ୍ରା ଚାଉଳ ଯୋଗାଇ ଦିଆଯାଉଅଛି ।

ମିଶନ ଶକ୍ତି ଜରିଆରେ ୩୨୧୫ ଗୋଟି ମହିଳା ସ୍ୱୟଂ ସହାୟକ ଦଳଙ୍କୁ ବିଭିନ୍ନ ସ୍ୱରୋଜଗାରୀମୂଳକ ବୃତ୍ତିରେ ସାମିଲ କରାଯାଇ ୧୦୨୭ ଦଳଙ୍କୁ ବ୍ୟାଙ୍କ ଜରିଆରେ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଅଛି ଏବଂ ଅବଶିଷ୍ଟ ସମସ୍ତ ଦଳଙ୍କୁ ପର୍ଯ୍ୟାୟକ୍ରମେ ଆବଶ୍ୟକୀୟ ସହାୟତା ଯୋଗାଇ ଦେବା ପାଇଁ ପ୍ରୟାସ ଜାରି ରହିଅଛି । ସେମାନଙ୍କୁ ଏସ୍.ଜି.ଏସ୍.ୱାଇ. ଯୋଜନାରେ ଅନ୍ତର୍ଭୁକ୍ତ କରିବା ପାଇଁ ସମୟକୁ ସମୟ ଦକ୍ଷତା ବୃଦ୍ଧି ନିମନ୍ତେ ବିଭିନ୍ନ କର୍ମଶାଳା କରାଯାଉଅଛି । ଗ୍ରାମାଞ୍ଚଳରେ ଗରିବ ଶ୍ରେଣୀର ଗର୍ଭବତୀ ମହିଳାମାନଙ୍କର ପ୍ରସବ କାର୍ଯ୍ୟ ଠିକ୍ ଭାବେ କରିବାକୁ ସଂପୃକ୍ତ ଅଞ୍ଚଳରେ ପାରମ୍ପରିକ ଧାଇମାନଙ୍କୁ ଜିଲ୍ଲା ସ୍ୱାସ୍ଥ୍ୟ ସମିତି ପକ୍ଷରୁ ପ୍ରଶିକ୍ଷଣ ପ୍ରଦାନ କରାଯାଉଅଛି । ୧୦ କି.ମି. ଦୂରତା ପାଇଁ ୧୫୦ ଟଙ୍କା ଏବଂ ତଦୁର୍ଦ୍ଧ୍ୱ ଦୂରତା ପାଇଁ ୨୦୦ ଟଙ୍କା ଗର୍ଭବତୀ ମହିଳାମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ କରାଯାଉଅଛି । ଏହିପରି ଭାବରେ ନୂଆପଡ଼ା ଜିଲ୍ଲାରେ ମୋଟ ଲୋକ ସଂଖ୍ୟାର ଅର୍ଦ୍ଧଭାଗ ଲୋକମାନଙ୍କୁ ସାମାଜିକ ସୁରକ୍ଷା ଯୋଜନାରେ ଅର୍ନ୍ତଭୁକ୍ତ କରାଯାଇ ଜିଲ୍ଲା ପ୍ରଶାସନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସଂପୃକ୍ତ ବିଭାଗୀୟ ଅଧିକାରୀମାନଙ୍କ ଦ୍ୱାରା ବିଶେଷ ଧ୍ୟାନ ଦିଆଯାଇ ଆସୁଅଛି । ଅନେକ ସମୟରେ ବିଭିନ୍ନ ସମ୍ବାଦପତ୍ରରେ ଜିଲ୍ଲାର ଅନାହାରଜନିତ ମୃତ୍ୟୁ ପ୍ରକାଶିତ ଖବରର କୌଣସି ଯଥାର୍ଥତା ନାହିଁ । ଏଥିପ୍ରତି ଜିଲ୍ଲାପ୍ରଶାସନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସଂପୃକ୍ତ ବିଭାଗୀୟ ଅଧିକାରୀମାନଙ୍କ ଦ୍ୱାରା ତୀକ୍ଷ୍ଣ ଦୃଷ୍ଟି ଦିଆଯାଇ ଆସୁଅଛି ।

ପ୍ରସ୍ତୁତି : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ନୂଆପଡ଼ା

# ବୟନଶିଳ୍ପର ପୁନରୁଦ୍ଧାର ପାଇଁ ପଦକ୍ଷେପ

ରାଜ୍ୟରେ ବୟନଶିଳ୍ପର ପୁନରୁଦ୍ଧାର ପାଇଁ ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରୁଛନ୍ତି ବୋଲି ବୟନଶିଳ୍ପ ମନ୍ତ୍ରୀ ଶ୍ରୀ ଗୋଲକବିହାରୀ ନାୟକ ସୂଚନା ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ବିଭାଗୀୟ ସମୀକ୍ଷା ବୈଠକରେ ରାଜ୍ୟରେ ବୁଣାକାରମାନଙ୍କୁ ଉଚିତ୍ ପ୍ରାପ୍ୟ ଓ ନ୍ୟାୟ ପ୍ରଦାନ କରାଯାଇ ସେମାନଙ୍କ କୌଳିକ ବୃତ୍ତିକୁ ପ୍ରୋତ୍ସାହନ ଦିଆଯିବା ପାଇଁ ଖୁବ୍‌ଶୀଘ୍ର ବୟନ ନୀତି ପ୍ରଣୟନ କରାଯିବ ବୋଲି ଜଣାପଡ଼ିଛି । ଏଥିପାଇଁ ଚିଠା ପ୍ରସ୍ତୁତ କରାଯାଇଥିବା ବେଳେ ବ୍ୟାପକ ବିଚାର ବିମର୍ଶ କରାଯାଇ ନିଷ୍ପତ୍ତି ନିଆଯିବ । ପ୍ରସ୍ତାବିତ ନୂତନ ନୀତିରେ ବିଭିନ୍ନ କ୍ଷତିଗ୍ରସ୍ତ ଓ ଅଚଳ ପ୍ରାଥମିକ ବୁଣାକାର ସମବାୟ ସମିତିଗୁଡ଼ିକୁ ପୁନରୁଦ୍ଧାର କରିବା ପାଇଁ ଏଥିରେ ଚାଲିଥିବା ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ଇତ୍ୟାଦିକୁ ବାଦ୍ କରାଯିବା ପାଇଁ ବ୍ୟବସ୍ଥା ରହିଛି । ବୁଣାଜାତ ସାମଗ୍ରୀ ବିକ୍ରି ନହେଲେ ବା ଅର୍ଥର ହିସାବ ନମିଳିଲେ ଏଥିରେ ସଂଶ୍ଲିଷ୍ଟ କର୍ମଚାରୀଙ୍କୁ ଦାୟୀ କରାଯିବ ।

ରାଜ୍ୟରେ ବର୍ତ୍ତମାନ ଥିବା ୫୫୦ଟି ପ୍ରାଥମିକ ବୁଣାକାର ସମବାୟ ସମିତି ମଧ୍ୟରୁ ୩୦୦ ଗୋଟି ସମିତି ବନ୍ଦ ହୋଇଯାଇଥିବା ବେଳେ ଅବଶିଷ୍ଟ ୨୫୦ଟି କେବଳ ବଂଚି ରହିଛି । ଏହି ୩୦୦ ଗୋଟି ସମିତିର ପୁନରୁଦ୍ଧାର ପାଇଁ ଦୁଇଟି ପ୍ୟାକେଜ୍ ପ୍ରସ୍ତୁତ କରାଯାଇଛି । ସେହିପରି 'ସମ୍ବଲପୁର ବସ୍ତ୍ରାଳୟ'ର ଟ୍ରେଡ୍‌ମାର୍କ କରାଯିବା ଓ ଏହାକୁ ପ୍ରାଥମିକ ସମିତିରୁ ଏକ ସର୍ବୋଚ୍ଚ ସଂସ୍ଥା କରାଯିବା ଲାଗି ସରକାର ନିଷ୍ପତ୍ତି ନେଇ ଯଥାଯଥ ନିର୍ଦ୍ଦେଶ ଦେଇଛନ୍ତି ।

ଏହାଛଡ଼ା ପୁରୁଣା ବ୍ୟବହାରଯୋଗୀ ସାମଗ୍ରୀଗୁଡ଼ିକୁ ମଧ୍ୟ ପ୍ରଦର୍ଶନୀ ମାଧ୍ୟମରେ ବିକ୍ରୀକରି ଦିଆଯିବା ପାଇଁ ଏହି ବୈଠକରେ ନିଷ୍ପତ୍ତି ନିଆଯାଇଛି । ଏହି ବୈଠକରେ ବିଭାଗୀୟ ଶାସନ ସଚିବ, ବୟନଶିଳ୍ପ ନିର୍ଦ୍ଦେଶକ ତଥା ଅନ୍ୟାନ୍ୟ ପଦାଧିକାରୀମାନେ ଉପସ୍ଥିତ ରହି ଅଂଶଗ୍ରହଣ କରିଥିଲେ ।





# ଜିଲ୍ଲା ବାହାରକୁ ଦାଦନ ଶ୍ରମିକମାନଙ୍କ ପଳାୟନ ସଂପର୍କରେ ଜିଲ୍ଲା ପ୍ରଶାସନର ପଦକ୍ଷେପ

ନୂଆପଡ଼ା ଜିଲ୍ଲାରୁ ଶ୍ରମିକ ଚାଲାଣ ସାଧାରଣତଃ ପ୍ରତିବର୍ଷ ଫସଲ ଅମଳ ପରେ ପରେ ଆରମ୍ଭ ହୋଇଥାଏ । ବିଶେଷକରି ଯେଉଁ ଶ୍ରମିକମାନେ ତାଙ୍କ ପାରମ୍ପରିକ ବୃତ୍ତି ଯଥା- ଇଟା ଗଢ଼ା, କାଠ ଓ ଗୃହ ନିର୍ମାଣ ଆଦି ବୃତ୍ତିରେ ଜଡ଼ିତ ରହି କାର୍ଯ୍ୟ କରି ଆସୁଛନ୍ତି, ସେମାନେ ମୁଖ୍ୟତଃ ଅଧିକ ଦିନ ପର୍ଯ୍ୟନ୍ତ ବାହାରେ ରହି ଅର୍ଥାତ୍ ଆଗାମୀ ବର୍ଷାଋତୁ ଆସିବା ପର୍ଯ୍ୟନ୍ତ ଅଧିକ ରୋଜଗାର କରିବା ଆଶାରେ ଜିଲ୍ଲା ବାହାରକୁ ଯାଇଥାନ୍ତି । ଏହା ତାଙ୍କର ବାହାରକୁ ଯିବାର ସ୍ୱାଭାବିକ ଘଟଣା । ତେବେ ଏଥିପ୍ରତି ଜିଲ୍ଲା ପ୍ରଶାସନ ପକ୍ଷରୁ ବିହିତ ପଦକ୍ଷେପ ଗ୍ରହଣ କରାଯାଇଅଛି । ଜିଲ୍ଲାର ମୋଟ ଲୋକ ସଂଖ୍ୟା ୫,୩୦,୫୨୪ ମଧ୍ୟରୁ ୨,୫୦,୪୮୦ ଜଣ ଲୋକଙ୍କୁ ସରକାରଙ୍କ ସାମାଜିକ ସୁରକ୍ଷା ଯୋଜନାରେ ବିଶେଷକରି ଅସହାୟ ବୃଦ୍ଧ, ବୃଦ୍ଧା, ଅକ୍ଷମ, ଗର୍ଭବତୀ ମହିଳା ଓ ଶିଶୁ, ଛାତ୍ରଛାତ୍ରୀ ଓ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସମସ୍ତ ପରିବାର ଏବଂ ଆଦିବାସୀ ହରିଜନ ଲୋକମାନଙ୍କୁ ସାମିଲ କରାଯାଇ ସେମାନଙ୍କୁ ଆବଶ୍ୟକୀୟ ସହାୟତା ଯୋଗାଇ ଦିଆଯାଇଅଛି ।



ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଲୋକମାନଙ୍କର ଉନ୍ନତି ନିମନ୍ତେ ସଂପୂର୍ଣ୍ଣ ଗ୍ରାମୀଣ ସ୍ୱରୋଜଗାର ଯୋଜନା ମାଧ୍ୟମରେ ସେମାନଙ୍କୁ ବିଭିନ୍ନ ବୃତ୍ତି ବା ଧନ୍ଦାମୂଳକ ପ୍ରକଳ୍ପରେ ନିୟୋଜିତ କରି ଆବଶ୍ୟକୀୟ ସହାୟତା ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ତତ୍ତ୍ୱାବଧାନରେ ସଂପୃକ୍ତ ବ୍ଲକ୍ ଏବଂ ବ୍ୟାଙ୍କ୍ ଜରିଆରେ ଯୋଗାଇ ଦିଆଯାଉଅଛି । ସର୍ବୋପରି ଗ୍ରାମାଞ୍ଚଳର ବିଭିନ୍ନ ଭିତ୍ତିଭୂମିର ବିକାଶ ଯଥା- ରାସ୍ତାଘାଟ, ପୋଲ ନିର୍ମାଣ, ବନ୍ଧ ଓ ପୋଖରୀ ଖନନ, ଜଳଛାୟା ପ୍ରକଳ୍ପ ନିର୍ମାଣ ଏବଂ ଇନ୍ଦିରା ଆବାସ ଗୃହ ଓ ବିଦ୍ୟାଳୟ ଗୃହ ନିର୍ମାଣ ଆଦିରେ ଶ୍ରମଭିତ୍ତିକ ଯୋଜନା କାର୍ଯ୍ୟକ୍ରମକୁ ଜିଲ୍ଲାରେ ବିଶେଷ ଗୁରୁତ୍ୱ ଦେଇ କାର୍ଯ୍ୟକାରୀ କରାଯାଉଅଛି । ଏହି ସବୁ କାର୍ଯ୍ୟକ୍ରମ ତ୍ୱରାନ୍ୱିତ ନିମନ୍ତେ ସଂପୃକ୍ତ ଗ୍ରାମ ପଞ୍ଚାୟତ ସ୍ତରରେ ଲୋକମାନଙ୍କୁ ଗୁରୁତ୍ୱ ଆରୋପ କରାଯାଇଅଛି । ଅଧିକା ରୋଜଗାର ଆଶାରଖି ଯେଉଁ ଶ୍ରମିକମାନେ ଜିଲ୍ଲା ବାହାରକୁ ଯାଉଛନ୍ତି, ସେମାନେ ଯିବାପୂର୍ବରୁ ନିଜ ଗ୍ରାମପଞ୍ଚାୟତରେ ନିଜର ସଂପୂର୍ଣ୍ଣ ଠିକଣା ସହିତ କେଉଁ ଠିକାଦାର କିମ୍ବା ଏଜେଣ୍ଟ ଏବଂ ସର୍ଦ୍ଦାର ଯାହାକି ସରକାରୀ ଲାଇସେନ୍ସଧାରୀ ହୋଇଥିବେ, ଏହି ତଥ୍ୟ ଏକ ରେଜିଷ୍ଟରରେ ଲିପିବଦ୍ଧକରି ସ୍ୱଇଚ୍ଛାରେ ଯାଉଅଛୁ ବୋଲି ମନ୍ତବ୍ୟ ପ୍ରଦାନ କରିବାକୁ ଜିଲ୍ଲା ପ୍ରଶାସନ ପକ୍ଷରୁ ସଂପୃକ୍ତ ସମସ୍ତ ଗ୍ରାମପଞ୍ଚାୟତର ସରପଞ୍ଚମାନଙ୍କୁ ପରାମର୍ଶ ଦିଆଯାଇଅଛି । ଯାହାଦ୍ୱାରା ଭବିଷ୍ୟତରେ ସଂପୃକ୍ତ ଶ୍ରମିକ କୌଣସି ସମସ୍ୟାଜନିତ ସଠିକ୍ ତଥ୍ୟ ପ୍ରଶାସନର ହସ୍ତଗତ ହେବା ସହିତ ବିହିତ ପଦକ୍ଷେପ ନିଆଯାଇପାରିବ ।

ଏଥିସହିତ ଜିଲ୍ଲା ପ୍ରାଥମିକ ଶିକ୍ଷା ପ୍ରକଳ୍ପ ପକ୍ଷରୁ ଜିଲ୍ଲାରେ ୨୯ ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟ ଖୋଲାଯାଇ ସେଠାରେ ଦାଦନ ଖଟିବାକୁ ଯାଉଥିବା ଶ୍ରମିକମାନଙ୍କର ପିଲାମାନଙ୍କୁ ଯଥାକାଳୀନ ଶିକ୍ଷାର ଉନ୍ନତି ପାଇଁ ୬ରୁ ୧୪ ବର୍ଷ ବୟସ ପିଲାମାନଙ୍କୁ ମାଗଣାରେ ରହିବା ଓ ଖାଇବାର ସୁବନ୍ଦୋବସ୍ତ କରାଯାଇଅଛି । ଏହି ଯୋଜନାରେ ମୋଟ ୨୬୨୩ ଜଣ ଦାଦନ ଶ୍ରମିକମାନଙ୍କର ପିଲାମାନଙ୍କୁ ଚିହ୍ନଟ କରାଯାଇଅଛି । ସେହିପରି ଜିଲ୍ଲାରେ କାର୍ଯ୍ୟକାରୀ କରାଯାଉଥିବା ଜାତୀୟ ଶିଶୁ ଶ୍ରମିକ ପ୍ରକଳ୍ପ ଜରିଆରେ ୨୦ ଗୋଟି ସ୍ୱତନ୍ତ୍ର ବିଦ୍ୟାଳୟରେ ମୋଟ ୧୦୦୦ ଜଣ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷାର ଉନ୍ନତି ନିମନ୍ତେ ପ୍ରଶାସନର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସ୍ୱେଚ୍ଛାସେବୀ ସଂଗଠନ ଦ୍ୱାରା ଏହା ପରିଚାଳିତ କରାଯାଉଅଛି । ଦାଦନ ଶ୍ରମିକମାନଙ୍କୁ ଏହି ଯୋଜନାର ପୁନଃ ଥଇଥାନ ବ୍ୟବସ୍ଥାରେ ୫୮୪ ପରିବାରଙ୍କୁ ଆବଶ୍ୟକୀୟ ସହାୟତା ଯୋଗାଇ ଦିଆଯାଉଅଛି । ଉକ୍ତ ପଦକ୍ଷେପ ଦ୍ୱାରା ନୂଆପଡ଼ା ଜିଲ୍ଲାରେ ଶ୍ରମିକ ଚାଲାଣ ଯଥେଷ୍ଟ କମ୍ ହୋଇପାରିଛି । ଯାହାକି ଚଳିତ ବର୍ଷ ୧୮୫୬ ଜଣ ଶ୍ରମିକ ବାହାର ରାଜ୍ୟକୁ ଯାଉଥିବା ସଂପୃକ୍ତ ସହକାରୀ ଜିଲ୍ଲା ଶ୍ରମ ଅଧିକାରୀଙ୍କ ପଞ୍ଜିକରଣ ତାଲିକାରୁ ଜଣାପଡ଼ିଛି ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ନୂଆପଡ଼ା




# ସମ୍ବାଦ ପରିକ୍ରମା



## ଚାଷୀମାନଙ୍କୁ ଉତ୍ସାହିତ କରିବା ପାଇଁ କେନ୍ଦ୍ର ସରକାର ରାଜ୍ୟ ସରକାରଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦେବା ପାଇଁ ପ୍ରସ୍ତୁତ - ଶ୍ରୀ ପାୱାର

କେନ୍ଦ୍ର କୃଷି ଓ ଖାଦ୍ୟ ମନ୍ତ୍ରୀ ଶ୍ରୀ ଶରଦ ପାୱାର ତିନିଦିନିଆ ଓଡ଼ିଶା ଗସ୍ତରେ ଆସି ଗତ ଡିସେମ୍ବର ୨୮ ତାରିଖରେ କୋଣାର୍କସ୍ଥ ଇଶୋନେଶ୍ୱର ନଡ଼ିଆ ଫାର୍ମ ପରିଦର୍ଶନ କରିଥିଲେ । ଏହି ପରିଦର୍ଶନ ସମୟରେ ରାଜ୍ୟ କୃଷି ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ ଉପସ୍ଥିତ ରହି ରାଜ୍ୟରେ ନଡ଼ିଆ ଗଛରେ ଯାଦୁ ରୋଗ ବିଷୟରେ ଅବଗତ କରାଇଥିଲେ । ସେଠାରେ ଚାଷୀମାନଙ୍କ ଦ୍ୱାରା ଆୟୋଜିତ ଏକ ସଭାରେ ଉଦ୍‌ବୋଧନ ଦେଇ କେନ୍ଦ୍ର ମନ୍ତ୍ରୀ ଶ୍ରୀ ପାୱାର କହିଲେ ଯେ, ଓଡ଼ିଶାର ଚାଷୀମାନେ କେବଳ ଧାନଚାଷ କରି ଲାଭବାନ ହୋଇପାରିବେ ନାହିଁ । ଧାନଚାଷ କରିବା ସହ ଅର୍ଥକରୀ ଫସଲ ଭାବରେ ଫଳ, ଡାଲିଜାତୀୟ, ପନିପରିବା ଓ ତୈଳବୀଜ ଚାଷ କରିବା ଏକାନ୍ତ ଆବଶ୍ୟକ । ଏହି ପ୍ରକାର ଚାଷ ଫଳରେ ଓଡ଼ିଶାର ଗ୍ରାମାଞ୍ଚଳର ଚାଷୀମାନେ ବିଶେଷ ଭାବରେ ଲାଭବାନ ହୋଇପାରିବେ । ଗ୍ରାମାଞ୍ଚଳର ଚାଷୀମାନଙ୍କୁ ଉତ୍ସାହିତ କରିବା ପାଇଁ କେନ୍ଦ୍ର ସରକାରା ରାଜ୍ୟ ସରକାରଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଦେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ପାୱାର ପ୍ରକାଶ କରିଥିଲେ ।

ରାଜ୍ୟ କୃଷି ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ ସଭାରେ ସଭାପତିତ୍ୱ କରି କହିଲେ ଶ୍ରୀ ପାୱାର କୃଷକ ପରିବାରରୁ ଆସି ଚାଷୀମାନଙ୍କର ଉନ୍ନତି ପାଇଁ ସର୍ବଦା କାର୍ଯ୍ୟ କରିଆସିଛନ୍ତି । ଧାନଫସଲ ବ୍ୟତୀତ ଆମ ରାଜ୍ୟରେ ଅର୍ଥକରୀ ଫସଲ ଫଳ, ଡାଲିଜାତୀୟ, ତୈଳବୀଜ ଓ ପନିପରିବା ଚାଷ କରିବା ପାଇଁ କୃଷି ବିଭାଗ ପକ୍ଷରୁ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ଏହାଫଳରେ ଚାଷୀମାନେ ଉପକୃତ ହୋଇପାରିବେ । ଏହି ଅବସରରେ କୃଷି ମନ୍ତ୍ରୀ ଶ୍ରୀ ନାୟକ କେନ୍ଦ୍ର ମନ୍ତ୍ରୀ ଶ୍ରୀ ପାୱାରଙ୍କୁ ତାରକସିର ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା ମୂର୍ତ୍ତିର ଏକ ଉପଢୌକନ ପ୍ରଦାନ କରିଥିଲେ । ଏହି ଉତ୍ସବରେ ପାୱାରଙ୍କ ସହ ତାଙ୍କର ସହଧର୍ମିଣୀ ଉପସ୍ଥିତ ଥିଲେ । ଅନ୍ୟମାନଙ୍କ ମଧ୍ୟରେ ନାରିକେଳ ଉନ୍ନୟନ ବୋର୍ଡ଼ ଓ ଉଦ୍ୟାନ ବିଭାଗର ଉଚ୍ଚ କର୍ମକର୍ତ୍ତାମାନେ ଉପସ୍ଥିତ ରହି ସଭାରେ ଅଂଶଗ୍ରହଣ କରିଥିଲେ ।

## ବିଂଶସୂତ୍ରୀ କାର୍ଯ୍ୟକ୍ରମ ରୂପାୟନ କ୍ଷେତ୍ରରେ ଓଡ଼ିଶାର ଉଲ୍ଲେଖନୀୟ ସଫଳତା

ବିଭିନ୍ନ ରାଜ୍ୟରେ ୨୦ ଦଫା କାର୍ଯ୍ୟକ୍ରମର ସଫଳ ରୂପାୟନ ଓ ମାନ ନିର୍ଦ୍ଧାରଣ ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ପରିସଂଖ୍ୟାନ ଏବଂ କାର୍ଯ୍ୟକ୍ରମ ରୂପାୟନ ମନ୍ତ୍ରଣାଳୟ ନିୟମିତ ଭାବେ ପ୍ରୟାସ କରିଆସୁଛି । ଓଡ଼ିଶା ସରକାର ଏହି ବିଂଶସୂତ୍ରୀ କାର୍ଯ୍ୟକ୍ରମ ସଠିକ୍ ଭାବେ କାର୍ଯ୍ୟକାରୀ କରିବା ଦିଗରେ ଅନବରତ ଉଦ୍ୟମ ଜାରି ରଖି ୨୦୦୩-୦୪ ଆର୍ଥିକ ବର୍ଷରେ ସମଗ୍ର ଦେଶରେ ଏକାଦଶ ସ୍ଥାନରେ ଥିବାବେଳେ ୨୦୦୪ ସେପ୍ଟେମ୍ବର ମାସ ସୁଦ୍ଧା ଓଡ଼ିଶା ନବମ ସ୍ଥାନରେ ରହିଛି ।

ବଳକା ଜମିର ଆବଣ୍ଟନ, ପାନୀୟ ଜଳ ଯୋଗାଣ, ସମନ୍ୱିତ ଶିଶୁ ବିକାଶ ଯୋଜନାର କାର୍ଯ୍ୟକାରିତା, ଅଂଗନବାଡ଼ି ପରିଚାଳନା, ବସ୍ତି ଉନ୍ନୟନ, ସର୍ବସାଧାରଣ ଓ ଜଂଗଲ ଜମିର ସୁରକ୍ଷା ଏବଂ ପାଣିପମ୍ପ ବିଦ୍ୟୁତ୍‌କରଣ କ୍ଷେତ୍ରରେ ଓଡ଼ିଶା ଶତକଡ଼ା ୯୦ରୁ ଉର୍ଦ୍ଧ୍ୱ ସଫଳତା ହାସଲ କରିପାରିଛି ।





# ଭାରତୀୟ ପର୍ଯ୍ୟଟନ ଏବଂ ଭ୍ରମଣ ପରିଚାଳନା ଅନୁଷ୍ଠାନର ସ୍ୱଳ୍ପକାଳୀନ ତାଲିମ୍ କାର୍ଯ୍ୟକ୍ରମ

ଭାରତୀୟ ପର୍ଯ୍ୟଟନ ଏବଂ ଭ୍ରମଣ ପରିଚାଳନା ଅନୁଷ୍ଠାନ ଭୁବନେଶ୍ୱର ଶାଖା ପକ୍ଷରୁ ଏକ ୨୦ ଦିନିଆ ତାଲିମ୍ କାର୍ଯ୍ୟକ୍ରମ ୟୁ.ଜି.ସି. ସହାୟତାରେ ଗତ ଡିସେମ୍ବର ୨୦ ତାରିଖଠାରୁ ଆରମ୍ଭ ହୋଇଛି । ଏହି ତାଲିମ୍ ଶିବିରକୁ ରାଜ୍ୟ ଶକ୍ତି, ସୂଚନା ପ୍ରଯୁକ୍ତି ବିଦ୍ୟା ଓ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଉଦ୍‌ଘାଟନ କରି ରାଜ୍ୟରେ ପର୍ଯ୍ୟଟନ ଶିଳ୍ପର ବିକାଶ କରାଯାଇ ଆର୍ଥିକ ଅଭିବୃଦ୍ଧି ଘଟାଇବା ନିମନ୍ତେ ରାଜ୍ୟ ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରୁଛନ୍ତି ବୋଲି ସୂଚନା ଦେଇଥିଲେ । ପର୍ଯ୍ୟଟନସ୍ଥଳୀ ଏବଂ ଏହାର ସଂଯୋଗୀକରଣ ରାସ୍ତାର ଉନ୍ନତି ବିଧାନ କରାଯିବା ସଂଗେ ସଂଗେ ପର୍ଯ୍ୟଟକମାନଙ୍କର ଗମନାଗମନ ଏବଂ ରହଣି ନିମନ୍ତେ ସୁବ୍ୟବସ୍ଥା କରାଯାଇଛି ବୋଲି ସେ କହିଥିଲେ । ବିଦେଶୀ ପର୍ଯ୍ୟଟକମାନଙ୍କର ସୁବିଧା ଏବଂ ଅଧିକ ଆଗମନ ନିମନ୍ତେ ବିଜୁ ପଟ୍ଟନାୟକ ବିମାନବନ୍ଦର ସଂପ୍ରସାରଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଇ ଆସନ୍ତା ବର୍ଷ ଡିସେମ୍ବର ମାସ ସୁଦ୍ଧା ଶେଷ କରାଯିବ ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ସୂଚନା ଦେଇଥିଲେ । ବିଶେଷକରି ପର୍ଯ୍ୟଟକମାନଙ୍କୁ ଉତ୍ତମ ବ୍ୟବହାର ପ୍ରଦର୍ଶନ ଏବଂ ସେମାନଙ୍କ ନିରାପତ୍ତା ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରିଥିଲେ । ଏହି ଅବସରରେ ସୂଚନା ପ୍ରଯୁକ୍ତି ବିଦ୍ୟା ଦେଶ ତଥା ବିଦେଶରେ ଏକ ପ୍ରମୁଖ ମାଧ୍ୟମ ଭାବେ କାର୍ଯ୍ୟ କରୁଥିବାରୁ ଓଡ଼ିଶା ପର୍ଯ୍ୟଟନ କ୍ଷେତ୍ରରେ ଏହାର ଭୂମିକାକୁ ଦୃଷ୍ଟିରେ ରଖି ଜାତୀୟ ସ୍ତରରେ ସୂଚନା ପ୍ରଯୁକ୍ତି ବିଦ୍ୟାକୁ ଓଡ଼ିଶାରେ କାର୍ଯ୍ୟକ୍ଷମ କରିବା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଉଛି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ପ୍ରକାଶ କରିଥିଲେ । ଆସନ୍ତା ବର୍ଷ ମାର୍ଚ୍ଚ ମାସରେ ମସ୍କୋଠାରେ ଓଡ଼ିଶା ରାଜ୍ୟର ପର୍ଯ୍ୟଟନ ସଂପର୍କରେ ପ୍ରଦର୍ଶନୀ କରାଯାଇ ଓଡ଼ିଶାର ପର୍ଯ୍ୟଟକମାନଙ୍କୁ ବହୁଳ ଭାବରେ ଆକୃଷ୍ଟ କରିବା ନିମନ୍ତେ ପଦକ୍ଷେପ ନିଆଯାଉଛି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ସୂଚନା ଦେଇଥିଲେ ।

ଏହି ତାଲିମ୍ କାର୍ଯ୍ୟକ୍ରମର ଉଦ୍‌ଘାଟନୀ ଉତ୍ସବରେ ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଡଃ ଦାମୋଦର ଆଚାର୍ଯ୍ୟ ଓ ପ୍ରଫେସର ଶ୍ରୀ ସୀତିକଣ୍ଠ ମିଶ୍ର ଯୋଗ ଦେଇଥିଲେ । ଶେଷରେ ଶ୍ରୀ ସବୀର ହୁସେନ୍ ଧନ୍ୟବାଦ ଅର୍ପଣ କରିଥିଲେ ।

# ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ନିମନ୍ତେ ଚଳିତ ବର୍ଷ ନଭେମ୍ବର ଶେଷ ସୁଦ୍ଧା ୨୮୫୯୮.୧୭ ଲକ୍ଷ ଟଙ୍କା ବ୍ୟୟ

ରାଜ୍ୟରେ ଦାରିଦ୍ର୍ୟ ଦୂରୀକରଣ ଏବଂ ଜନକଲ୍ୟାଣ ଯୋଜନା କାର୍ଯ୍ୟକାରୀ କରାଯାଇ ଆର୍ଥିକ ଅଭିବୃଦ୍ଧି ନିମନ୍ତେ ପଂଚାୟତିରାଜ ବିଭାଗ ପକ୍ଷରୁ ୩୦ ଗୋଟି ଜିଲ୍ଲାରେ ବିଭିନ୍ନ ଯୋଜନାମାନର ଅଗ୍ରଗତି କ୍ଷେତ୍ରରେ ବିଶେଷ ସଫଳତା ହାସଲ କରାଯାଇପାରିଛି । ବିଶେଷକରି ଇନ୍ଦିରା ଆବାସ ଯୋଜନା, କଳାପଟା ଅଭିଯାନ, ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା, ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନାରେ ନଭେମ୍ବର ମାସ ଶେଷସୁଦ୍ଧା ୨୮୫୯୮.୧୭ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଛି ।

ଦେବଗଡ଼ ଜିଲ୍ଲା ଏହି ଯୋଜନା ନିମନ୍ତେ ସର୍ବାଧିକ ୮୩ ପ୍ରତିଶତ ଟଙ୍କା ବ୍ୟୟ କରିଥିବାବେଳେ ନବରଂଗପୁର ଜିଲ୍ଲା ୫୨ ପ୍ରତିଶତ, ବୌଦ ଓ ବରଗଡ଼ ଜିଲ୍ଲା ୬୨ ପ୍ରତିଶତ ଲେଖାଏଁ ଟଙ୍କା ବ୍ୟୟ କରିପାରିଛନ୍ତି । ଅନୁଗୁଳ ଜିଲ୍ଲା ୮୧ ପ୍ରତିଶତ, ବଲାଙ୍ଗୀର ୭୪ ପ୍ରତିଶତ, ବାଲେଶ୍ୱର ୬୭, ଭଦ୍ରକ ୭୭, କଟକ ୬୬, ଢେଙ୍କାନାଳ ୭୨, ଗଜପତି ୭୬, ଗଂଜାମ ୭୩, ଜଗତସିଂହପୁର ୮୦, ଯାଜପୁର ୭୧, ଝାରସୁଗୁଡ଼ା ୮୧, କଳାହାଣ୍ଡି ୬୩, କେନ୍ଦ୍ରାପଡ଼ା ୬୯, କେନ୍ଦୁଝର ୭୨, ଖୋର୍ଦ୍ଧା ୭୪, କୋରାପୁଟ ୭୦, ମାଲକାନଗିରି ୭୧, ମୟୂରଭଞ୍ଜ ୮୨, ନୂଆପଡ଼ା ୬୫, ନୟାଗଡ଼ ୭୫, ଫୁଲବାଣୀ ୭୩, ପୁରୀ ୬୮, ରାୟଗଡ଼ା ୬୫, ସମ୍ବଲପୁର ୭୦, ସୋନପୁର ୭୭, ସୁନ୍ଦରଗଡ଼ ୮୨ ପ୍ରତିଶତ ଟଙ୍କା ବ୍ୟୟ କରିଛନ୍ତି ।

# ଓଡ଼ିଶା ବାହାରର ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ଆମ ରାଜ୍ୟ ସରକାରୀ ଇଂଜିନିୟରିଂ କଲେଜଗୁଡ଼ିକରେ ଏଣିକି ଶତକଡ଼ା ୫ ଭାଗ ସ୍ଥାନ ସଂରକ୍ଷିତ ହେଲା : ଶିକ୍ଷା ମନ୍ତ୍ରୀ

ଓଡ଼ିଶା ବାହାରେ ବସବାସ କରୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ରାଜ୍ୟର ବିଭିନ୍ନ ସରକାରୀ ଇଂଜିନିୟରିଂ କଲେଜଗୁଡ଼ିକରେ ସିଟ୍ ସଂରକ୍ଷିତ ନଥିଲା । ତେଣୁ ପଡ଼ୋଶୀ ରାଜ୍ୟ, ବିଚ୍ଛିନ୍ନାଞ୍ଚଳ ଓ ଅନ୍ୟ ରାଜ୍ୟରେ ରହୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନେ ଓଡ଼ିଶାର ସରକାରୀ ବୈଷୟିକ ମହାବିଦ୍ୟାଳୟଗୁଡ଼ିକରେ ଅଧ୍ୟୟନ ପାଇଁ ସେତେ ସୁବିଧା ସୁଯୋଗ ପାଉ ନଥିଲେ । ଏହାକୁ ଦୃଷ୍ଟିରେ ରଖି ଶିକ୍ଷା ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ





ଓଡ଼ିଶା ବାହାରେ ରହୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ରାଜ୍ୟର ସମସ୍ତ ସରକାରୀ ବୈଷୟିକ ମହାବିଦ୍ୟାଳୟଗୁଡ଼ିକରେ ଏଣିକି ଶତକଡ଼ା ୫ ଭାଗ ସିଟ୍ ସଂରକ୍ଷିତ ରହିବ ବୋଲି ନିର୍ଦ୍ଦେଶ ଦେଇଛନ୍ତି ।

ସୂଚନାଯୋଗ୍ୟ ଯେ, ଉତ୍କଳ ସମ୍ମିଳନୀ, ସିଂହଭୂମି ଉତ୍କଳସଭା ଓ ଅନ୍ୟ ପ୍ରବାସୀ ଓଡ଼ିଆ ଅନୁଷ୍ଠାନର ଶିକ୍ଷ ମନ୍ତ୍ରୀଙ୍କ ନିକଟରେ ଏହି ଦାବି ବାରମ୍ବାର ହୋଇ ଆସୁଥିଲା । ବିଶେଷକରି ଉତ୍କଳ ସମ୍ମିଳନୀ ଉଦ୍ୟମରେ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ଓଡ଼ିଆ ଶିକ୍ଷା ବ୍ୟବସ୍ଥା ଅନୁସୃତ ହେଉଥିଲେ ହେଁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀମାନଙ୍କ ପାଇଁ ସଂପୃକ୍ତ ରାଜ୍ୟ ବା ଆମ ରାଜ୍ୟରେ ସରକାରୀ ବୈଷୟିକ ମହାବିଦ୍ୟାଳୟରେ କୌଣସି ସିଟ୍ ସଂରକ୍ଷିତ ନଥିବାରୁ ସେମାନେ ବୈଷୟିକ ଶିକ୍ଷାରୁ ବଂଚିତ ହେଉଛନ୍ତି ବୋଲି ବିଭିନ୍ନ ସ୍ତରରୁ ମତ ପ୍ରକାଶ ପାଉଥିଲା । ବିଚ୍ଛିନ୍ନାଞ୍ଚଳ ସମେତ ଅନ୍ୟ ରାଜ୍ୟଗୁଡ଼ିକୁ ଗସ୍ତରେ ଗଲାବେଳେ ସେଠାକାର ପ୍ରବାସୀ ଓଡ଼ିଆ ଅନୁଷ୍ଠାନ ଓ ଓଡ଼ିଆମାନେ ବହୁ ସଂଖ୍ୟାରେ ଆସି ଓଡ଼ିଶା ବାହାରର ଓଡ଼ିଆ ପିଲାମାନଙ୍କ ପାଇଁ ରାଜ୍ୟର ସରକାରୀ ବୈଷୟିକ ମହାବିଦ୍ୟାଳୟରେ ୫ ପ୍ରତିଶତ ସ୍ଥାନ ସଂରକ୍ଷିତ କରିବାକୁ ଶିକ୍ଷ ମନ୍ତ୍ରୀ ଶ୍ରୀ ହରିଚନ୍ଦନଙ୍କୁ ଅନୁରୋଧ କରିଥିଲେ । ତେଣୁ ଏହି ବହୁଦିନର ଦାବିକୁ ବିଚାର କରି ଶିକ୍ଷ ମନ୍ତ୍ରୀ ଶ୍ରୀ ହରିଚନ୍ଦନ ଓଡ଼ିଶା ବାହାରେ ରହୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ରାଜ୍ୟର ସମସ୍ତ ସରକାରୀ ଇଂଜିନିୟରିଂ କଲେଜଗୁଡ଼ିକରେ ଶତକଡ଼ା ୫ ଭାଗ ସିଟ୍ ସଂରକ୍ଷିତ ରହିବ ବୋଲି ନିର୍ଦ୍ଦେଶ ଦେଇଛନ୍ତି ।

ଏହାଛଡ଼ା ରାଜ୍ୟର ସମସ୍ତ ବେସରକାରୀ ତଥା ନିଜସ୍ୱ ଅର୍ଥର ପରିଚାଳିତ ବୈଷୟିକ ମହାବିଦ୍ୟାଳୟରେ ଓଡ଼ିଶା ବାହାରର ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ଅଧ୍ୟୟନ ପାଇଁ ରାଜ୍ୟ ବାହାରେ ଓଡ଼ିଶା ଜେ.ଇ.ଇ. (ଯୁଗ୍ମ ପ୍ରବେଶିକା ପରୀକ୍ଷା)ର ୮ଟି କେନ୍ଦ୍ରର ବ୍ୟବସ୍ଥା କରାଯାଇଛି । ଯେଉଁଠାରେ ସେମାନେ ପରୀକ୍ଷା ଦେଇ କୃତକାର୍ଯ୍ୟ ହେଉଛନ୍ତି ଓ ପ୍ରତିଯୋଗିତା ମାଧ୍ୟମରେ ରାଜ୍ୟର ସମସ୍ତ ବେସରକାରୀ ଇଂଜିନିୟରିଂ କଲେଜରେ ଶତକଡ଼ା ୫୦ ଭାଗ ସଂରକ୍ଷିତ ସିଟ୍ ମଧ୍ୟରେ ସ୍ଥାନ ପାଇଁ ପଢ଼ିବାର ସୁଯୋଗ ପାଉଛନ୍ତି ।

## ଆର୍.ଏଲ୍.ଟି.ପି. ଯୋଜନାରେ ୩୪୭୬ ଜଣ ଲୋକ ଉପକୃତ

ଅବିଭକ୍ତ କେ.ବି.କେ. ଜିଲ୍ଲାଗୁଡ଼ିକରେ ମତ୍ସ୍ୟଚାଷ ଜରିଆରେ ଲୋକମାନଙ୍କର ଜୀବନ ଧାରଣର ମାନ ଉନ୍ନତ କରିବା ପାଇଁ ଉଦ୍ଦିଷ୍ଟ 'ସଂଶୋଧିତ ଦୀର୍ଘ ମିଆଦୀ ଯୋଜନା' (ଆର୍.ଏଲ୍.ଟି.ପି.)ରେ ଅଦ୍ୟାବଧି ୩୪୭୬ ଜଣ ହିତାଧିକାରୀ ଉପକୃତ ହୋଇଛନ୍ତି । ଏଥିପାଇଁ ବିଗତ ୨ ବର୍ଷ ମଧ୍ୟରେ ୩୫ ଗୋଟି ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତି ଓ ୫୧ ଗୋଟି ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ ଜଳଭଣ୍ଡାରରେ ମାଛଚାଷ ତଥା ମାଛଧରା ଉନ୍ନତି ବିଧାନ ନିମନ୍ତେ ୩୦୯.୫୫ ଲକ୍ଷ ଟଙ୍କା ବ୍ୟୟ କରାଯାଇଛି । ଏହି ଟଙ୍କା ବ୍ୟୟରେ ମତ୍ସ୍ୟଜୀବୀମାନଙ୍କୁ ଜଳଭଣ୍ଡାରରେ ମାଛଚାଷ ତଥା ମାଛଧରା ସମ୍ବନ୍ଧୀୟ ଜ୍ଞାନ ସଂପର୍କରେ ସଚେତନତା ଶିବିର ଓ ତାଲିମ ପ୍ରଦାନ କରାଯାଇଛି । ଏତଦ୍‌ବ୍ୟତୀତ ୧୮.୦୩ ହେକ୍ଟର ଯାଆଁଳ ପାଳନ କେନ୍ଦ୍ର ପ୍ରତିଷ୍ଠା, ୮୧ଟି ମତ୍ସ୍ୟ ଅବତରଣ କେନ୍ଦ୍ର ନିର୍ମାଣ, ମତ୍ସ୍ୟଜୀବୀମାନଙ୍କୁ ୨୬୯ ଗୋଟି ଡଙ୍ଗା ଓ ୫୩୮୦ କି.ଗ୍ରା. ଜାଲ ପ୍ରଦାନ, ମତ୍ସ୍ୟଜୀବୀମାନଙ୍କର ଅନ୍ୟାନ୍ୟ ଆୟ ନିମନ୍ତେ ଛେଳି, ବତକ, କୁକୁଡ଼ା, ମଧୁର ଚିଂଗୁଡ଼ି ଚାଷ ସହ ଅନ୍ୟାନ୍ୟ ଖର୍ଚ୍ଚ ସହ ୮୩ ଗୋଟି ଜଳଭଣ୍ଡାରରୁ ମାଛ ଉତ୍ପାଦନ ବୃଦ୍ଧି ଓ ୩୪୭୬ ଜଣ ମତ୍ସ୍ୟଜୀବୀଙ୍କର ମୁଣ୍ଡପିଛା ଆୟ ବୃଦ୍ଧି କରାଯାଇ ପାରିଛି ବୋଲି ମତ୍ସ୍ୟ ଓ ପଶୁ ସଂପଦ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।

## 'ସୁନାମି' ପ୍ରପୀଡ଼ିତ ଲୋକମାନଙ୍କୁ ରାଜ୍ୟ ସରକାର ସବୁପ୍ରକାର ସାହାଯ୍ୟ ଯୋଗାଇଦେବେ - ରାଜସ୍ୱ ମନ୍ତ୍ରୀ ଶ୍ରୀ ସାମଲ

'ସୁନାମି' ଭୟାବହ ସାମୁଦ୍ରିକ ଜୁଆରରେ କ୍ଷତିଗ୍ରସ୍ତ ହୋଇଥିବା ଆଣ୍ଡାମାନ ନିକୋବର ଲୋକମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦିଆଯାଉଛି ବୋଲି ଏକ ସାମ୍ବାଦିକ ସମ୍ମିଳନୀରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ ପ୍ରକାଶ କରିଛନ୍ତି ।

ଗତ ଡିସେମ୍ବର ୨୭ ଓ ୨୮ ତାରିଖରେ ୯.୩ ମେଟ୍ରିକ୍ ଟନ୍ ଖାଦ୍ୟଦ୍ରବ୍ୟ ଦୁଇଟି ବିମାନ ଯୋଗେ ପଠାଇ ଦିଆଯାଇଛି ଏବଂ ଗତ ଡିସେମ୍ବର ୩୦ ତାରିଖରେ ୨୦ ମେଟ୍ରିକ୍ ଟନ୍ ରିଲିଫ୍ ସାମଗ୍ରୀ ଯୋଗାଇ ଦିଆଯାଇଛି । ଏଥିମଧ୍ୟରେ ୪.୫ ମେଟ୍ରିକ୍ ଟନ୍ ଖାଦ୍ୟ, ୩.୫ ମେଟ୍ରିକ୍ ଟନ୍ ଔଷଧପତ୍ର, ୧ ମେଟ୍ରିକ୍ ଟନ୍ ବିଶୁଦ୍ଧ ପାନୀୟ ଜଳ, ୬ ମେଟ୍ରିକ୍ ଟନ୍ ଚୂଡ଼ା ଓ ଗୁଡ଼, ୫ ମେଟ୍ରିକ୍ ଟନ୍ (୧୦୦ଟି) ତମ୍ବୁ ଓ ଆନୁଷଙ୍ଗିକ ସାମଗ୍ରୀ ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ୪୦୦ଟି ତମ୍ବୁ (୭୦ ମେଟ୍ରିକ୍ ଟନ୍), ୧୨ ମେଟ୍ରିକ୍ ଟନ୍ ଖାଦ୍ୟଦ୍ରବ୍ୟ ଓ ୧ ମେଟ୍ରିକ୍ ଯନ୍ ବିଶୁଦ୍ଧ ପାନୀୟ ଜଳ ପଠାଇବା ପାଇଁ ସମସ୍ତ ପ୍ରସ୍ତୁତି ସରିଛି ।





'ସୁନାମି'ରେ ନିଖୋଜ ବ୍ୟକ୍ତିମାନଙ୍କୁ ଠାବ କରି ସୂଚନା ଦେବା ପାଇଁ ଭୁବନେଶ୍ୱରଠାରେ ଏକ 'ହେଲ୍ପ ଲାଇନ' କାର୍ଯ୍ୟ କରୁଛି ଏବଂ ଏହାର ଟେଲିଫୋନ୍ ନମ୍ବର ୨୪୦୦୧୬୧ / ୨୪୦୪୩୨୦ / ୨୩୨୨୯୬୭ ଏବଂ ରାଉରକେଲାଠାରେ ଟେଲିଫୋନ ନମ୍ବର ୦୬୬୧-୨୫୦୦୨୩୯ ଜରିଆରେ ସୂଚନା ପ୍ରଦାନ କରାଯାଉଛି ।

ରାଉରକେଲା ଇସ୍ପାତ୍ କାରଖାନାର ୯୭ଟି ପରିବାର ସୁରକ୍ଷିତ ଅବସ୍ଥାରେ ଫେରି ଆସିଛନ୍ତି । ଏତଦ୍‌ବ୍ୟତୀତ କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗର ଅଂଚଳର ୨୪ ଜଣଙ୍କ ପରିବାର ପୋର୍ଟବ୍ଲେୟାରଠାରେ ସୁରକ୍ଷିତ ଅଛନ୍ତି । ପୂର୍ବରୁ ଯେଉଁ ୧୧ ଜଣ ହଜିଯାଇଥିବାର ଆଶଙ୍କା କରାଯାଉଥିଲା, ସେମାନେ ସମସ୍ତେ ମଧ୍ୟ ସୁରକ୍ଷିତ ଥିବା ଜଣାଯାଇଛି ।

କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ର ବିଭାଗର ଅନୁରୋଧକ୍ରମେ ଜେନେରେଟର, ଟର୍ଚ୍ଚ, ଟାର୍ପୋଲିନ୍ ପଠାଇବା ପାଇଁ ବ୍ୟବସ୍ଥା କରାଯାଉଛି । ଏହାଛଡ଼ା ଶାଢ଼ୀ, ବେଡ୍‌ସିଟ୍, ଲୁଗା ଇତ୍ୟାଦି ପର୍ଯ୍ୟାୟକ୍ରମେ ପଠାଇବା ପାଇଁ ବ୍ୟବସ୍ଥା ଚାଲୁ ରହିଛି ବୋଲି ମନ୍ତ୍ରୀ ଶ୍ରୀ ସାମଲ ସୂଚନା ଦେଇଥିଲେ ।

ରାଜ୍ୟ ସରକାର ଆଣ୍ଡାମାନ୍ ନିକୋବର କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରି ହଜି ଯାଇଥିବା ଲୋକମାନଙ୍କ ସଂପର୍କରେ ସବିଶେଷ ସୂଚନା ମଧ୍ୟ ପ୍ରଦାନ କରୁଛନ୍ତି ।

## ଓଡ଼ିଶା ସୂଚନା ସେବା ସଂଘର ନୂତନ କର୍ମକର୍ତ୍ତା

ଓଡ଼ିଶା ସୂଚନା ସେବା ସଂଘର ବାର୍ଷିକ ସାଧାରଣ ଅଧିବେଶନ ତା ୨୬.୧୨.୦୪ରିଖରେ ଜୟଦେବ ଭବନଠାରେ ସଂଘର ମୁଖ୍ୟ ଉପଦେଷ୍ଟା ତଥା ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଯାଇଛି । ବୈଠକର ପ୍ରାରମ୍ଭରେ ସାମୁଦ୍ରିକ ଭୂମିକମ୍ପରେ ପ୍ରପୀଡ଼ିତ ଜନତାଙ୍କ ଉଦ୍ଦେଶ୍ୟରେ ଗଭୀର ସମବେଦନା ଜ୍ଞାପନ କରାଯାଇଥିଲା । ଏହି ସାଧାରଣ ଅଧିବେଶନରେ ସୂଚନା ସେବା ସଂଘର ବିଭିନ୍ନ ସମସ୍ୟା ସଂପର୍କରେ ବିଚାର ଆଲୋଚନା କରାଯିବା ପରେ ସଂଘର ଦ୍ୱିବାର୍ଷିକ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଉକ୍ତ ନିର୍ବାଚନରେ ଶ୍ରୀ ପୃଥ୍ୱୀଶ କୁମାର ସିଂ - ସଭାପତି, ଶ୍ରୀ ସୌରଜିତ ଦାସ - ଉପସଭାପତି, ଶ୍ରୀ ସୂର୍ଯ୍ୟ ରଂଜନ ମହାନ୍ତି - ସାଧାରଣ ସଂପାଦକ, ଶ୍ରୀମତୀ ସୁଚେତା ପ୍ରିୟଦର୍ଶିନୀ - ଯୁଗ୍ମ ସଂପାଦିକା ଏବଂ ଶ୍ରୀ ସନ୍ତୋଷ କୁମାର ଦାସ - କୋଷାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଛନ୍ତି । ଶ୍ରୀ ଇନ୍ଦ୍ରମଣି ମହାଳିକ - ହିସାବ ନିରୀକ୍ଷକ ଭାବେ ମନୋନୀତ ହୋଇଥିବା ବେଳେ ଶ୍ରୀ ରମେଶ କୁମାର ସାହୁ, ତାଜୁଦ୍ଦିନ୍ ଅହେମ୍ମଦ, ଶ୍ରୀ କିଶୋର ଚନ୍ଦ୍ର ନାୟକ, ଶ୍ରୀ ରାଜେନ୍ଦ୍ର ପ୍ରସାଦ ମହାନ୍ତି, ଶ୍ରୀ ସସ୍ମିତ ମହାନ୍ତି, ଶ୍ରୀ ହେମନ୍ତ କୁମାର ନାୟକ, ଶ୍ରୀ ଲଲାଟେନ୍ଦୁ ମହାପାତ୍ର, ଶ୍ରୀ ଭବାନୀ ଶଙ୍କର ଭୂୟାଁ, ଦିପ୍ତୀମୟୀ ମହାପାତ୍ର ଓ ଜ୍ୟୋତିର୍ମତୀ ସାମନ୍ତରାୟ କାର୍ଯ୍ୟକାରୀ କମିଟିରେ ସଦସ୍ୟ/ସଦସ୍ୟା ଭାବେ ସ୍ଥାନ ପାଇଛନ୍ତି ।

ସଂଘର ନିର୍ବାଚନକୁ ବିଭାଗର ଅବସରପ୍ରାପ୍ତ ଉପ-ଶାସନ ସଚିବ ଶ୍ରୀ ଗୋବିନ୍ଦ ଚନ୍ଦ୍ର ନାୟକ ପରିଚାଳନା କରିଥିଲେ । ବିଭିନ୍ନ ଜିଲ୍ଲା ଓ ଉପଖଣ୍ଡରୁ ସୂଚନା ଓ ଲୋକ ସଂପର୍କ ଅଧିକାରୀମାନେ ବହୁ ସଂଖ୍ୟାରେ ଏହି ଅଧିବେଶନରେ ଯୋଗ ଦେଇଥିବାରୁ ସଭାପତି ଓ ସାଧାରଣ ସଂପାଦକ କୃତଜ୍ଞତା ଜ୍ଞାପନ କରିଛନ୍ତି ।

## କେନ୍ଦ୍ରାପଡ଼ାରେ ୪୪୫ ଜଣଙ୍କୁ ନିଯୁକ୍ତିପତ୍ର ବଣ୍ଟନ

ରାଜ୍ୟବ୍ୟାପୀ ଶିକ୍ଷା ସହାୟକ ନିଯୁକ୍ତି ମେଳାର ଅଂଶବିଶେଷ କେନ୍ଦ୍ରାପଡ଼ା ଜିଲ୍ଲା ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟାଳୟଠାରେ ଆୟୋଜିତ ମେଳାରେ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ୪୪୫ ଜଣଙ୍କୁ ନିଯୁକ୍ତିପତ୍ର ବଣ୍ଟନ କରିଛନ୍ତି । ଏହି ଅବସରରେ ମନ୍ତ୍ରୀ ଶ୍ରୀ ନାୟକ ଉଦ୍‌ବୋଧନ ଦେଇ କହିଲେ ଯେ ପ୍ରତ୍ୟେକ ଶିଶୁଙ୍କୁ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ସହିତ ଶିକ୍ଷାର ଗୁଣାତ୍ମକ ବିକାଶ ଉପରେ ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । ନିଯୁକ୍ତି ମେଳା ମାଧ୍ୟମରେ ନବନିଯୁକ୍ତ ଶିକ୍ଷା ସହାୟକମାନଙ୍କୁ ରୋଜଗାର ପନ୍ଥା ଯୋଗାଇ ଦିଆଯିବା ସହିତ ଭବିଷ୍ୟତରେ ସୁନାଗରିକ କରି ଗଢ଼ି ତୋଳିବା ପାଇଁ ଗୁରୁଦାୟିତ୍ୱ ଦିଆଯାଇଛି । ଏଣୁ ନିଯୁକ୍ତି ପାଇଥିବା ଶିକ୍ଷା ସହାୟକମାନେ ଏ ଦିଗ ପ୍ରତି ସଚେତନ ରହି ନିଜର କାର୍ଯ୍ୟ ସଂପାଦନ କରିବାକୁ ମନ୍ତ୍ରୀ ଶ୍ରୀ ନାୟକ ପରାମର୍ଶ ଦେଇଥିଲେ ।

ଏହି ମେଳାରେ କେନ୍ଦ୍ରାପଡ଼ା ଜିଲ୍ଲା ପରିଷଦ ଅଧ୍ୟକ୍ଷ ଶ୍ରୀ ନଗେନ୍ଦ୍ର ବେହେରା, ଉପାଧ୍ୟକ୍ଷ ଶ୍ରୀମତୀ ଗୀତାଞ୍ଜଳି ସେଠୀ, ଜିଲ୍ଲାପାଳ ଶ୍ରୀ ହେମନ୍ତ ଶର୍ମା, ଗ୍ରାମ୍ୟ ଉନ୍ନୟନ ପ୍ରକଳ୍ପ ଅଧିକାରୀ ଶ୍ରୀ ଚନ୍ଦ୍ରଶେଖର ମିଶ୍ର, ମଣ୍ଡଳ ଶିକ୍ଷା ନିରୀକ୍ଷକ, ଜିଲ୍ଲା ଶିକ୍ଷା ନିରୀକ୍ଷକ ପ୍ରମୁଖ ଉପସ୍ଥିତ ଥିଲେ ।





# ରାଜ୍ୟର ୪୦ ଲକ୍ଷ ହେକ୍ଟର ଧାନଜମି ମଧ୍ୟରୁ ଏକ ଲକ୍ଷ ୫୫ ହଜାର ହେକ୍ଟର ଜମିରେ ଅନ୍ୟ ଅର୍ଥକରୀ ଫସଲ ଚାଷ କରାଯିବ

ରାଜ୍ୟରେ ୪୦ ଲକ୍ଷ ହେକ୍ଟର ଧାନଜମି ମଧ୍ୟରୁ ଏକ ଲକ୍ଷ ୫୫ ହଜାର ହେକ୍ଟର ଜମିରେ ବିଭିନ୍ନ ଅର୍ଥକରୀ ଫସଲ କପା, ଆଖୁ, ଡାଲିଜାତୀୟ, ତୈଳବୀଜ ଜାତୀୟ, ପନିପରିବା, ଆମ୍ବ, ମସଲା ଜାତୀୟ ଓ ଫୁଲଚାଷ କରାଯିବ । ତନ୍ମଧ୍ୟରୁ କେ.ବି.କେ. ଜିଲ୍ଲାମାନଙ୍କରେ ୫୦,୨୩୯ ହେକ୍ଟର ଜମିରେ ଏହି ଚାଷ କରାଯିବା ପାଇଁ ରାଜ୍ୟ କୃଷି ବିଭାଗ ପକ୍ଷରୁ ସୂଚନା ଦିଆଯାଉଛି ।

ଗତ ଜାନୁଆରୀ ୧୪ ତାରିଖ ପୂର୍ବାହ୍ନରେ ଶହୀଦ ନଗରସ୍ଥ କ୍ୱାଲିଟି କଣ୍ଟ୍ରୋଲ ଲାବୋରେଟରୀ ସମ୍ମିଳନୀ କକ୍ଷରେ କୃଷି ବିଭାଗ ପକ୍ଷରୁ ଆୟୋଜିତ କୃଷି ଉପନିର୍ଦ୍ଦେଶକ, ଉଦ୍ୟାନ ବିଭାଗ ଉପନିର୍ଦ୍ଦେଶକ, ଜିଲ୍ଲା କୃଷି ଅଧିକାରୀ, କପାଚାଷ ବିଶେଷଜ୍ଞ ଏବଂ ଉଦ୍ୟାନବିତ୍‌ମାନଙ୍କର ଦୁଇଦିନିଆ ସମ୍ମିଳନୀକୁ କୃଷି ଉତ୍ପାଦନ କମିଶନର ଗୌତମ ବୁଦ୍ଧ ମୁଖାର୍ଜୀ ଉଦ୍‌ଘାଟନ କରି କହିଲେ ଯେ ରାଜ୍ୟରେ ଧାନଚାଷ କରାଯାଉଥିବା ୪୦ ଲକ୍ଷ ହେକ୍ଟର ଜମି ମଧ୍ୟରୁ ଏକ ଲକ୍ଷ ୫୫ ହଜାର ହେକ୍ଟର ଜମିରେ ଅର୍ଥକରୀ ଫସଲ, ଚାଷ କରିବା ପାଇଁ ଚାଷୀମାନଙ୍କୁ ପ୍ରବର୍ତ୍ତାଇବା ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ । ବର୍ତ୍ତମାନ ରାଜ୍ୟରେ ଚାଷୀମାନେ ଯେପରି ଚାଷରେ ଲାଭବାନ ହୋଇପାରିବେ, କୃଷିବିତ୍‌ମାନେ ସେ ସଂପର୍କରେ ଚାଷୀମାନଙ୍କ ପାଖକୁ ଯାଇ ଅର୍ଥକରୀ ଫସଲ ଚାଷ କରିବା ପାଇଁ ବୁଝାଇବା ଆବଶ୍ୟକ । ଏହି ଅବସରରେ ଚାଷୀମାନଙ୍କ ପାଇଁ ଚାଷ ବୈଷୟିକ ଜ୍ଞାନକୌଶଳ ସମ୍ବଳିତ 'ଆଗ୍ରୋନିକା' ପୁସ୍ତକକୁ ଏ.ପି.ସି. ଶ୍ରୀ ମୁଖାର୍ଜୀ ଉନ୍ମୋଚନ କରିଥିଲେ ।

କୃଷି ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ଅର୍ଦ୍ଧେନ୍ଦୁ ଶେଖର ଷଡଙ୍ଗୀ ସମ୍ମିଳନୀରେ ଯୋଗ ଦେଇ ରାଜ୍ୟ ସରକାରଙ୍କ କୃଷିନୀତିର କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ଉପରେ ଗୁରୁତ୍ୱ ଆରୋପ କରି କହିଲେ ଯେ ରାଜ୍ୟର ଚାଷୀମାନଙ୍କର ଉତ୍ପାଦିତ ଦ୍ରବ୍ୟ ଓ ତାହାର ବିକ୍ରିବଟାକୁ ଦୃଷ୍ଟିରେ ରଖି ଚାଷୀ କି ଫସଲ କଲେ ସହଜରେ ତାହା ବଜାରରେ ବିକ୍ରି କରିପାରିବ, ତାହା ଉପରେ କୃଷିବିତ୍‌ମାନେ ଗୁରୁତ୍ୱ ଦେବା ଆବଶ୍ୟକ । ରାଜ୍ୟର ପ୍ରତ୍ୟେକ ଅଂଚଳର ଚାଷଜମିର ମାଟି ପରୀକ୍ଷା କରି ଧାନଚାଷ ସହିତ ଅଧିକ ଜମିରେ ଅର୍ଥକରୀ ଫସଲ ଚାଷ କରିବା ନିମନ୍ତେ ସମ୍ମିଳନୀରେ ଗୁରୁତ୍ୱ ଆରୋପ କରାଯାଇଥିଲା । ଧାନଚାଷ ବ୍ୟତୀତ ଅନ୍ୟାନ୍ୟ ଫସଲର ବ୍ୟାପକ ଚାଷ କରାଗଲେ, ଚାଷୀମାନଙ୍କର ଆର୍ଥିକ ମାନଦଣ୍ଡ ଉନ୍ନତି ହେବା ସହିତ ରାଜ୍ୟରେ ଅନେକ ଛୋଟବଡ଼ କଳକାରଖାନା ସ୍ଥାପିତ ହେବ ଏବଂ ରୁଗ୍ଣ ହୋଇପଡ଼ିଥିବା ଚିନିକଳ, ସ୍ପିନିଂ ମିଲ୍ ଓ ତେଲକଳ ପ୍ରଭୃତି ସଂପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇପାରିବ ବୋଲି ନୂତନ କୃଷିନୀତିରେ ଗୁରୁତ୍ୱ ଆରୋପ କରାଯାଇଛି । କୃଷି ନିର୍ଦ୍ଦେଶକ ଡଃ ଉମାକାନ୍ତ ମିଶ୍ର ପ୍ରାରମ୍ଭିକ ସୂଚନା ପ୍ରଦାନ କରିଥିଲେ ।

# ବରୀଠାରେ ୩୦ ଶଯ୍ୟା ବିଶିଷ୍ଟ ହସ୍‌ପିଟାଲ ନିମନ୍ତେ ଶିଳାନ୍ୟାସ

ଗତ ଜାନୁଆରୀ ୧୩ ତାରିଖ ଦିନ ଯାଜପୁର ଜିଲ୍ଲାର ବରୀଠାରେ ୧୫ ଲକ୍ଷ ଟଙ୍କା ବ୍ୟୟଅଟକଳରେ ଟାଟା ଷ୍ଟିଲ ପକ୍ଷରୁ ନିର୍ମିତ ହେବାକୁ ଯାଉଥିବା ୩୦ ଶଯ୍ୟା ବିଶିଷ୍ଟ ନୂତନ ହସ୍‌ପିଟାଲ ନିମନ୍ତେ ଶିଳାନ୍ୟାସ କରାଯାଇଛି । ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଏହି ହସ୍‌ପିଟାଲ ନିମନ୍ତେ ଭିତ୍ତିପ୍ରସ୍ତର ସ୍ଥାପନ କରି ଗ୍ରାମାଞ୍ଚଳ ଲୋକଙ୍କ ବିକାଶ ନିମନ୍ତେ କଂପାନୀ ଭୂମିକାର ପ୍ରଶଂସା କରିଥିଲେ । ଏହି ହସ୍‌ପିଟାଲ ସଂପୂର୍ଣ୍ଣ ହେଲେ ଉକ୍ତ ଅଂଚଳର ପ୍ରାୟ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଲୋକ ଉପକୃତ ହୋଇପାରିବେ ।

ଟାଟା ଷ୍ଟିଲର ଅପରେସନ ସ୍ୱାସ୍ଥ୍ୟ ଯୋଜନାରେ ଏହି ହସ୍‌ପିଟାଲ ନିର୍ମାଣ କରାଯାଉଛି । ଖୁବ୍‌ଶୀଘ୍ର ଏହି ହସ୍‌ପିଟାଲ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେବ ଏବଂ ଏଥିରେ ଉନ୍ନତମାନର ଚିକିତ୍ସା ବ୍ୟବସ୍ଥା କରାଯିବ । ଏହି ଅବସରରେ ଆୟୋଜିତ ଉତ୍ସବରେ ଯାଜପୁର ସାଂସଦ ଶ୍ରୀ ମୋହନ ଜେନା, ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ଶିବପ୍ରସାଦ ଦାସ, ସି.ଡି.ଏମ୍.ଓ. ଶ୍ରୀ ପି.ସି. ମହାପାତ୍ର ଏବଂ କଂପାନୀର କର୍ମକର୍ତ୍ତାମାନେ ଯୋଗ ଦେଇ ଉଦ୍‌ବୋଧନ ଦେଇ ଥିଲେ ।

----

**ସଂପାଦକୀୟ**




# ସଂକଳ୍ପ ଦିବସ

**ଜା**ନୁଆରୀ ୨୬ ତାରିଖ ଭାରତୀୟ ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ । ଆଜକୁ ୫୫ ବର୍ଷ ତଳେ ଏହି ଦିନ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରବର୍ତ୍ତିତ ହୋଇଥିଲା । ଏହି ସମ୍ବିଧାନରେ ଭାରତକୁ ଏକ ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଗଠନ କରିବା ସଂଗେସଂଗେ ପ୍ରତ୍ୟେକ ନାଗରିକଙ୍କୁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ କ୍ଷେତ୍ରରେ ସମାନ ସୁବିଧା ସୁଯୋଗ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

ଦୀର୍ଘ ୨୦୦ ବର୍ଷର ପରାଧୀନତା ପରେ ଭାରତ ବ୍ରିଟିଶ ସାମ୍ରାଜ୍ୟ ଅଧୀନରୁ ମୁକ୍ତ ହେଲା । ଏଥିପାଇଁ ୧୮୧୭ ଓଡ଼ିଶା ପାଇକ ବିଦ୍ରୋହ ଓ ୧୮୫୭ର ସିପାହୀ ବିଦ୍ରୋହଠାରୁ ୧୯୪୨ ଭାରତଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ଅନେକ ପର୍ଯ୍ୟାୟରେ ଦେଶବାସୀଙ୍କୁ ସ୍ୱାଧୀନତା ସଂଗ୍ରାମରେ ବହୁମୂଲ୍ୟ ଦେବାକୁ ପଡ଼ିଛି । ସେମାନଙ୍କୁ ଚରମ ଲାଞ୍ଛନା, ନିର୍ଯ୍ୟାତନା ଓ ଯନ୍ତ୍ରଣା ସହିବାକୁ ପଡ଼ିଛି । ଅସୁମାରୀ ଦେଶଭକ୍ତ ନାରୀ, ପୁରୁଷ ପ୍ରାଣବଳି ଦେଇଛନ୍ତି, ଫାଶୀ ଖୁଣ୍ଟରେ ହସି ହସି ଶହୀଦ ହୋଇଛନ୍ତି । ଏ ଦେଶ, ଏ ଜାତି ପାଇଁ ସେମାନଙ୍କ ତ୍ୟାଗ ଓ ବୀରତ୍ୱର ପଟ୍ଟାନ୍ତର ନାହିଁ । ଆଜିର ପବିତ୍ର ଦିବସରେ ସେହି ବରପୁତ୍ରମାନଙ୍କର ଅପୂର୍ବ ଦେଶପ୍ରୀତିକୁ ସ୍ମରଣ କରି ସେମାନଙ୍କ ପ୍ରତି ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜଣାଉଛୁ ।

ଅନୈକ୍ୟ ମଧ୍ୟରେ ଐକ୍ୟ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ନାନା ଭାଷା, ନାନା ଧର୍ମର ଲୋକେ ସେମାନଙ୍କର ଚଳଣି ଓ ଆଚାର ବ୍ୟବହାରର ଭିନ୍ନତା ସତ୍ତ୍ୱେ ମହାନ୍ ଭାରତୀୟ ପରମ୍ପରାକୁ କାଳକାଳ ଧରି ଅକ୍ଷୁଣ୍ଣ ରଖି ଆସିଛନ୍ତି । ମତଭେଦ ସତ୍ତ୍ୱେ ଦେଶର ଐକ୍ୟ ଓ ସଂହତିକୁ ମଜ୍‌ଭୁତ କରି ଏହାକୁ ସମୃଦ୍ଧି ପଥରେ ଆଗେଇ ନେବାକୁ ଆଜିର ଏହି ଦିବସରେ ଆମେ ସଂକଳ୍ପ ଗ୍ରହଣ କରିବା ଉଚିତ ।

ବିପୁଳ ପ୍ରାକୃତିକ ସମ୍ପଦ ସତ୍ତ୍ୱେ ଓଡ଼ିଶା ଭାରତର ଏକ ଦରିଦ୍ରତମ ରାଜ୍ୟ ରୂପେ ପରିଗଣିତ ହେଉଛି । ଆମକୁ ଏ ପରିସ୍ଥିତି ବଦଳାଇ ଓଡ଼ିଶାକୁ ଏକ ଶ୍ରେଷ୍ଠ ଓ ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରିବାକୁ ହେବ । ବର୍ତ୍ତମାନ ଆମ ଦ୍ୱାରଦେଶରେ ସମୟ ଓ ସୁଯୋଗ ଉପଗତ । ଓଡ଼ିଶାର ମାଟି ତଳେ ଭରି ରହିଥିବା ବିପୁଳ ପ୍ରାକୃତିକ ସମ୍ପଦକୁ ବିନିଯୋଗ କରି ଭାରତର ଶିଳ୍ପ ମାନଚିତ୍ରରେ ଓଡ଼ିଶାକୁ ଏକ ଶିଳ୍ପୋନ୍ନତ ରାଜ୍ୟ ରୂପେ ଗଢ଼ି ତୋଳିବା ସଂଗେସଂଗେ କ୍ଷୁଧା, ଦାରିଦ୍ର୍ୟ, ବେକାରୀ ବିରୁଦ୍ଧରେ ଲଢ଼େଇ କରିବାକୁ ଆମେ ସମସ୍ତେ ମିଳିମିଶି ଆଜିର ଏହି ପବିତ୍ର ଦିବସରେ ସଂକଳ୍ପ ନେବା ।

'ଉତ୍କଳ ପ୍ରସଙ୍ଗ'ର ପାଠକ ପାଠିକା ଓ ଓଡ଼ିଶାର ଭାଇଭଉଣୀମାନଙ୍କୁ ନବବର୍ଷ ଅବସରରେ ଶୁଭେଚ୍ଛା ଜଣାଉଛୁ -

''ଆସ ନବବର୍ଷ ନବୀନ ବରଷ
ନବ ଦିନେ ଘେନି ଅଶେଷ ହରଷ ।।
ବିଭୁ ସ୍ୱର୍ଗଧାମୁ ସୁଧା ସମାଚାର
ଆଣି ଏ ଭୁବନେ କରହେ ପ୍ରଚାର ।।
ଉତ୍କଳ ତନୟେ ଦିଅ ନବବଳ
ଉତ୍କଳ ପାଦପେ ରସମୟ ଫଳ ।।
ଉତ୍କଳ ଆକାଶେ ନବଯଶ ରବି
ଉତ୍କଳ ପ୍ରକୃତି ଧରୁ ନବଛବି ।।''

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

**୨୦୦୪ ମସିହା ଡିସେମ୍ବର ମାସ ୨୬ ତାରିଖରେ ପ୍ରଳୟଙ୍କରୀ ସାମୁଦ୍ରିକ ଭୂକମ୍ପ 'ସୁନାମି'ର କବଳିତ ହୋଇ ଦକ୍ଷିଣ-ପୂର୍ବ ଏସିଆର ଯେଉଁ ଅମୂଲ୍ୟ ଜୀବନ ଅକାଳରେ ନିର୍ବାପିତ ହୋଇଗଲା, ସେମାନଙ୍କ ଆତ୍ମାର ସଦ୍‌ଗତି ନିମିତ୍ତ ଆମେ ପ୍ରାର୍ଥନା କରୁଛୁ ।**

**ସୁନାମି ପ୍ରପୀଡ଼ିତ ଅସୁମାରୀ ଜୀବନକୁ ପୁଣି ସ୍ୱାଭାବିକ ଜୀବନ ସ୍ରୋତକୁ ଫେରାଇ ଆଣିବା ଦିଗରେ ଐଶ୍ୱରୀୟ ସଦିଚ୍ଛା କାମନା କରୁଛୁ ।**

**ଏଭଳି ଅନେକ ପ୍ରାକୃତିକ ବିପତ୍ତି ଓ ବିପର୍ଯ୍ୟୟକୁ ଅତିକ୍ରମ କରି ଏ ମାନବ ସଭ୍ୟତା ଯୁଗେ ଯୁଗେ ଅଗ୍ରଗତି କରି ଆସିଛି । ଆମର ଉତ୍ସର୍ଗ ଐକ୍ୟବୋଧ ଓ ଧୈର୍ଯ୍ୟ ହିଁ ଏହି ଅଗ୍ରଗତି ଓ ପ୍ରାଣବତ୍ତାର ମୂଳସୂତ୍ର ହେଉ ।**

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୧ ଭାଗ ୬ଷ୍ଠ ସଂଖ୍ୟା ପୌଷ-ମାଘ ଜାନୁଆରୀ - ୨୦୦୫



***ବାର୍ଷିକ ଦେୟ : ଟ.୫୦.୦୦***

***ପ୍ରତିଖଣ୍ଡ : ଟ.୫.୦୦***



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@rediffmail.com / iprsec@ori.nic.in, ଫୋନ : ୨୪୦୪୫୧୩

# ସୂଚୀ



# ସାଧାରଣତନ୍ତ୍ର ଦିବସ -୨୦୦୫ ଅବସରରେ
# ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ
# **ଶ୍ରୀ ରାମେଶ୍ୱର ଠାକୁରଙ୍କ**
# **ବାର୍ତ୍ତା**

ଆଜିର ପବିତ୍ର ସାଧାରଣତନ୍ତ୍ର ଦିବସ ଅବସରରେ ମୁଁ ଓଡ଼ିଶାର ଜନସାଧାରଣଙ୍କୁ ଅନ୍ତରର ଗଭୀର ଶ୍ରଦ୍ଧା ଓ ଅଭିନନ୍ଦନ ଜଣାଉଛି ।

୨. ଆପଣମାନେ ଜାଣନ୍ତି ଯେ ଦେଶର ସ୍ୱାଧୀନତା ପାଇଁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମ ମାନବ ସମାଜର ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ । ଆମ ଦେଶର ସ୍ୱାଧୀନତା ପାଇଁ ଓଡ଼ିଶା ଏବଂ ଦେଶର ଯେଉଁ ନିର୍ଭୀକ ସ୍ୱାଧୀନତା ସଂଗ୍ରାମୀମାନେ ଚରମ ବଳିଦାନ ଦେଇଛନ୍ତି, ସେମାନଙ୍କୁ ଆଜି ଆମେ ଅଭିବାଦନ ଜଣାଉଛୁ । ସେହିପରି ଆନ୍ତଃସୀମା ଆତଙ୍କବାଦ ଏବଂ ବାହ୍ୟ ଆକ୍ରମଣର ମୁକାବିଲା କରି ଯେଉଁ ବୀର ଜବାନମାନେ ଆତ୍ମବଳି ଦେଇଛନ୍ତି, ଆମେ ସେମାନଙ୍କ ନିକଟରେ କୃତଜ୍ଞ ।

୩. ୨୬ ଡିସେମ୍ବର, ୨୦୦୪ର ପ୍ରଳୟଙ୍କରୀ 'ସୁନାମି' ପଛରେ ଛାଡ଼ିଯାଇଛି ଧ୍ୱଂସ ଓ ତାଣ୍ଡବଲୀଳା, ଏଥିରେ ଆକ୍ରାନ୍ତ ହୋଇଛନ୍ତି ଅସଂଖ୍ୟ ନରନାରୀ । ଏହି ଦୁର୍ଭାଗ୍ୟଜନିତ ଘଟଣା ଗଭୀର ଦୁଃଖଦାୟକ । ଶୋକସନ୍ତପ୍ତ ପରିବାରମାନଙ୍କ ପାଇଁ ଆମେ ଗଭୀର ସମବେଦନା ଜଣାଉଛୁ । ସୁନାମି ଆକ୍ରାନ୍ତ ଜନସାଧାରଣଙ୍କ ସହାୟତା ପାଇଁ ମୁକ୍ତହସ୍ତରେ ଦାନ କରିବାକୁ ମୁଁ ରାଜ୍ୟବାସୀଙ୍କୁ ନିବେଦନ କରୁଛି ।

୪. ଆଜିର ସାଧାରଣତନ୍ତ୍ର ଦିବସ ଅବସରରେ ସମ୍ବିଧାନ ପ୍ରଣେତାମାନଙ୍କର ମହାନ୍ ଅବଦାନକୁ ଆମେ ସ୍ମରଣ କରୁଛୁ, ଯାହାକି ଭାରତୀୟ ଗଣତନ୍ତ୍ରକୁ ଅନ୍ୟମାନଙ୍କର ଆଦର୍ଶ ସ୍ଥାନୀୟ ଓ ଅନୁକରଣୀୟ କରି ଗଢ଼ି ତୋଳିଛି । ସମ୍ବିଧାନରେ ଉଲ୍ଲିଖିତ ଥିବା ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ନ୍ୟାୟ ତଥା ସାମ୍ୟ-ମୁକ୍ତି-ଭ୍ରାତୃତ୍ୱର ସୂକ୍ଷ୍ମ ଚେତନାକୁ ବାସ୍ତବ କ୍ଷେତ୍ରରେ ସାକାର କରିବା ପାଇଁ ଆମେ ନିରନ୍ତର ପ୍ରୟାସ ଜାରି ରଖିଛୁ ।

୫. ଓଡ଼ିଶାର ଏକ ଗୌରବମୟ ଐତିହ୍ୟ ରହିଛି । କଳିଙ୍ଗ ଯୁଦ୍ଧ ଦୟା, ଶାନ୍ତି ଏବଂ ସହାବସ୍ଥାନର ମାର୍ଗ ଦର୍ଶନ କରିଛି । ପୁଣି ପ୍ରାଚୀନ ଓଡ଼ିଶାକୁ ସମୃଦ୍ଧିଶାଳୀ କରି ଗଢ଼ି ତୋଳିବା ଦିଗରେ ଓଡ଼ିଆମାନଙ୍କର ନୌବାଣିଜ୍ୟ ଦକ୍ଷତାକୁ ଇତିହାସ ଲିପିବଦ୍ଧ କରିଛି । ଓଡ଼ିଶାର ନାବିକମାନେ ଦକ୍ଷିଣ-ପୂର୍ବ ଏସୀୟ ଦେଶଗୁଡ଼ିକୁ ଯାତ୍ରାକରି ସେମାନଙ୍କ ସହ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରିଥିଲେ । ଏପରିକି ଆଜି ମଧ୍ୟ ସେସବୁ ଦେଶମାନଙ୍କରେ ଆମେ ଓଡ଼ିଆ ସଂସ୍କୃତିର ନିଦର୍ଶନ ଦେଖିବାକୁ ପାଉ । ଓଡ଼ିଶାର ସ୍ଥପତି ଏବଂ କାରିଗରମାନେ ମନ୍ଦିର ଓ ପ୍ରାଚୀନ କୀର୍ତ୍ତିରାଜିମାନଙ୍କରେ ଅପୂର୍ବ କଳାନୈପୁଣ୍ୟ ଦେଖାଇଯାଇଛନ୍ତି । ପୁରୀ, କୋଣାର୍କ ଓ ଭୁବନେଶ୍ୱରର ପ୍ରସିଦ୍ଧ ମନ୍ଦିର ତଥା ଆହୁରି ଅନେକ ସ୍ଥାନରେ ଓଡ଼ିଆ ସ୍ଥପତିମାନଙ୍କର ସ୍ଥାପତ୍ୟ ଦକ୍ଷତାର ପର୍ଯ୍ୟାପ୍ତ ପ୍ରମାଣ ମିଳେ । ଓଡ଼ିଆ ବୁଣାକାର ଓ କାରିଗରମାନଙ୍କ ଦ୍ୱାରା ପ୍ରସ୍ତୁତ ହସ୍ତତନ୍ତ ଏବଂ ହସ୍ତଶିଳ୍ପ ଖୁବ୍ ଚିତ୍ତାକର୍ଷକ ଓ ମନମୁଗ୍ଧକର । କଟକର ତାରକସୀ କାମ, ପୁରୀର ପଥର ଖୋଦେଇ, ପାରଳାଖେମୁଣ୍ଡିର ଶିଙ୍ଗକାମ, ପିପିଲିର ଚାନ୍ଦୁଆ କାମ, ପଶ୍ଚିମ ଓଡ଼ିଶାର ତନ୍ତବୁଣା ସାମଗ୍ରୀ ଓ ବ୍ରହ୍ମପୁରର ଟସର ଶାଢ଼ୀ ଇତ୍ୟାଦି କଳା ଓ କାରିଗରୀ ପ୍ରତି ଆଗ୍ରହ ଥିବା ଯେକୌଣସି ମଣିଷକୁ ଚମତ୍କୃତ କରିଥାଏ ।

୬. ପର୍ଯ୍ୟଟକମାନଙ୍କ ପାଇଁ ଓଡ଼ିଶା ବିପୁଳ ସୌନ୍ଦର୍ଯ୍ୟର ଗନ୍ତାଘର । ଚମତ୍କାର କଳା ଓ କାରିଗରୀ, ରଙ୍ଗୀନ ଓ ପ୍ରାଣବନ୍ତ ସାଂସ୍କୃତିକ ଉତ୍ସବ ଏବଂ ଲୋକମାନଙ୍କର ଅପୂର୍ବ ଆତିଥେୟତା ଯେକୌଣସି ପର୍ଯ୍ୟଟକଙ୍କୁ ଏକ ଅଭିନବ ଅନୁଭୂତି ପ୍ରଦାନ କରିଥାଏ । ଏହି ରାଜ୍ୟର ସୌନ୍ଦର୍ଯ୍ୟ ଏପରି ଯେ ଜଣେ ପର୍ଯ୍ୟଟକ ଏହାର କୀର୍ତ୍ତିରାଜି, ସୁନୀଳ ବନାନୀ, ବନ୍ୟପ୍ରାଣୀ ଅଭୟାରଣ୍ୟ, ହ୍ରଦ ଏବଂ ଆଦିବାସୀ ଜନସାଧାରଣଙ୍କର ଭିନ୍ନ ଭିନ୍ନ ସାଂସ୍କୃତିକ ପରମ୍ପରାର ସାମ୍ନାସାମ୍ନି ହେବାକୁ ବାଧ୍ୟ ହୋଇପଡ଼େ । ପ୍ରାକୃତିକ ଚିକିତ୍ସା ତଥା ପରିବେଶକୁ ସଂଶ୍ଲିଷ୍ଟ କରାଇ ପର୍ଯ୍ୟଟନ କ୍ଷେତ୍ରର ବିକାଶ ଦିଗରେ ଓଡ଼ିଶାରେ ପ୍ରଶସ୍ତ କ୍ଷେତ୍ର ରହିଛି । ପର୍ଯ୍ୟଟନସ୍ଥଳୀଗୁଡ଼ିକର ବିକାଶ ଓ ସେସବୁର ଯୋଗାଯୋଗ ଉପରେ ସରକାର ଗୁରୁତ୍ୱ ଦେଉଛନ୍ତି, ଫଳରେ ଏହି କ୍ଷେତ୍ରରେ ପର୍ଯ୍ୟାପ୍ତ ପରିମାଣରେ ନିଯୁକ୍ତି ସୁଯୋଗ ସୃଷ୍ଟି ହୋଇପାରିବ ।

୭. ଓଡ଼ିଶା ହେଉଛି ୬୨ଟି ଆଦିବାସୀ ଗୋଷ୍ଠୀଙ୍କର ବାସସ୍ଥଳୀ । ସମୁଦାୟ ଜନ ସଂଖ୍ୟାର ଏହା ଶତକଡ଼ା ୨୩ ଭାଗ । ଆଦିବାସୀମାନଙ୍କର ସାମାଜିକ-ଅର୍ଥନୈତିକ ଅବସ୍ଥାର ବିକାଶ ସାଧନ ପାଇଁ ସରକାର ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମଗୁଡ଼ିକ ଉପରେ ବିଶେଷ ଗୁରୁତ୍ୱ ଦେଉଛନ୍ତି । ସେହିପରି ନିରାଶ୍ରୟ, ଦରିଦ୍ର, ଅସହାୟ ଓ ଭିନ୍ନକ୍ଷମମାନଙ୍କୁ ସାମାଜିକ ନିରାପତ୍ତା ଯୋଗାଇ ଦେବା ପାଇଁ ଆନ୍ତରିକ ଉଦ୍ୟମ ଅବ୍ୟାହତ ରହିଛି । ପଛୁଆ ଅଞ୍ଚଳ ଏବଂ କେ.ବି.କେ. ଜିଲ୍ଲାଗୁଡ଼ିକର ଉନ୍ନତି ସର୍ବଦା କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ଦୃଷ୍ଟି ଆକର୍ଷଣ କରିଆସିଛି ।

୮. କୃଷି ଆମ ଲୋକଙ୍କର ପ୍ରଧାନ ଜୀବିକା । ରାଜ୍ୟର ସମସ୍ତ ଶ୍ରମଜୀବୀମାନଙ୍କର ଶତକଡ଼ା ୭୦ ଭାଗ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଏହି କ୍ଷେତ୍ରରେ ନିଯୁକ୍ତ ହୋଇଥାନ୍ତି ଏବଂ ରାଜ୍ୟର ମୋଟ ଆଭ୍ୟନ୍ତରୀଣ ଉତ୍ପାଦନକୁ ଏହା ଏକ ପ୍ରମୁଖ ଅଂଶ ଯୋଗାଇଥାଏ । କୃଷିକୁ ଯେପରି ଏକ ଲାଭଜନକ କ୍ଷେତ୍ରରେ ପରିଣତ କରାଯାଇପାରିବ, ସେଥିନିମନ୍ତେ ଚାଷୀମାନଙ୍କୁ ଅର୍ଥକରୀ ଫସଲ କରିବା ପାଇଁ ପ୍ରବର୍ତ୍ତା ଯାଉଛି । ଉଦ୍ୟାନ ଓ ଫୁଲଚାଷର ବିକାଶ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ଓଡ଼ିଶାରେ ପାଖାପାଖି ପ୍ରାୟ ୨୫୦ ପ୍ରକାରର ବିରଳ ଔଷଧୀୟ ବୃକ୍ଷ ଦେଖିବାକୁ ମିଳିଥାଏ । ଏସବୁର ନିୟମିତ ଚାଷ ଦ୍ୱାରା କେବଳ ଯେ ଚାଷୀ ଉପକୃତ ହେବେ ତାହା ନୁହେଁ, ବରଂ ତଦ୍ୱାରା ଏ କ୍ଷେତ୍ରରେ ବିସ୍ତୃତ ଗବେଷଣା ହେବାର ସୁଯୋଗ ସୃଷ୍ଟି ହେବା ସହ ରାଜ୍ୟରେ ଏହି କ୍ଷେତ୍ର ସହ ସମ୍ପୃକ୍ତ ଶିଳ୍ପର ମଧ୍ୟ ବିକାଶ ଘଟିବ ।

୯. ପ୍ରକୃତି ଓଡ଼ିଶାରେ ବିପୁଳ ସମ୍ପଦ ଭରି ଦେଇଛି । ରାଜ୍ୟରେ ଥିବା ଲୁହାପଥର, ମାଙ୍ଗାନିଜ, କ୍ରୋମାଇଟ୍, ବକ୍ସାଇଟ୍, ଚୂନପଥର, ଡୋଲମାଇଟ୍ ଏବଂ କୋଇଲା ଇତ୍ୟାଦି ପ୍ରଚୁର ଖଣିଜ ସମ୍ପଦ ଦେଶରେ ଓଡ଼ିଶାକୁ ଏକ ସମୃଦ୍ଧିଶାଳୀ ଓ ଅଗ୍ରଣୀ ରାଜ୍ୟରେ ପରିଣତ କରିପାରିବ । ଅନେକ ଶିଳ୍ପାନୁଷ୍ଠାନ ରାଜ୍ୟରେ ଇସ୍ପାତ ଓ ଆଲୁମିନିୟମ୍ କ୍ଷେତ୍ରରେ ବୃହତ୍ ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି ଏବଂ ଏ ବାବଦରେ କେତେକ ବୁଝାମଣାପତ୍ର ମଧ୍ୟ ସ୍ୱାକ୍ଷରିତ ହୋଇଛି । ଏହିସବୁ ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ରାଜ୍ୟର ଯୁବସମାଜ ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି ହେବା ସହ ରାଜ୍ୟର ସମ୍ବଳ ମଧ୍ୟ ବୃଦ୍ଧି ପାଇବ ।

୧୦. ବିକାଶ କ୍ଷେତ୍ରରେ ଅନ୍ୟ ଏକ ପ୍ରମୁଖ କ୍ଷେତ୍ର ହେଉଛି ସୂଚନା ପ୍ରଯୁକ୍ତି ବିଜ୍ଞାନ । ଦେଶର ମାନଚିତ୍ରରେ ଭୁବନେଶ୍ୱର କ୍ରମଶଃ ଏକ ପ୍ରମୁଖ ସୂଚନା ପ୍ରଯୁକ୍ତି ବିଜ୍ଞାନ କେନ୍ଦ୍ର ରୂପେ ଉଭା ହେଉଛି । ଚଳିତ ବର୍ଷ ଓଡ଼ିଶାରୁ ସଫ୍ଟୱେୟାର ରପ୍ତାନୀ ଶତକଡ଼ା ୪୦ ଭାଗରୁ ଉର୍ଦ୍ଧ୍ୱ ହୋଇ ମୋଟ ୫ ଶହ କୋଟି ଟଙ୍କାରେ ପହଞ୍ଚିଛି । ଟି.ସି.ଏସ୍. ଏବଂ ୱିପ୍ରୋ ପରି ବୃହତ୍ ଓ ପ୍ରମୁଖ ସୂଚନା ପ୍ରଯୁକ୍ତି ବିଜ୍ଞାନ କମ୍ପାନୀମାନେ ଏଠାକୁ ଆସିବା ଫଳରେ ଆସନ୍ତା ୩/୪ ବର୍ଷ ମଧ୍ୟରେ ଏହି ରପ୍ତାନୀ ପରିମାଣ ହଜାରେ କୋଟି ଟଙ୍କାରେ ପହଞ୍ଚିବ ବୋଲି ଆଶା କରାଯାଉଛି ।

୧୧. କୃଷକମାନଙ୍କୁ ସାହାଯ୍ୟ କରିବା ପାଇଁ ପାଣିପଞ୍ଚାୟତ, ବିଜୁ କୃଷକ ବିକାଶ ଯୋଜନା ଏବଂ ଜଳ ବିଭାଜିକା ମିଶନ୍ ପରି କେତେକ ଅଭିନବ ଯୋଜନା ସରକାର ଜୋର୍‌ସୋର୍‌ରେ ଚାଲୁ ରଖିଛନ୍ତି । ମହିଳାମାନଙ୍କୁ ଅର୍ଥନୈତିକ ଭାବେ କ୍ଷମତାପନ୍ନ କରିବା ତଥା ଶିଶୁ ମୃତ୍ୟୁହାର ହ୍ରାସ କରିବା ପାଇଁ ରାଜ୍ୟରେ ମିଶନ୍ ଶକ୍ତି ଏବଂ ଶିଶୁ ମୃତ୍ୟୁହାର ହ୍ରାସ ମିଶନ୍ କାର୍ଯ୍ୟ କରୁଛି । ଏହିସବୁ ମିଶନ୍‌ଗୁଡ଼ିକ ଖୁବ୍ ସନ୍ତୋଷଜନକ ଭାବେ କାର୍ଯ୍ୟ କରୁଛନ୍ତି ଏବଂ ଏସବୁ ଆଶାନୁରୂପ ସୁଫଳ ପ୍ରଦାନ କରୁଛି । ଦାରିଦ୍ର୍ୟ ଦୂରୀକରଣ ଏବଂ ମୁଣ୍ଡପିଛା ଆୟ ହାର ବୃଦ୍ଧି କରାଇ ଜୀବନଧାରଣର ମାନରେ ଉନ୍ନତି ଆଣିବା ଦିଗରେ ସରକାରଙ୍କର ସ୍ପଷ୍ଟ ଦୃଷ୍ଟିଭଙ୍ଗୀ ଓ ବିଧିବଦ୍ଧ କାର୍ଯ୍ୟକ୍ରମ ରହିଛି ।

୧୨. ପଣ୍ଡିତ ଜବାହରଲାଲ ନେହରୁଙ୍କର ଦୂରଦୃଷ୍ଟି ହେତୁ ବିଜ୍ଞାନ, କାରିଗରୀ ଏବଂ ଅନ୍ୟାନ୍ୟ ଭିତ୍ତିଭୂମି ପ୍ରତିଷ୍ଠା କ୍ଷେତ୍ରରେ ଭାରତ ଦ୍ରୁତ ପ୍ରଗତି ହାସଲ କରିପାରିଛି । ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବୈଷୟିକ ପ୍ରତିଷ୍ଠାନ, ଅତ୍ୟାଧୁନିକ ବିଜ୍ଞାନ ଗବେଷଣାଗାର, ଜଳସେଚନ ପ୍ରକଳ୍ପ, ଇସ୍ପାତ କାରଖାନା ଇତ୍ୟାଦି ଦେଶରେ ପ୍ରତିଷ୍ଠା ହୋଇଛି । ଏସବୁ ମଧ୍ୟରୁ ଅନେକ ଯଥା- ହୀରାକୁଦ ବନ୍ଧ, ରାଉରକେଲା ଇସ୍ପାତ କାରଖାନା ଓ ପାରାଦୀପ ବନ୍ଦର ଓଡ଼ିଶାରେ ପ୍ରତିଷ୍ଠିତ ହୋଇଛି ।

୧୩. ଓଡ଼ିଶାରେ ରହିଛି ପ୍ରଭୂତ ପ୍ରାକୃତିକ ସମ୍ପଦ, ପ୍ରଚୁର ଜଳ, ବିପୁଳ ଅରଣ୍ୟ ସଂପଦ, ବିସ୍ତୃତ ବେଳାଭୂମି ଏବଂ ସର୍ବୋପରି ଏକ ନିଷ୍ଠାପର, ପରିଶ୍ରମୀ ତଥା ଧୀ-ଶକ୍ତି ସମ୍ପନ୍ନ ମାନବ ସମ୍ବଳ ।

୧୪. ଓଡ଼ିଶାର ସର୍ବାଙ୍ଗୀନ ବିକାଶ ନିମନ୍ତେ ଆମ ପ୍ରଧାନମନ୍ତ୍ରୀ ଖୁବ୍ ସମ୍ବେଦନଶୀଳ ଏବଂ ଆଗ୍ରହୀ । ନିକଟରେ କେନ୍ଦ୍ର କୃଷି ମନ୍ତ୍ରୀ ଜାତୀୟ ଉଦ୍ୟାନ ମିଶନ୍ ସମ୍ପର୍କରେ ଉଲ୍ଲେଖ କରି କହିଥିଲେ ଯେ, ଏ କ୍ଷେତ୍ରରେ ବିକାଶ, ପୁଞ୍ଜିନିବେଶ ଓ ନିଯୁକ୍ତିର ପର୍ଯ୍ୟାପ୍ତ ସୁଯୋଗ ରହିଛି । ରାଜ୍ୟ ସରକାରଙ୍କ ପ୍ରୟାସ, କେନ୍ଦ୍ର ସରକାରଙ୍କ ସକାରାତ୍ମକ ସହଯୋଗ ଏବଂ ଜନସାଧାରଣଙ୍କ ପ୍ରତ୍ୟକ୍ଷ ସମ୍ପୃକ୍ତି ଦ୍ୱାରା ରାଜ୍ୟର ବିକାଶ ତଥା ସାଧାରଣ ଜନତାଙ୍କ ନିମନ୍ତେ ଉଦ୍ଦିଷ୍ଟ କଲ୍ୟାଣମୂଳକ କାର୍ଯ୍ୟକ୍ରମର ଧାରା ତ୍ୱରାନ୍ୱିତ ହୋଇପାରିବ । କେବଳ ଗୋଟିଏ କଥାରେ ଆମକୁ ସର୍ବଦା ଯତ୍ନବାନ ହେବାକୁ ପଡ଼ିବ । ତାହା ହେଉଛି, ଆଳସ୍ୟ ଓ ଖାମଖିଆଲୀ ମନୋଭାବ । ନିଜ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟ ସମ୍ପାଦନ ଦିଗରେ ଆମେ ସମସ୍ତେ ତତ୍ପରତା ପ୍ରଦର୍ଶନ କରିବା ଉଚିତ । ମୁଁ ଜଣେ ଆଶାବାଦୀ ଏବଂ ଦୃଢ଼ ଭାବରେ ବିଶ୍ୱାସ କରେ ଯେ ଓଡ଼ିଶାର ଜନସାଧାରଣ ପରିବର୍ତ୍ତିତ ସମୟର ଆହ୍ୱାନକୁ ମୁକାବିଲା କରିବା ପାଇଁ ଆଗେଇ ଆସିବେ ।

୧୫. ଏହି ଶୁଭ ଅବସରରେ ଓଡ଼ିଶାକୁ ଏକ ସମୃଦ୍ଧ ଓ ଶକ୍ତିଶାଳୀ ରାଜ୍ୟରେ ପରିଣତ କରିବା ପାଇଁ ମୁଁ ସମସ୍ତ ରାଜ୍ୟବାସୀଙ୍କୁ ଆହ୍ୱାନ କରୁଛି ।

ଜୟହିନ୍ଦ୍



# ସାଧାରଣତନ୍ତ୍ର ଦିବସ -୨୦୦୫ ଅବସରରେ
## ମାନ୍ୟବର ମୁଖ୍ୟମନ୍ତ୍ରୀ
## **ଶ୍ରୀ ନବୀନ ପଟ୍ଟନାୟକଙ୍କ**
## **ବାର୍ତ୍ତା**

ସାଧାରଣତନ୍ତ୍ର ଦିବସ ପାଳନର ଶୁଭ ଅବସରରେ ମୁଁ ରାଜ୍ୟବାସୀ ପ୍ରିୟ ଭାଇଭଉଣୀମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସାଧାରଣତନ୍ତ୍ର ଦିବସ ଆମ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଏହି ଦିନ ଆମ ଦେଶର ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ଯେଉଁ ବରପୁତ୍ରମାନେ ସମ୍ବିଧାନ ରଚନା କରିଥିଲେ, ସେମାନେ ଆଜି ଆଉ ଆମ ଭିତରେ ନାହାନ୍ତି । ମୁଁ ସେମାନଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଜଣାଉଛି । ଦେଶର ସ୍ୱାଧୀନତା ପାଇଁ ଅନେକ ସଂଗ୍ରାମୀ ପ୍ରାଣବଳି ଦେଇଛନ୍ତି । ସେମାନଙ୍କ ପ୍ରତି ମଧ୍ୟ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆପଣମାନେ ଜାଣନ୍ତି ନିକଟରେ ସୁନାମିରେ ବହୁ ଲୋକ ପ୍ରାଣ ହରାଇଛନ୍ତି । ମୁଁ ସେମାନଙ୍କ ପରିବାରବର୍ଗଙ୍କୁ ଗଭୀର ସମବେଦନା ଜଣାଉଛି ଏବଂ ଏହି ବିପତ୍ତି ସମୟରେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି ।

ଓଡ଼ିଶାର ଉନ୍ନତି ପାଇଁ ଆପଣମାନଙ୍କ ସହଯୋଗରେ ମୋ ସରକାର ଗତ ପାଞ୍ଚ ବର୍ଷ ଧରି କାମ କରୁଛି । ଆମେ କୃଷି, ଶିଳ୍ପ, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଗ୍ରାମାଞ୍ଚଳର ଉନ୍ନତି ଉପରେ ବିଶେଷ ଜୋର ଦେଉଛୁ । ଚାଷୀ, ମୂଲିଆ, ଆଦିବାସୀ, ହରିଜନ ଓ ଗରିବ ଲୋକଙ୍କ କଲ୍ୟାଣ ପାଇଁ ବିଶେଷ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଆଦିବାସୀମାନେ ଆମ ରାଜ୍ୟର ଲୋକସଂଖ୍ୟାର ଶତକଡ଼ା ୨୩ ଭାଗ । ସେମାନଙ୍କ ଉନ୍ନତି ବିନା ରାଜ୍ୟର ଉନ୍ନତି ଅସମ୍ଭବ । ଆଦିବାସୀମାନଙ୍କ ସାମାଜିକ, ଆର୍ଥିକ ଉନ୍ନତି ଦିଗରେ କାର୍ଯ୍ୟକ୍ରମ ଚାଲୁ ରହିଛି । ସେମାନଙ୍କ ରୋଜଗାର ବଢ଼ାଇବା ପାଇଁ ଓ ଜଳ, ଜଙ୍ଗଲ, ଜମିରେ ସେମାନଙ୍କୁ ଅଧିକାର ଦେବା ପାଇଁ ଆମେ ପଦକ୍ଷେପ ନେଇଛୁ । ଆଦିବାସୀମାନଙ୍କ ବିରୋଧରେ ଥିବା ଛୋଟ ଛୋଟ କେସ୍‌ଗୁଡ଼ିକ ଉଠାଇ ନିଆଯାଇଛି । ସେମାନଙ୍କ ରୋଜଗାର ବଢ଼ାଇବା ପାଇଁ ଲଘୁ ବନଜାତ ଦ୍ରବ୍ୟ ନୀତି କାର୍ଯ୍ୟକାରୀ କରାଯାଇଛି ଓ କେନ୍ଦୁପତ୍ର ମୂଲ୍ୟ ବଢ଼ାଇ ଦିଆଯାଇଛି । ଜଙ୍ଗଲ ଜମିରେ ସେମାନଙ୍କୁ ଅଧିକାର ଦେବା ପାଇଁ ଚେଷ୍ଟା ଜାରି ରହିଛି ।

ମୋ ସରକାର ମହିଳାମାନଙ୍କ ଉନ୍ନତି ଉପରେ ବିଶେଷ ଗୁରୁତ୍ୱ ଦେଉଛି । 'ମିଶନ ଶକ୍ତି' କାର୍ଯ୍ୟକ୍ରମ ଜୋରସୋରରେ ଚାଲିଛି । ଏହି କାର୍ଯ୍ୟକ୍ରମ ଏକ ଗଣଆନ୍ଦୋଳନରେ ପରିଣତ ହୋଇଛି । ଏହାଦ୍ୱାରା ମହିଳାମାନଙ୍କ ରୋଜଗାର ବଢ଼ିଛି । ଆମେ ମହିଳା Self Help Group ମାଧ୍ୟମରେ ଗ୍ୟାସ ଓ କିରୋସିନି ବିକ୍ରୀ କରିବା ପାଇଁ ସ୍ଥିର କରିଛୁ । ଏହାଦ୍ୱାରା

ମହିଳାମାନଙ୍କର ରୋଜଗାର ବଢ଼ିବ ଓ ଲୋକମାନେ ଏହି ଦରକାରୀ ଜିନିଷ ଠିକ୍ ଭାବେ ପାଇପାରିବେ । ମହିଳାମାନଙ୍କୁ ସୁବିଧାରେ ନ୍ୟାୟ ପ୍ରଦାନ ପାଇଁ ରାଜ୍ୟର ସମସ୍ତ ଥାନାରେ ମହିଳା ଡେସ୍କ ମଧ୍ୟ ପ୍ରତିଷ୍ଠା କରାଯାଉଛି ।

ମୋ ସରକାର ଚାଷ ଓ ଚାଷୀର ଉନ୍ନତି ପାଇଁ ସବୁବେଳେ ଗୁରୁତ୍ୱ ଦେଇଆସିଛି । ବିଜୁ କୃଷକ ବିକାଶ ଯୋଜନା ଓ ପାଣିପଞ୍ଚାୟତ କାର୍ଯ୍ୟକ୍ରମ ଚାଷୀମାନଙ୍କ ଭିତରେ ଆଦର ଲାଭ କରିଛି । ଚାଷକୁ ଲାଭଜନକ କରିବା ପାଇଁ ଆମେ Horticultureର ବିକାଶ ଉପରେ ଜୋର ଦେଉଛୁ । ଅଧିକ ପନିପରିବା, ଫଳ ଓ ଫୁଲ ଚାଷ କରି ଆମର ଚାଷୀଭାଇମାନେ ବିଶେଷ ଲାଭ ପାଇପାରିବେ ଓ ସେମାନଙ୍କର ଆର୍ଥିକ ଉନ୍ନତି ହେବ ।

ଆମ ରାଜ୍ୟର ଯୁବକମାନଙ୍କ ନିଯୁକ୍ତି ସୁବିଧା ଦେବା ପାଇଁ Employment Mission ଆରମ୍ଭ କରାଯାଉଛି । ଶିଳ୍ପ, IT ଓ Tourismର ଉନ୍ନତି ଦ୍ୱାରା ଅଧିକ ନିଯୁକ୍ତି ସୃଷ୍ଟି ହେବ । ତେଣୁ ଏଗୁଡ଼ିକ ଉପରେ ଆମେ ବିଶେଷ ଗୁରୁତ୍ୱ ଦେଉଛୁ । Steel ଓ Aluminium Sectorରେ ଶିଳ୍ପ ପ୍ରତିଷ୍ଠା ପାଇଁ ଆଗ୍ରହ ସୃଷ୍ଟି ହୋଇଛି । ଏହାଦ୍ୱାରା ଅନେକଗୁଡ଼ିଏ ବଡ଼ ବଡ଼ କାରଖାନା ବସିବ ଓ ରାଜ୍ୟର ଆର୍ଥିକ ଉନ୍ନତି ହେବ । ସେହିପରି IT Sectorରେ ବିକାଶ ଦ୍ୱାରା export ବଢ଼ିବା ସଂଗେସଂଗେ ନିଯୁକ୍ତି ସୁଯୋଗ ସୃଷ୍ଟି ହେବ । Tourismର ବିକାଶ ପାଇଁ ମଧ୍ୟ ଆମେ ବିଶେଷ କାର୍ଯ୍ୟକ୍ରମ ହାତକୁ ନେଇଛୁ ।

ଓଡ଼ିଶାର ଉନ୍ନତି ଆମ ସମସ୍ତଙ୍କର ଲକ୍ଷ୍ୟ । ଏଥିପାଇଁ ସମସ୍ତଙ୍କର ସହଯୋଗ ଦରକାର । ଆଜି ସାଧାରଣତନ୍ତ୍ର ଦିବସ ଅବସରରେ ମୁଁ ଆପଣମାନଙ୍କୁ ନିବେଦନ କରିବାକୁ ଚାହେଁ, ଆସନ୍ତୁ, ସମସ୍ତେ ମିଳିମିଶି ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ।

ଜୟହିନ୍ଦ୍



# ସାଧାରଣତନ୍ତ୍ର ଦିବସ - ୨୦୦୫ ଅବସରରେ
# ମାନ୍ୟବର ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ
# **ଶ୍ରୀ ଦେବାଶିଷ ନାୟକଙ୍କ**
# ବାର୍ତ୍ତା

୫୬ତମ ସାଧାରଣତନ୍ତ୍ର ଦିବସ ପୁଣ୍ୟ ଅବସରରେ ରାଜ୍ୟବାସୀ ଭାଇ ଓ ଭଉଣୀମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ।

ଆମ ଦେଶବାସୀଙ୍କ ନିମନ୍ତେ ଜାନୁଆରୀ ୨୬ ତାରିଖର ଏକ ଐତିହାସିକ ମହତ୍ୱ ରହିଛି । ୫୫ ବର୍ଷ ପୂର୍ବେ ୧୯୫୦ ମସିହା ଏହିଦିନ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ଗଣରାଜ୍ୟ ରୂପେ ଘୋଷିତ କରି ଆମେ ଆମ ନିଜପାଇଁ ଏକ ସମ୍ବିଧାନ ପ୍ରଣୟନ କରିଥିଲୁ । ସମସ୍ତଙ୍କ ନିମନ୍ତେ ସାମାଜିକ ଓ ଆର୍ଥିକ ନ୍ୟାୟ ସୁନିଶ୍ଚିତ କରି ସମାଜର ସବୁବର୍ଗର କଲ୍ୟାଣ କରିବାକୁ ଦୃଢ଼ ସଂକଳ୍ପ କରିଥିଲୁ । ଆସନ୍ତୁ, ଆଜି ଏହି ସ୍ମରଣୀୟ ଦିନରେ ଦେଶର ସେହି ବରପୁତ୍ରମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା, ଯେଉଁମାନେ ଦେଶକୁ ସ୍ୱାଧୀନ କରିବା ନିମନ୍ତେ ମହାନ୍ ତ୍ୟାଗ କରି ଜୀବନକୁ ଉତ୍ସର୍ଗ କରିଥିଲେ । ଆଜି ଆମେ ନିଷ୍ଠା ଓ ଆନ୍ତରିକତାର ସହ ଦେଶର ସେବା କରିବା ନିମନ୍ତେ ସଂକଳ୍ପକୁ ଦୋହରାଇବା ।

ଇତି ମଧ୍ୟରେ ୫୫ ବର୍ଷ ବିତି ଯାଇଛି । ଆମେ ଆମ ମହାନ୍ ନେତୃବୃନ୍ଦ ଏବଂ ଦେଶଭକ୍ତଙ୍କ ସ୍ୱପ୍ନକୁ ସାକାର କରିବାକୁ କଠୋର ପରିଶ୍ରମ କରି ଆସିଛେ । ଆମେ ଅନେକ ବାଧା ଅତିକ୍ରମ କରି ଅଧିକରୁ ଅଧିକ ଦୃଢ଼ ହୋଇ ପାରିଛେ । ଆମର ସଫଳତା ସବୁ କ୍ଷେତ୍ରରେ ବେଶ୍ ଉତ୍ସାହଜନକ । ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ, ମାତ୍ର ଆମକୁ ଆହୁରି ଅନେକ ପଥ ଅତିକ୍ରମ କରିବାକୁ ପଡ଼ିବ ।

ଓଡ଼ିଶା ପ୍ରକୃତିର ଏକ ମହାନ୍ ଦାନ । ପ୍ରାକୃତିକ ଏବଂ ଖଣିଜ ସଂପଦରେ ଭରପୂର ଓଡ଼ିଶା । ଓଡ଼ିଶାବାସୀଙ୍କଠାରେ ଶକ୍ତି, ସାମର୍ଥ୍ୟ ଏବଂ କଳାକୁଶଳତାର ଏକ ମହାନ୍ ପରମ୍ପରା ରହିଛି । କିନ୍ତୁ ଉପଯୁକ୍ତ ଅବସରର ଅଭାବ ଏବଂ ଅନେକ ବର୍ଷ ବିଦେଶୀ ଶାସନର ବଶବର୍ତ୍ତୀ ଯୋଗୁଁ ଏସବୁ ସୁପ୍ତ ହୋଇ ପଡ଼ିଛି । ଆମର ବିଶାଳ ପ୍ରାକୃତିକ ତଥା ଖଣିଜ ସଂପଦ ଏବଂ ମାନବସମ୍ବଳର ଉପଯୁକ୍ତ ବିନିଯୋଗ ହୋଇପାରିଲେ ଆମ ରାଜ୍ୟ ଦେଶର ଅଗ୍ରଗଣ୍ୟ ହୋଇପାରିବ । ଆମର ଅନେକ ପ୍ରକାର ସମସ୍ୟା ରହିଛି । ବଡ଼ ବଡ଼ ଉଦ୍ୟୋଗ ସହ ଗ୍ରାମୋଦ୍ୟୋଗର ପ୍ରସାର ଆମ ଗରିବ ଏବଂ ଅନୁନ୍ନତକୁ ସମ୍ମୁଖୀନ ହେବାର ଏକମାତ୍ର ଉପାୟ । ଆମ ରାଜ୍ୟରେ ଔଦ୍ୟୋଗିକ ବିକାଶ ନିମନ୍ତେ ପର୍ଯ୍ୟାପ୍ତ ସମ୍ଭାବନା ରହିଛି । ଏଥିନିମନ୍ତେ ଗମ୍ଭୀର ଏବଂ ଦୃଢ଼ ପ୍ରୟାସ ଆରମ୍ଭ ହୋଇଛି । ସେହିପରି କୃଷି, ସ୍ୱାସ୍ଥ୍ୟ, ଶକ୍ତି, ଶିକ୍ଷା, ଗମନାଗମନ, ବିଜ୍ଞାନ ଓ କାରିଗରୀ ଏବଂ କ୍ରୀଡ଼ା କ୍ଷେତ୍ରରେ ବ୍ୟାପକ ଉନ୍ନତି ସହିତ ସମାଜର ସବୁ ପଛୁଆ ଏବଂ ଦୁର୍ବଳବର୍ଗଙ୍କ କଲ୍ୟାଣ ନିମନ୍ତେ ବଳିଷ୍ଠ ପଦକ୍ଷେପ ଗ୍ରହଣ କରାଯାଉଛି ।

ଆସନ୍ତୁ, ଆଜି ପବିତ୍ର ଗଣତନ୍ତ୍ର ଦିବସର ଶୁଭ ଅବସରରେ ଆମେ ସବୁ ଆମ ରାଜ୍ୟର ବିକାଶପଥରେ ଆସୁଥିବା ସମସ୍ତ ଆହ୍ୱାନକୁ ଶକ୍ତି ଏବଂ ଉତ୍ସାହର ସହ ସମ୍ମୁଖୀନ ହେବା, ଗତିଶୀଳ ଏବଂ ସମୃଦ୍ଧ ଓଡ଼ିଶା ଗଠନ ନିମନ୍ତେ ନିଜକୁ ପୁନଃ ସମର୍ପିତ କରିବା, ଯାହାଦ୍ୱାରା କି ଦେଶର ଅନ୍ୟ ରାଜ୍ୟମାନଙ୍କ ସହ ଓଡ଼ିଶା ନିଜର ଉପଯୁକ୍ତ ସ୍ଥାନ ହାସଲ କରିବାରେ ସମର୍ଥ ହୋଇପାରିବ ।

ମୁଁ ରାଜ୍ୟବାସୀଙ୍କ ସୁଖ ଓ ସମୃଦ୍ଧି କାମନା କରୁଛି ।

**ଜୟହିନ୍ଦ୍**